ମହାବିଦ୍ୟାଳୟ

# ପ୍ରବନ୍ଧ ଓ ବ୍ୟାକରଣ

[ +2 ଓ ମହାବିଦ୍ୟାଳୟ ଶ୍ରେଣୀର ସହାୟକ ପୁସ୍ତକ ]

ଲେଖକ :

ଡକ୍ଟର୍ ହେମନ୍ତ କୁମାର ଦାସ

ପ୍ରାଧ୍ୟାପକ, ଓଡ଼ିଆ ବିଭାଗ

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
ଗ୍ରନ୍ଥ ମନ୍ଦିର, କଟକ-୨

ମୁଦ୍ରକ : ପରମେଶ୍ୱର ପ୍ରେସ୍
ଆଲିଶାବଜାର, କଟକ-୨

ପ୍ରଥମ ସଂସ୍କରଣ : ନଭେମ୍ବର, ୧୯୮୩
ଦ୍ୱିତୀୟ ସଂସ୍କରଣ : ଅଗଷ୍ଟ, ୧୯୮୯
ତୃତୀୟ ସଂସ୍କରଣ : ଅଗଷ୍ଟ, ୧୯୯୪

ମୂଲ୍ୟ : ଟ ୩୫-୦୦

# ସୂଚୀ


୧ । ପ୍ରବନ୍ଧ ୧

୧ । ଯୌତୁକ ପ୍ରଥା : ଏକ ସାମାଜିକ ବ୍ୟାଧି ୩
୨ । ଭାରତରେ ଗଣତନ୍ତ୍ର ଶାସନ ୬
୩ । ବେକାର ସମସ୍ୟା ୯
୪ । ପରିବାର ନିୟନ୍ତ୍ରଣ ୧୧
୫ । ନାରୀଶିକ୍ଷା ୧୪
୬ । ସାଂପ୍ରତିକ ଶିକ୍ଷା-ସମସ୍ୟା ୧୬
୭ । ପଲ୍ଲୀ-ଉନ୍ନୟନ ୨୦
୮ । ଜାତୀୟ ସଂହତି ୨୨
୯ । ଓଡ଼ିଶାର ଶିଳ୍ପ ୨୫
୧୦ । ଓଡ଼ିଶାର ପ୍ରାକୃତିକ ସମ୍ପଦ ୨୮
୧୧ । ଓଡ଼ିଶାର ବନ୍ୟା-ସମସ୍ୟା ଓ ତାହାର ପ୍ରତିକାର ୩୧
୧୨ । ଛାତ୍ରସମାଜର ଦାୟିତ୍ୱ ୩୩
୧୩ । ନାଗରିକର ଦାୟିତ୍ୱ ୩୫
୧୪ । ଛାତ୍ର ଓ ରାଜନୀତି ୩୮
୧୫ । ଭାରତର ଜାତିପ୍ରଥା ୪୦
୧୬ । ଖେଳ-କୁଦ ୪୩
୧୭ । ସଂଯୁକ୍ତ ରାଷ୍ଟ୍ରସଂଘ ୪୬
୧୮ । ଭାରତରେ ଗଣତନ୍ତ୍ରର ଭବିଷ୍ୟତ ୪୯
୧୯ । ସମ୍ବାଦପତ୍ରର ଭୂମିକା ୫୨
୨୦ । ଓଡ଼ିଶାର ପ୍ରାକୃତିକ ବିପର୍ଯ୍ୟୟ ୫୫
୨୧ । ପଟପଟାଣୀ ଓ ଜୀବନରେ ତାହାର ଭୂମିକା ୫୮
୨୨ । ଚଳଚ୍ଚିତ୍ରର ପ୍ରଭାବ ୬୧
୨୩ । ସମୟାନୁବର୍ତ୍ତିତା ୬୪

୨୪ । କର୍ତ୍ତବ୍ୟବୋଧ — ୬୭
୨୫ । ପର୍ଯ୍ୟଟନ — ୬୯
୨୬ । ପରୋପକାରିତା — ୭୨
୨୭ । ସମାଜସେବା — ୭୪
୨୮ । ଦେଶପ୍ରେମ — ୭୭
୨୯ । ଭାରତର ପରମାଣୁ ଶକ୍ତି — ୮୦
୩୦ । ବିଜ୍ଞାନ ଓ ସାହିତ୍ୟ — ୮୨
୩୧ । ବିଜ୍ଞାନ ଓ ଧର୍ମବିଶ୍ୱାସ — ୮୫
୩୨ । ବିଜ୍ଞାନ ଓ ଶାନ୍ତି — ୮୮
୩୩ । ସଭ୍ୟତାର ବିକାଶରେ ବିଜ୍ଞାନର ଭୂମିକା — ୯୦
୩୪ । ସାହିତ୍ୟ ଓ ସମାଜ — ୯୩
୩୫ । ସାହିତ୍ୟପାଠର ଉପାଦେୟତା — ୯୫
୩୬ । ଆଧୁନିକ ସାହିତ୍ୟ ବନାମ ପ୍ରାଚୀନ ସାହିତ୍ୟ — ୯୮
୩୭ । ଓଡ଼ିଆ ସାହିତ୍ୟର ରୂପ-ବିଭବ — ୧୦୦
୩୮ । ତୁମର ଜୀବନର ଏକ ସ୍ମରଣୀୟ ଘଟଣା — ୧୦୩
୩୯ । ତୁମର ପ୍ରିୟ ପୁସ୍ତକ — ୧୦୫
୪୦ । ଜୀବନର ଲକ୍ଷ୍ୟ — ୧୦୮
୪୧ । ଏକ ଦର୍ଶନୀୟ ସ୍ଥାନ — ୧୧୦
୪୨ । ଧୀର ପାଣି ପଥରକାଟେ — ୧୧୩
୪୩ । ଯାହାକୁ ରଖିବେ ଅନନ୍ତ — ୧୧୫
୪୪ । ଲେଖୁ ଲେଖୁ-କରଣ — ୧୧୮
୪୫ । ଯେ ପକ୍ଷୀ ଉଡ଼େ ଯେତେ ଦୂର — ୧୨୦
୪୬ । ସ୍ୱାବଲମ୍ବନଶୀଳତା — ୧୨୩
୪୭ । ଭାରତର କୃଷକ — ୧୨୬
୪୮ । ଧର୍ମନିରପେକ୍ଷତା — ୧୩୦
୪୯ । ଆଜିର ଶିକ୍ଷାସମସ୍ୟା — ୧୩୨
୫୦ । ଉତ୍କଳର ଅତୀତ ବୈଭବ — ୧୩୬

୨ । ଅଲଙ୍କାର ୧୪୦

ଉପମା, ଉତ୍ପ୍ରେକ୍ଷା, ଅନୁପ୍ରାସ, ଯମକ, ବ୍ୟତିରେକ,
ବିଭାବନା, ବିଶେଷୋକ୍ତି, ବିରୋଧାଭାସ

୩ । ଇଂରେଜୀରୁ ଓଡ଼ିଆରେ ଅନୁବାଦ ୧୪୮

୪ । ରୂଢ଼ି ଓ ବାକ୍ୟାଂଶ ପ୍ରୟୋଗ ୧୫୫

( Idioms, Phrases and Usages )
କ୍ରିୟାର ରୂଢ଼ି (୧୬୮ ପୃଷ୍ଠା), ଗୋଟିଏ ଶବ୍ଦର ବିଭିନ୍ନ ଅର୍ଥରେ
ବ୍ୟବହାର (୧୭୬ ପୃଷ୍ଠା) ଗୋଟିଏ ଶବ୍ଦର ଭିନ୍ନ ଭିନ୍ନ ପଦରେ
ବ୍ୟବହାର (୧୮୩ ପୃଷ୍ଠା), ପ୍ରବାଦ ପ୍ରବଚନ (୧୮୫ ପୃଷ୍ଠା),
ଉଗଢମାଳ (୧୮୭ ପୃଷ୍ଠା)

---

## +2 SYLLABUS

**Oriya M. I. L.**

| | |
|---|---|
| (a) Essay | 15 Marks. |
| (b) Translation from English to Oriya | 10 ,, |
| (c) Grammar (Idioms, Phrases and Usages | 10 ,, |

**Oriya Optional**

ଅଲଙ୍କାର : ଉପମା, ଉତ୍ପ୍ରେକ୍ଷା; ଅନୁପ୍ରାସ,
ଯମକ, ବ୍ୟତିରେକ, ବିଭାବନା,
ବିଶେଷୋକ୍ତି, ବିରୋଧାଭାସ । 10 Marks.

# ପ୍ରବନ୍ଧ ଲିଖନ ସମ୍ପର୍କରେ କେତେକ ସାଧାରଣ କଥା

କୌଣସି ବିଷୟର ବ୍ୟବସ୍ଥିତ ଗଦ୍ୟରୂପ ହିଁ ହେଉଛି ପ୍ରବନ୍ଧ । ନିବନ୍ଧ, ଆଲୋଚନା ପ୍ରଭୃତି ଏହାର ଭିନ୍ନ ଭିନ୍ନ ନାମ ରହିଛି । ପ୍ରବନ୍ଧ ମାଧ୍ୟମରେ ଲେଖକର ଭାଷାଶୈଳୀର ସ୍ୱାତନ୍ତ୍ର୍ୟ ପ୍ରକାଶିତ ହୋଇଥାଏ ।

ପ୍ରବନ୍ଧକୁ ସାଧାରଣତଃ ପାଞ୍ଚଟି ଶ୍ରେଣୀରେ ବିଭକ୍ତ କରାଯାଇଥାଏ : (୧) ବର୍ଣ୍ଣନାତ୍ମକ, (୨) ବିବରଣାତ୍ମକ, (୩) ବିଚାରାତ୍ମକ, (୪) କଳ୍ପନାତ୍ମକ ଓ (୫) ଭାବାତ୍ମକ ।

(୧) ବର୍ଣ୍ଣନାପ୍ରଧାନ ରଚନା ବର୍ଣ୍ଣନାତ୍ମକ ହୋଇଥାଏ । ଏଥିରେ କୌଣସି ସ୍ଥାନ, ନଦୀ, ପର୍ବତ, ପଶୁପକ୍ଷୀ, ବନ, ଝରଣା ପ୍ରଭୃତିର ବର୍ଣ୍ଣନା କରାଯାଇଥାଏ ।

(୨) ବିବରଣାତ୍ମକ ପ୍ରବନ୍ଧରେ ଘଟଣା ଏବଂ ଅବସ୍ଥାର ଚିତ୍ର ଅଧିକ ଦିଆଯାଇଥାଏ ।

(୩) ନିର୍ଦ୍ଦିଷ୍ଟ କୌଣସି ଭାବ କିମ୍ବା ମତବାଦକୁ ଆଶ୍ରୟକରି ବିଚାରାତ୍ମକ ପ୍ରବନ୍ଧ ରଚିତ ହୁଏ । ଏଥିରେ ମତବାଦର ବିଚାର-ଆଲୋଚନା ବିଭିନ୍ନ ଦୃଷ୍ଟିରୁ କରାଯାଇଥାଏ । ସାଧାରଣତଃ ଖଣ୍ଡନ ମଣ୍ଡନ ନିମନ୍ତେ ଏଥିରେ ବହୁ ଯୁକ୍ତିତର୍କର ଅବତାରଣା କରାଯାଇଥାଏ ।

(୪) ନିର୍ଦ୍ଦିଷ୍ଟ କୌଣସି ବିଷୟରେ ପ୍ରାବନ୍ଧିକଙ୍କର 'କଳ୍ପନା'କୁ ଅବଲମ୍ବନକରି କଳ୍ପନାତ୍ମକ ପ୍ରବନ୍ଧ ରୂପପାଏ । 'ମୁଁ ଯଦି ପ୍ରଧାନମନ୍ତ୍ରୀ ହୋଇଥାଆନ୍ତି' ପ୍ରଭୃତି ଧରଣର ରଚନା ଏହି ଶ୍ରେଣୀର ।

(୫) ଭାବାତ୍ମକ ଶ୍ରେଣୀର ପ୍ରବନ୍ଧରେ ଯେକୌଣସି ବିଷୟରେ ମାନସିକ ଭାବଧାରାର ବିଶ୍ଳେଷଣ କରାଯାଇଥାଏ । ଚିନ୍ତା ବଦଳରେ ଏହା ପ୍ରକୃତ କର୍ମ ନିମନ୍ତେ ପ୍ରେରଣା ଦିଏ ।

ଏହି ପାଞ୍ଚଟି ବିଭାଗକୁ ବାଦ୍‌ଦେଲେ ଯେକୌଣସି ବିଷୟରେ ଯେକୌଣସି ପ୍ରକାରର ପ୍ରବନ୍ଧ ଲେଖାଯାଇପାରେ । ସମାନ ବିଷୟ ଉପରେ ଉପସ୍ଥାପନା ଶୈଳୀର ସାମାନ୍ୟ ପରିବର୍ତ୍ତନରେ ଭିନ୍ନ ଶ୍ରେଣୀର ପ୍ରବନ୍ଧ ଲେଖାଯାଇପାରେ ।

ଗୋଟିଏ ଭଲ ପ୍ରବନ୍ଧ ରଚନା କରିବାକୁ ହେଲେ ସାଧାରଣତଃ ନିମ୍ନ ଦିଗଗୁଡ଼ିକ ପ୍ରତି ବିଶେଷ ଦୃଷ୍ଟି ଦିଆଯିବା ଆବଶ୍ୟକ ।

(୧) ଅଭିବ୍ୟକ୍ତିର ମାଧ୍ୟମ ହେଲା ଭାଷା । ଯେଉଁ ବିଷୟରେ ପ୍ରବନ୍ଧ ଲେଖାଯାଉଛି, ତାହାକୁ ସହଜରେ ପାଠକ ନିକଟରେ ପହଞ୍ଚାଇବାକୁ ହେଲେ ଉପଯୁକ୍ତ ଭାଷାର ବ୍ୟବହାର ହେଉଛି ତେଣୁ ପ୍ରଥମ କଥା । ଅନୁକୂଳ ଶବ୍ଦ-ଗୁମ୍ଫନ ଦ୍ୱାରା ଯେଉଁ ବାକ୍ୟ ପ୍ରସ୍ତୁତ କରେ, ତାହା ସହଜରେ ପାଠକକୁ ପ୍ରଭାବିତ କରେ । ଭାବାନୁକୂଳ ଶବ୍ଦଯୋଜନା ଏବଂ ବ୍ୟାକରଣସମ୍ମତ ବାକ୍ୟରଚନା ପ୍ରବନ୍ଧର ସୌନ୍ଦର୍ଯ୍ୟରେ ପୂର୍ଣ୍ଣତା ଆଣେ ।

ନିୟମିତ ଅଧ୍ୟୟନ, କଥନ ଏବଂ ଲିଖନଦ୍ୱାରା ତାହା ମାର୍ଜିତ ହୁଏ । କୌଣସି ଶବ୍ଦର ବ୍ୟବହାରରେ କିଛି ଅସୁବିଧା ସୃଷ୍ଟିହେଲେ, ଏ ସମ୍ପର୍କରେ ପ୍ରଥମେ ନିଃସନ୍ଦେହ ହୋଇ ତାହାକୁ ବ୍ୟବହାର କରିବା ଉଚିତ; ନଚେତ୍ ତାହାକୁ ତ୍ୟାଗକରି ଉପଯୁକ୍ତ ଶୁଦ୍ଧ ପ୍ରତିଶବ୍ଦ ବ୍ୟବହାର କରାଯାଇପାରେ । ପ୍ରବାଦ, ପ୍ରବଚନ, ଲୋକୋକ୍ତିର ଯଥାଯଥ ବ୍ୟବହାର ପ୍ରବନ୍ଧରେ ନୂତନ ସୌନ୍ଦର୍ଯ୍ୟ ସୃଷ୍ଟି କରୁଥିବାରୁ ଏ ସବୁର ବ୍ୟବହାର କରାଯିବା ଏକାନ୍ତ ଆବଶ୍ୟକ ।

(୨) ପ୍ରବନ୍ଧ ଯେଉଁ ବିଷୟରେ ଲେଖାଯିବ, ପ୍ରଥମେ ସେ ବିଷୟରେ ଚିନ୍ତା କରାଯିବା ଉଚିତ । ବିଷୟଟିର କେଉଁ ଦିଗ ଉପରେ ଆଲୋକପାତ କରାଯିବ, କେତେ ବିଷୟ ଏହାର ଅନ୍ତର୍ଭୁକ୍ତ ହେବ, ଏ ସବୁ ବିଷୟରେ ପ୍ରାଥମିକ ଚିନ୍ତା କରାଯାଇଥିଲେ ପ୍ରବନ୍ଧଟି ସ୍ୱୟଂ-ସମ୍ପୂର୍ଣ୍ଣ ହୋଇପାରିବ ।

(୩) ଯେଉଁ ବିଷୟରେ ପ୍ରବନ୍ଧ ଲେଖାଯିବ ସେ ବିଷୟରେ ଚିନ୍ତା, ଆଲୋଚନା, ପୁସ୍ତକ-ପଠନ, ପ୍ରତ୍ୟକ୍ଷରେ ଦର୍ଶନ ଇତ୍ୟାଦି ଦ୍ୱାରା ଅନେକ ଭାବ ମନରେ ଉଦିତ ହେବ । ଭାବର ପରିମାଣ ଯେତେ ଅଧିକ ହେବ ପ୍ରବନ୍ଧର ରୂପ ସେତେ ମନୋଜ୍ଞ ହୋଇଉଠିବ ।

(୪) ଭାବର ସଜ୍ଜୀକରଣ ହେଉଛି ପ୍ରାବନ୍ଧିକ ନିମନ୍ତେ ଏକ ସମସ୍ୟା । କେଉଁ ଭାବ ପ୍ରଥମରୁ ସ୍ଥାନ ପାଇ କିଏ ପଛରେ ରହିବ, ଏଥିରୁ ହିଁ ପ୍ରାବନ୍ଧିକର ଦୂରଦୃଷ୍ଟିର ପ୍ରମାଣ ମିଳିଥାଏ । ନିର୍ଦ୍ଦିଷ୍ଟ ବିଷୟ ପାଇଁ ପ୍ରଥମରୁ କେତେକ ବିବରଣୀ କ୍ରମପୂର୍ବକ ସଜାଡ଼ିଦେଇ ତାହାର ଅନୁସରଣରେ ପ୍ରବନ୍ଧ ଲେଖିବା ଉଚିତ । ସାଧାରଣତଃ, ଏକ ପ୍ରବନ୍ଧକୁ ତିନି ଭାଗରେ ବିଭକ୍ତ କରାଯାଇପାରେ : (୧) ଆଦି, (୨) ମଧ୍ୟ ଓ (୩) ଅନ୍ତ । 'ଆଦି' ବା ଆରମ୍ଭ ଅଂଶରେ କିଛି ସୁନ୍ଦର ବାକ୍ୟ, ଘଟଣା, ପ୍ରଶ୍ନ ଇତ୍ୟାଦି ସ୍ଥାନପାଇପାରେ । ଏହି ଅଂଶରେ ବର୍ଣ୍ଣିତ ବିଷୟ ସମ୍ପର୍କରେ ଏକ ସାଧାରଣ ଧାରଣା ପାଠକମାନଙ୍କୁ ଦିଆଯାଇ-ପାରେ । 'ମଧ୍ୟ' ଅଂଶରେ ବର୍ଣ୍ଣିତ ବିଷୟ ସମ୍ପର୍କରେ ବିଶେଷ ଭାବରେ ଯାହା କୁହାଯିବାର କଥା, ତାହା ସ୍ଥାନପାଇଥାଏ । 'ଅନ୍ତ' ବା ଉପସଂହାର ଅଂଶରେ ପ୍ରାବନ୍ଧିକ ବର୍ଣ୍ଣିତ ବିଷୟ ଉପରେ ନିଜସ୍ୱ ମତାମତ ଲିପିବଦ୍ଧ କରିପାରନ୍ତି ଏବଂ ବିଷୟଟିର ସାର ସୁନ୍ଦର ଭାବରେ ବର୍ଣ୍ଣନା କରିପାରନ୍ତି ।

(୫) ଉପଯୁକ୍ତ ସ୍ଥାନରେ ବିରାମଚିହ୍ନର ବ୍ୟବହାର ସୁପ୍ରବନ୍ଧର ଏକ ଅତ୍ୟାବଶ୍ୟକ ଉପାଦାନ । କମା, ପୂର୍ଣ୍ଣଚ୍ଛେଦ, ଉଦ୍ଧୃତିଚିହ୍ନ, ପ୍ରଶ୍ନବାଚକଚିହ୍ନ, ଅର୍ଦ୍ଧବିରାମଚିହ୍ନଗୁଡ଼ିକ ଯଥାସ୍ଥାନରେ ବ୍ୟବହାର କରାଯାଇଥିଲେ ପ୍ରବନ୍ଧର ମର୍ଯ୍ୟାଦା ବୃଦ୍ଧିପାଏ ।

(୬) ଶବ୍ଦ, ବାକ୍ୟ ଇତ୍ୟାଦିର ଶୁଦ୍ଧ ବ୍ୟବହାର ଏବଂ ପରିଷ୍କାର ଭାବରେ ନିଜର ବକ୍ତବ୍ୟର ଉପସ୍ଥାପନା ପ୍ରବନ୍ଧର ମୂଲ୍ୟ ବଢ଼ାଇଥାଏ । ରଚନାର ପରିଚ୍ଛନ୍ନତା ପାଠକ ମନରେ ସମଗ୍ର ବିଷୟଟିକୁ ଏକାଥରକେ ପଢ଼ିଯିବାପାଇଁ ଆଗ୍ରହ ସୃଷ୍ଟିକରେ ଏବଂ ପରୀକ୍ଷାର୍ଥୀ ନିମନ୍ତେ ଏହା ଶୁଭଙ୍କର ହୋଇଥାଏ । ଅପ୍ରାସଙ୍ଗିକ, ଭ୍ରମପୂର୍ଣ୍ଣ, କପୋଳକଳ୍ପିତ ବିବରଣୀର

ଉଲ୍ଲେଖ ପ୍ରବନ୍ଧରେ ସମସ୍ତ ମହତ୍ତ୍ୱ ନଷ୍ଟ କରିଦେଉଥିବାରୁ, ଏ ସବୁକୁ ପରିହାର କରିବା ଆବଶ୍ୟକ । ଗୋଟିଏ ବିଷୟର ବାରମ୍ବାର ଉଲ୍ଲେଖ ପ୍ରବନ୍ଧରେ କରାନଯିବା ଉଚିତ ।

ଭାଷା ସାବଲୀଳ ଏବଂ ଏକରୂପବିଶିଷ୍ଟ ହେବା ଅବଶ୍ୟକ । ଏହା ପୂର୍ଣ୍ଣ ଅନ୍ୟର ଅନ୍ଧାନୁକରଣ ନହୋଇ ପ୍ରାବନ୍ଧିକଙ୍କର ସମ୍ପୂର୍ଣ୍ଣ ନିଜସ୍ୱ ହୋଇଥିଲେ ଅଧିକ ପ୍ରଭାବଶାଳୀ ହୋଇଥାଏ । ଯାହା ଅନ୍ୟଠାରୁ ଉଦ୍ଧାର କରିଯାଇ ପ୍ରବନ୍ଧରେ ବ୍ୟବହାର କରାଯାଏ, ସେ ସବୁ ଉଦ୍ଧୃତିଚିହ୍ନ ମଧ୍ୟରେ ଠିକ୍ ଭାବରେ ଲିପିବଦ୍ଧ ହେବା ଆବଶ୍ୟକ ।

ମୌଳିକ ପ୍ରବନ୍ଧ ମଧ୍ୟରେ ପ୍ରାବନ୍ଧିକଙ୍କର ଜ୍ଞାନ, ଚିନ୍ତାଶକ୍ତି, ଅଧ୍ୟୟନ, ଦର୍ଶନ, ଉପସ୍ଥା-ପନର କୌଶଳ, ବିଷୟଗ୍ରହଣ ଶକ୍ତି ଇତ୍ୟାଦି ପ୍ରକାଶିତ ହେଉଥିବାରୁ, ଏ ସବୁ ବିଷୟରେ ପ୍ରାବନ୍ଧିକ ଅତ୍ୟନ୍ତ ସାବଧାନ ହେବା ଉଚିତ ।

# ଯୌତୁକ ପ୍ରଥା ଏକ ସାମାଜିକ ବ୍ୟାଧି

ସମାଜଜୀବନକୁ ସୁସ୍ଥ, ନିୟମିତ ତଥା ଶୃଙ୍ଖଳିତ କରିବା ନିମନ୍ତେ ବିବାହ ପ୍ରଥାର ସୃଷ୍ଟି କରାଯାଇଥିଲା । ମାନବ-ସଭ୍ୟତାର ଆଦିକାଳରେ ଶୃଙ୍ଖଳିତ ସମାଜ ବୋଲି କିଛି ନଥିଲା । ସେତେବେଳେ ନାରୀ ଏବଂ ପୁରୁଷ ମଧ୍ୟରେ ସମ୍ପର୍କ ଥିଲା ଏକାନ୍ତଭାବରେ ଦୈହିକ । ଏହାର କୁପରିଣାମ ଯୋଗୁ ପରବର୍ତ୍ତୀ କାଳରେ ଏହାକୁ ଅନୈତିକ ବିବେଚନା କରାଯାଇ, ଏକ ପବିତ୍ର ଅନୁଷ୍ଠାନ ମାଧ୍ୟମରେ ନାରୀ ଏବଂ ପୁରୁଷକୁ ସାରା ଜୀବନ ପାଇଁ ସାମାଜିକ ନିୟମଦ୍ୱାରା ବାନ୍ଧିଦିଆଗଲା । ନାରୀର ଦାୟିତ୍ୱ ବହନକରି ତାହାର ଭରଣପୋଷଣର ଭାର ଗ୍ରହଣ କରିବା ନିମନ୍ତେ ପୁରୁଷକୁ ଅଧିକାର ଦିଆଗଲା । ପୁରୁଷ ହେଲା ଭର୍ତ୍ତା । କନ୍ୟାପିତା ଯଥାଶକ୍ତି ସାଲଙ୍କାର କନ୍ୟାଦାନ କରି ନିଜର ଦାୟିତ୍ୱ ଶେଷକରୁଥିଲେ । ବର୍ତ୍ତମାନ କିନ୍ତୁ ପରିସ୍ଥିତି ସମ୍ପୂର୍ଣ୍ଣ ବଦଳିଯାଇଛି । ଆଜି କନ୍ୟାସହିତ ନଗଦ ଅର୍ଥ ଏବଂ ଅନ୍ୟାନ୍ୟ ଉପହାର ସାମଗ୍ରୀ ଦେବାର ବ୍ୟବସ୍ଥା ଏତେ ବ୍ୟାପକ ହୋଇପଡ଼ିଛି ଯେ, ପରିବାରରେ ଝିଅଟିଏ ଜନ୍ମହେଲେ କନ୍ୟାପିତାଙ୍କର ମୁଣ୍ଡରେ ବୋଝ ମାଡ଼ିବସୁଛି । ପାର୍ବତୀଙ୍କ ଜନ୍ମକାଳରେ ପିତା ହିମାଳୟଙ୍କୁ ମଧ୍ୟ ଏହି ମନୋବେଦନାର ଶରବ୍ୟ ହେବାକୁ ପଡ଼ିଥିଲା । କାରଣ—

ଜାତେତି କନ୍ୟା ମହତୀ ହି ଚିନ୍ତା
କସ୍ମୈ ପ୍ରଦେୟେତି ମହାନ୍ ବିତର୍କଃ,
ଦତ୍ତ୍ୱା ସୁଖଂ ପ୍ରାପ୍ସ୍ୟତି ବା ନ ବେତି
କନ୍ୟା ପିତୃତ୍ୱଂ ଖଳୁ ନାମ କଷ୍ଟମ୍ ! (କୁମାରସମ୍ଭବ)

ସେତେବେଳେ ଝିଅଟି କେଉଁ ପରିବାରରେ କିଭଳି ଭାବରେ ଯାଇ ଜୀବନ କଟାଇବ, ଏହା ଥିଲା ପିତାମାତାଙ୍କର ପ୍ରଧାନ ଚିନ୍ତାର ବିଷୟ । ମାତ୍ର ବର୍ତ୍ତମାନ ଯୌତୁକ ପ୍ରଥାର

ବିଭୀଷିକା କନ୍ୟାର ପରିବାରରେ ଏକ ଭୟଙ୍କର ଅବସ୍ଥା ସୃଷ୍ଟି କରିଛି । ଏହାଦ୍ୱାରା ସାମାଜିକ ପ୍ରଗତି ଓ ସଦ୍‌ଭାବ ଯଥେଷ୍ଟ ବାଧାପ୍ରାପ୍ତ ହେଉଛି । ଅନେକ ଶିକ୍ଷିତା ଏବଂ ଗୁଣବତୀ କନ୍ୟା କେବଳ ଏହି ଯୌତୁକ ନିମନ୍ତେ ଅନେକ କ୍ଷେତ୍ରରେ ବିବାହ କରିପାରୁ ନାହାନ୍ତି । ବିବାହ କୌଣସିମତେ ହୋଇଗଲେ ସୁଦ୍ଧା ପରେ ନିସ୍ତାର ନାହିଁ । ଯୌତୁକର ସ୍ୱଳ୍ପତା ନିମନ୍ତେ ଅନେକତ୍ର ବରପକ୍ଷ କନ୍ୟାକୁ ନିୟମିତ ଭର୍ତ୍ସନାପୀଡ଼ିତ କରୁଥିବାରୁ ଅପମାନିତା କନ୍ୟାର ଜୀବନ ଦୁର୍ବିସହ ହୋଇପଡ଼ୁଛି । କେତେକ ମଧ୍ୟ ଆତ୍ମହତ୍ୟା କରୁଛନ୍ତି । ଦୁଃଖ ଓ କ୍ଷୋଭର କଥା ସାମାଜିକ ଜୀବନର ପ୍ରତ୍ୟେକ ସ୍ତରରେ ଏହି ବ୍ୟାଧି ଦ୍ରୁତଗତିରେ ପ୍ରସାର ଲାଭକରୁଛି । ଯେଉଁମାନେ ଏହାକୁ ଏକ ଭୟଙ୍କର ସାମାଜିକ ବ୍ୟାଧି ବୋଲି ପାଟିତୁଣ୍ଡ କରୁଛନ୍ତି ସେମାନେ ମଧ୍ୟ ସେଥିରୁ ନିଜକୁ ଦୂରେଇ ରଖିପାରୁ-ନାହାନ୍ତି ।

ପୂର୍ବକାଳରେ ଯୌତୁକ ଦେବାନେବା ଯେ ଆଦୌ ନଥିଲା, ତାହା ନୁହେଁ । ତେବେ ସେତେବେଳେ ଏହା ଦାବୀ ରୂପରେ ଗୃହୀତ ହେଉନଥିଲା । କନ୍ୟାପିତା ଯଥାଶକ୍ତି ଦେଉଥିଲେ ଏବଂ ପରବର୍ତ୍ତୀ କାଳରେ ଏଥିପାଇଁ କନ୍ୟାକୁ ବରପକ୍ଷର କଟୂକ୍ତିବାଣର ଶରବ୍ୟ ହେବାକୁ ପଡ଼ୁନଥିଲା । ସାମାନ୍ୟ ଗୋଟିଏ ଦୁଇଟି ଗାଈ, କିଛି ଭୂମି ଏବଂ ଶକ୍ତି ଅନୁଯାୟୀ ସୁବର୍ଣ୍ଣ ଦାନରେ କନ୍ୟାଦାନ ବିଧାନ ଚାଲିଯାଉଥିଲା । ଭର୍ତ୍ତା ରୂପରେ ସ୍ୱାମୀ ଘୋଷଣା କରୁଥିଲା ଯେ, ସ୍ତ୍ରୀର ପ୍ରତିପୋଷଣ ପାଇଁ ତା' ଘରେ ଅନ୍ନ, ବସ୍ତ୍ର ଏବଂ ଅନ୍ୟାନ୍ୟ ସାମଗ୍ରୀର କୌଣସି ଅଭାବ ନାହିଁ । ସେତେବେଳେ କନ୍ୟାପିତାଠାରୁ ବିଭିନ୍ନ ବିଳାସଦ୍ରବ୍ୟ କିମ୍ବା ନଗଦ ଅର୍ଥ ଦାବୀ କରିବାର ଚଳଣି ନଥିଲା । ଧନରତ୍ନଦ୍ୱାରା ବରପକ୍ଷକୁ ସନ୍ତୁଷ୍ଟ କରି କନ୍ୟା ବିବାହ ଦେବା ପ୍ରଥାକୁ ଶାସ୍ତ୍ରଜ୍ଞ ମନୁ 'ଆସୁରବିବାହ' ବୋଲି କହିଥିଲେ ।

ଜ୍ଞାତିଭ୍ୟୋ ଦ୍ରବିଣଂ ଦତ୍ତ୍ୱା କନ୍ୟାୟୈଚୈବଶକ୍ତିତଃ କନ୍ୟା ପ୍ରଦାନଂ ବିଧିବତ୍, ଆସୁରୋ ଧର୍ମ ଉଚ୍ୟତେ । ଆସୁରବିବାହ ସେ କାଳର ଏକ ନିକୃଷ୍ଟ ବିବାହ ପ୍ରଥା । ସେଥିରେ ସୁଦ୍ଧା 'ଯଥାଶକ୍ତି' ଦାନର ଉଲ୍ଲେଖ ରହିଛି । ଯୌତୁକ ନିମନ୍ତେ ବରପକ୍ଷର କୌଣସି ଦାବୀ ନଥିଲା । ସେ କାଳର 'ଅସୁର'ମାନେ ହୁଏତ ଆଜିକାଲିକାର ସଭ୍ୟ ସମାଜପତିଙ୍କଠାରୁ କମ୍ ଲୋଭୀ ଥିଲେ ।

ଆଜିକାଲି ତ ନିର୍ବନ୍ଧ ଦିନଠାରୁ କନ୍ୟାପିତାଙ୍କର ଯୌତୁକ ପଠାଇବା ଆରମ୍ଭ ହୋଇଯାଉଛି । ଅମୁକ କମ୍ପାନୀର ଫ୍ରିଜ୍, ସମୁକ କମ୍ପାନୀର ଟେଲିଭିଜନ୍, ଏ କମ୍ପାନୀର ଘଣ୍ଟା, ସେ କମ୍ପାନୀର ଫ୍ୟାନ୍, ଏମିତି ଦାବୀର ତାଲିକା ଚାଲିଆସୁଛି । ବରପକ୍ଷର ଦାବୀର ସୀମା କ୍ରମଶଃ ବିସ୍ତୃତ ହେଉଛି ଏବଂ ଯେଉଁଠି ଦାବୀପୂରଣରେ ସାମାନ୍ୟ ଅସୁବିଧା ହେଉଛି, ସେ କ୍ଷେତ୍ରରେ ବିବାହ ଭାଙ୍ଗିଯାଉଛି । କୌଣସିମତେ ବିବାହ ହୋଇଗଲେ ସୁଦ୍ଧା ବିପଦର ଶେଷ ହେଉନାହିଁ । ପାନରୁ ଚୂନ ଖସିଲେ ତା'ର ପରିଣାମ ଭୋଗ କରିବାକୁ ପଡ଼ୁଛି ନିରୀହା କନ୍ୟାକୁ । ବିବାହ ସମ୍ପୂର୍ଣ୍ଣରୂପେ ବର୍ତ୍ତମାନ ଏକ ବିକାକିଣାର ବ୍ୟାପାର ହୋଇ-ପଡ଼ୁଛି । ଫଳରେ ଧନୀକନ୍ୟା ରୂପବତୀ, ଗୁଣବତୀ ନହୋଇ ମଧ୍ୟ ସହଜରେ ବିବାହ

ଭିକମାଗୁଛି । ନିର୍ଦ୍ଧନ ନିଜର କନ୍ୟା ନିମନ୍ତେ ଜାମାତାଟିଏ ପାଇପାରୁନାହିଁ । ଘରଦ୍ୱାର, ଜମିବାଡ଼ି ବିକି କରି ସର୍ବସ୍ୱାନ୍ତ ହୋଇ, ହୁଏତ ଦରିଦ୍ର କନ୍ୟାପିତା ନିଜର କନ୍ୟାକୁ ଶ୍ୱଶୁରାଳୟକୁ ପଠାଇପାରୁଛି । ଗରିବ ପିତାର କନ୍ୟା ନିଜେ ରୋଜଗାର କରି ବିବାହ କରିବା ନିମନ୍ତେ ଚେଷ୍ଟା କରୁ କରୁ ଅନେକ କ୍ଷେତ୍ରରେ କନ୍ୟାର ବିବାହ ବୟସ ଉତ୍ତୀର୍ଣ୍ଣ ହୋଇଯାଉଛି । ଉପଯୁକ୍ତ ସମୟରେ ବିବାହ ନ ହେବା ଫଳରେ କେତେକ ଅନୈତିକ ଜୀବନଧାରାରେ ପଡ଼ି ସାମାଜିକ ସଙ୍କଟ ମଧ୍ୟ ସୃଷ୍ଟି କରିଦେଉଛନ୍ତି । ଆମ ସମାଜ ଯେ ପଦେ ପଦେ ବିପର୍ଯ୍ୟସ୍ତ ଅଡ଼କୁ ଆଗେଇଯାଉଛି, ଏହାର ଅନ୍ୟତମ କାରଣ ହେଉଛି ଏଇ ଯୌତୁକ ପ୍ରଥା ।

ଆମ ସମାଜ ନିମନ୍ତେ ଏହି ପ୍ରଥା ଏକ ଅଭିଶାପ ବ୍ୟତୀତ ଅନ୍ୟ କିଛି ନୁହେଁ । କାରଣ ବର ଏବଂ କନ୍ୟା କେବଳ ମାତ୍ର ଅର୍ଥମୂଲ୍ୟରେ ନିର୍ବାଚିତ ହେଉଥିବାରୁ ଅନେକ କ୍ଷେତ୍ରରେ ବିବାହ-ପରବର୍ତ୍ତୀ ଜୀବନରେ ଏମାନଙ୍କର ମନର ମିଳନ ହେଉନାହିଁ ଏବଂ ପରିଣାମରେ ପାରିବାରିକ ଜୀବନ ବିଷମୟ ହୋଇଉଠୁଛି । ଗୃହପତ୍ର ଏବଂ ବ୍ୟଭିଚାର ବଢ଼ୁଛି । ଏଭଳି ପରିବାରର ଶିଶୁ ଅନାଥ ଏବଂ ଅବହେଳିତ ଜୀବନ ଯାପନ କରି ଭବିଷ୍ୟତ ନିମନ୍ତେ ସମସ୍ୟା ହୋଇ ରହୁଛନ୍ତି । କେତେ ଅମୂଲ୍ୟ ପ୍ରାଣ ବି ଅକାଳରେ ଝରିଯାଉଛି ।

ବର୍ତ୍ତମାନ ସରକାରୀ ସ୍ତରରେ ଯୌତୁକ ପ୍ରଥା ବିରୁଦ୍ଧରେ ବ୍ୟବସ୍ଥା ଅବଶ୍ୟ ଗ୍ରହଣ କରାଯାଉଛି । ସରକାରୀ ଆଇନ୍‌ରେ କେବଳମାତ୍ର ପାଞ୍ଚହଜାର ଟଙ୍କା ପର୍ଯ୍ୟନ୍ତ ଯୌତୁକ ରୂପରେ ଦିଆଯିବାର ବ୍ୟବସ୍ଥା ରହିଛି । ଯେଉଁମାନେ ଆଇନ୍‌ର ଖିଲାପ୍ କରିବେ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାର ବ୍ୟବସ୍ଥା ମଧ୍ୟ ଏଥିରେ ରହିଛି । ମାତ୍ର ବାସ୍ତବ କ୍ଷେତ୍ରରେ ଏହି ନିର୍ଦ୍ଦେଶନାମା କେବଳ କାଗଜପତ୍ର ମଧ୍ୟରେ ବନ୍ଦୀ ହୋଇ ରହିଯାଇଛି । ଫଳରେ ବରପକ୍ଷ ଖୋଲାଖୋଲି ଭାବରେ ଯୌତୁକ ନେଉଛନ୍ତି ଏବଂ କନ୍ୟାପକ୍ଷ ନିରୁପାୟ ହୋଇ ତାହା ଦେଉଛନ୍ତି । ନିଜ ସନ୍ତାନର ସୁଖ କିଣିବା ନିମନ୍ତେ, ବଡ଼ ଆଶ୍ଚର୍ଯ୍ୟର କଥା, ଯେଉଁମାନେ ବରପକ୍ଷ ରୂପରେ ପ୍ରଚୁରରୁ ପ୍ରଚୁରତର ଯୌତୁକ ଦାବୀ କରି ଗ୍ରହଣ କରୁଛନ୍ତି, ସେହିମାନେ ପୁଣି ଅଧିକାଂଶ କ୍ଷେତ୍ରରେ କନ୍ୟାପକ୍ଷ ରୂପରେ ଏହି ପ୍ରଥାର ନିନ୍ଦାଗାନ କରୁଛନ୍ତି । ନିଜପାଇଁ ଯାହା ସେମାନଙ୍କୁ ନିତାନ୍ତ ଦୂଷଣୀୟ ମନେହେଉଛି, ନିଜକୁ ଅନ୍ୟର ଆସନରେ ଥୋଇ ଅନ୍ୟର ମାନସିକ ଅବସ୍ଥା ବିଶ୍ଳେଷଣ କଲେ କେବଳ ସମାଜର ମଙ୍ଗଳ ହୋଇପାରେ ।

ଲୋଭ ମନୁଷ୍ୟର ଏକ ସହଜାତ କୁପ୍ରବୃତ୍ତି । ବିନା ଆୟାସରେ ଧନସମ୍ପଦ ଲାଭର ମୋହ ଲାଳସାରେ ଅନେକେ ଆଜି ସ୍ୱପ୍ନବିଭୋର । ଏଭଳି ବ୍ୟକ୍ତିମାନେ ଭାବନ୍ତି, ପୁତ୍ର-ସନ୍ତାନ ସହଜ ଧନ ସଂଗ୍ରହର ଏକ ମାଧ୍ୟମ । ବର୍ତ୍ତମାନ ଏହି କଳଙ୍କିତ ପ୍ରଥା ସାମାଜିକ ଜୀବନର ଏତେ ଗଭୀରକୁ ପ୍ରବେଶ କରିଗଲାଣି ଯେ, ଅତି କଠୋର ଆଇନ୍ ବ୍ୟବସ୍ଥା ବ୍ୟତୀତ ଏହାକୁ ଦୂର କରାଯାଇ ନପାରେ । ଏଥି ନିମନ୍ତେ ସାମାଜିକ ସ୍ତରରେ ଏକ ଆନ୍ଦୋଳନ ଏକାନ୍ତ ଆବଶ୍ୟକ । ନାରୀଶିକ୍ଷାର ବ୍ୟାପକ ବ୍ୟବସ୍ଥା, ପୁତ୍ର ଏବଂ କନ୍ୟାଙ୍କ ମଧ୍ୟରେ ପାର୍ଥକ୍ୟ

ଦୂରୀକରଣ ତଥା ସାମାଜିକ ଅଜ୍ଞତା ଲୋପ ଏହି ପ୍ରଥାର ବିଲୋପରେ ସହାୟକ ହୋଇପାରେ । ଯେଉଁମାନେ ଯୌତୁକ ନେଉଛନ୍ତି ଏବଂ ଯେଉଁମାନେ ଦେଉଛନ୍ତି, ଉଭୟଙ୍କୁ ସାମାଜିକ ଜୀବନରୁ ବାସନ୍ଦ କରିଦିଆଗଲେ ସୁଫଳ ମିଳିପାରେ ।

ବିବାହ ମନୁଷ୍ୟଜୀବନର ଚରମ ଲକ୍ଷ୍ୟ ନୁହେଁ । ଅବିବାହିତା କନ୍ୟା ମଧ୍ୟ ସତ୍କାର୍ଯ୍ୟରେ ନିଜର ଜୀବନ ଉତ୍ସର୍ଗ କରିପାରେ । ବରଂ କନ୍ୟା ଅବିବାହିତା ରହୁ, ତାକୁ ଯୌତୁକଲୋଭୀ ବରପାତ୍ର ହାତରେ କଦାପି ଟେକିଦିଆଯିବନାହିଁ—ଯେ ପର୍ଯ୍ୟନ୍ତ କନ୍ୟାପକ୍ଷୀୟମାନେ ଏଭଳି ମନୋଭାବ ପୋଷଣ କରିନାହାନ୍ତି, ସେ ପର୍ଯ୍ୟନ୍ତ ଏ ସମସ୍ୟା ଦୂର ହୋଇପାରିବ ନାହିଁ । ସମାଜ-ସେବା ସଂସ୍ଥାମାନଙ୍କର ମଧ୍ୟ ଏ ଦିଗରେ ଗୁରୁଦାୟିତ୍ୱ ରହିଛି । ଯେଉଁଠାରେ ଏଭଳି ସମସ୍ୟା ଉପୁଜୁଛି, ଏହି ସଂସ୍ଥାମାନେ ସେଠାରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତୁ । ସରକାର ମଧ୍ୟ ଏମାନଙ୍କ ସହିତ ସହଯୋଗ କରି ଏହି ସାମାଜିକ ଦଲାବଜାସ୍ମମାନଙ୍କୁ ସମୂଳେ ଉତ୍ପାଟନ କରନ୍ତୁ । ଆମ ଭିତରେ ଥିବା ଜାତିଅଣ ମନୋଭାବର ଲୋପ ମଧ୍ୟ ଏହି ଯୌତୁକ ବ୍ୟାଧି କବଳରୁ ମୁକ୍ତ ପାଇବାରେ ଆମକୁ ସାହାଯ୍ୟ କରିପାରିବ । କୌଣସି କାରଣରୁ ହୁଏତ କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀରେ ପୁରୁଷମାନଙ୍କର ସଂଖ୍ୟା କମ୍ ହୋଇ-ପାରେ । ସେ କ୍ଷେତ୍ରରେ ଉପଯୁକ୍ତ ପାତ୍ର ନିମନ୍ତେ କନ୍ୟାପକ୍ଷୀୟମାନଙ୍କର ପ୍ରତିଦ୍ୱନ୍ଦ୍ୱିତା ବଢ଼ିବ । ଏଭଳି କ୍ଷେତ୍ରରେ ଯଦି ନିଜ ଜାତି ବାହାରେ ସୁଦ୍ଧା ସମ୍ବନ୍ଧ ସ୍ଥାପନ କରିବାର ପରମ୍ପରା ସୃଷ୍ଟି ହୁଏ, ତେବେ ଏ ସମସ୍ୟା ଅନେକ ପରିମାଣରେ କମିଯିବ ।

ଯୌତୁକ ପ୍ରଥା ଦୂର କରିବା ନିମନ୍ତେ ସରକାର, ସମାଜ-ସେବା ସଂସ୍ଥା ତଥା ପ୍ରତ୍ୟେକ ନାଗରିକ ସମବେତଭାବରେ ଲାଗିପଡ଼ିଲେ ହିଁ କେବଳ ସୁଫଳ ମିଳିବ । ନଚେତ୍ ଏହି ପ୍ରଥାର ଭୟଙ୍କର ପରିଣାମ ଅଦୂର ଭବିଷ୍ୟତରେ ସମାଜଜୀବନକୁ ତ ପଙ୍ଗୁ କରିଦେବ—ସେତେବେଳେ ଆମର ଅବସ୍ଥା କ'ଣ ହେବ ?

## ଭାରତରେ ଗଣତନ୍ତ୍ର ଶାସନ

ଭାରତ ଏକ ବିଶାଳ ଦେଶ । ସ୍ୱାଧୀନତା ଲାଭ ପରେ ଏଠାରେ ଗଣତାନ୍ତ୍ରିକ ଶାସନର ପ୍ରଚଳନ କରିଯାଇଛି । ଗଣତନ୍ତ୍ର ଶାସନର ରୂପ ନିର୍ଦ୍ଦେଶ କରି ଆମେରିକାର ପ୍ରାକ୍ତନ ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ୍ କହିଥିଲେ, "Government is of the people, by the people and for the people." ଅର୍ଥାତ୍ ଏହା ଜନସାଧାରଣଙ୍କର, ଜନସାଧାରଣଙ୍କ ମଙ୍ଗଳ ନିମନ୍ତେ ଏବଂ ଜନସାଧାରଣଙ୍କଦ୍ୱାରା ଶାସନ । ଏହି ଧରଣର ଶାସନ ପଦ୍ଧତି ଆମେରିକା, ଫ୍ରାନ୍ସ ଏବଂ ବ୍ରିଟେନ୍ ପ୍ରଭୃତି ଦେଶରେ ପ୍ରଚଳିତ । ପୂର୍ବକାଳରେ ରାଜାମହାରାଜାମାନେ ବଂଶାନୁକ୍ରମେ ଦେଶର କର୍ତ୍ତା ଥିଲେ । ସେମାନଙ୍କର ଖିଆଲ ଖୁସି ଉପରେ ଶାସନ ନିର୍ଭର କରୁଥିଲା । ରାଜାମାନଙ୍କୁ ଦେବତାଙ୍କର ସମଗୋଷ୍ଠୀୟ

ଅନେକଙ୍କଦ୍ୱାରା କୁହାଯାଇଥିଲା, "ମହାତ୍ମା ଦେବତା ହେଁ ଏସା ନରରୂପେଣ ଉତ୍ଥିତ ।" ସ୍ୱାଧୀନତା ଲାଭ ପରେ ଦେଶର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ଥିବା ରାଜତନ୍ତ୍ର ଲୋପପାଇଛି । ଦେଶର ତତ୍କାଳୀନ ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏହି କାର୍ଯ୍ୟ ସାଧନ କରି ଇତିହାସରେ ଚିରସ୍ମରଣୀୟ ରହିଛନ୍ତି ।

ସ୍ୱାଧୀନତା ଲାଭ ପରେ ୧୯୫୦ ମସିହା ଜାନୁୟାରୀ ୨୬ ତାରିଖଠାରୁ ଭାରତରେ ନୂତନ ସମ୍ବିଧାନ ପ୍ରଚଳିତ ହେଲା । ସେହିଦିନଠାରୁ ଭାରତ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହେଲା । ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ଭାରତୀୟ ଭୋଟ-ଦାନର ଅଧିକାର ପାଇଲେ ଏବଂ ଲୋକପ୍ରତିନିଧିରୂପେ ନିର୍ବାଚିତ ହେବା ନିମନ୍ତେ ପ୍ରତିଦ୍ୱନ୍ଦ୍ୱିତା କରିବାର ସୁଯୋଗ ମଧ୍ୟ ସେମାନଙ୍କୁ ମିଳିଲା । ଏଥିପାଇଁ କୌଣସି ଶିକ୍ଷାଗତ ଯୋଗ୍ୟତାର ଆବଶ୍ୟକତା ରହିଲା ନାହିଁ । ଏକୋଇଶ ବର୍ଷ ବୟସ୍କ ପ୍ରତ୍ୟେକ ନାଗରିକ ଭୋଟଦାତା ହୋଇପାରିଲେ । ଭୋଟଦାନ ନିମନ୍ତେ ସମସ୍ତଙ୍କୁ ସମାନ ଅଧିକାର ଦିଆଗଲା ।

ବିଶାଳ ଏହି ଦେଶରେ ଯେତେ ଦେଶୀୟ ରାଜ୍ୟ ତଥା ଜମିଦାରୀମାନ ଥିଲା, ସେ ସବୁକୁ ଭାଙ୍ଗି ଭାରତରେ ମିଶାଇଦିଆଗଲା । ଓଡ଼ିଶାରେ ଥିବା ଛବିଶଟି ଗଡ଼ଜାତ ରାଜ୍ୟ ମଧ୍ୟ ଏହି ସମୟରେ ହିଁ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ମିଶିଗଲେ । ଏହି ଉପାୟରେ ଭାରତରେ ଯେତେ ନୂତନ ରାଜ୍ୟ ଗଢ଼ାଗଲା, ସେଗୁଡ଼ିକ କେତେ ବ୍ୟାପାରରେ ଶାସନଗତ ସ୍ୱାଧୀନତା ପାଇଲେ ମଧ୍ୟ କେତେ ଗୁରୁତ୍ୱପୂର୍ଣ୍ଣ ବ୍ୟାପାରରେ କେନ୍ଦ୍ରୀୟ ଶାସନ-ବ୍ୟବସ୍ଥାର ନିୟନ୍ତ୍ରଣାଧୀନ ହୋଇ ରହିଲେ । ରାଷ୍ଟ୍ରପତି ହେଉଛନ୍ତି ରାଷ୍ଟ୍ରର ଶାସନ-ମୁଖ୍ୟ ଏବଂ ପ୍ରତି ପାଞ୍ଚବର୍ଷରେ ଏହାଙ୍କର ନିର୍ବାଚନ ହୋଇଥାଏ । ଉପ-ରାଷ୍ଟ୍ରପତି ଶାସନକାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରନ୍ତି । ଆମ ଦେଶର ରାଷ୍ଟ୍ରପତି ଅପ୍ରତ୍ୟକ୍ଷ (Indirect) ରୂପେ ନିର୍ବାଚିତ ହୁଅନ୍ତି । ଜନତାଙ୍କ ଦ୍ୱାରା ନିର୍ବାଚିତ ପାର୍ଲିଆମେଣ୍ଟ ଓ ବିଧାନସଭା ସଦସ୍ୟବୃନ୍ଦ ରାଷ୍ଟ୍ରପତି ତଥା ଉପ-ରାଷ୍ଟ୍ରପତିଙ୍କୁ ବାଛନ୍ତି । କେନ୍ଦ୍ରୀୟ ଶାସନ ପରିଚାଳନା ନିମନ୍ତେ ପ୍ରତି ପାଞ୍ଚବର୍ଷରେ ଥରେ ଲୋକପ୍ରତିନିଧିମାନେ ଜନତାଙ୍କ ଦ୍ୱାରା ସିଧାସଳଖ ନିର୍ବାଚିତ ହୁଅନ୍ତି ।

ଲୋକସଭାରେ ଯେଉଁ ଦଳର ପ୍ରାର୍ଥୀ ଅଧିକ ସଂଖ୍ୟକ ହୋଇଥାଆନ୍ତି, ସେମାନେ ଶାସନ ବ୍ୟବସ୍ଥା କରିବା ନିମନ୍ତେ ହକ୍‌ଦାର ହୁଅନ୍ତି । ସେମାନେ ନିଜର ନେତା ବାଛିଦେଲା ପରେ ରାଷ୍ଟ୍ରପତି ତାଙ୍କୁ ହିଁ ଶାସନ ଦାୟିତ୍ୱ ଗ୍ରହଣ କରିବା ନିମନ୍ତେ ନିମନ୍ତ୍ରଣ କରନ୍ତି । ସେ ହୁଅନ୍ତି ଦେଶର ପ୍ରଧାନମନ୍ତ୍ରୀ । ପ୍ରଧାନମନ୍ତ୍ରୀ ପୁଣି ଶାସନକାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ଦଳ ମଧ୍ୟରୁ ଯୋଗ୍ୟ ଲୋକଙ୍କୁ ବାଛି ସେମାନଙ୍କ ସାହାଯ୍ୟରେ ଗୋଟିଏ ମନ୍ତ୍ରିପରିଷଦ ଗଢ଼ି ଭିନ୍ନ ଭିନ୍ନ ବିଭାଗର ଦାୟିତ୍ୱ ଭିନ୍ନ ଭିନ୍ନ ମନ୍ତ୍ରୀଙ୍କ ହାତରେ ନ୍ୟସ୍ତ କରନ୍ତି । ଲୋକସଭା ବ୍ୟତୀତ ଶାସନକାର୍ଯ୍ୟ ପରିଚାଳନା ନିମନ୍ତେ କେନ୍ଦ୍ରରେ ରାଜ୍ୟସଭା ବୋଲି ସ୍ୱତନ୍ତ୍ର ଏକ ପରିଷଦ ମଧ୍ୟ ଥାଏ । ରାଜ୍ୟସଭାର ପ୍ରତିନିଧି ନିର୍ବାଚିତ ହୁଅନ୍ତି ଅପ୍ରତ୍ୟକ୍ଷ ରୂପରେ । କଳା, ସଂସ୍କୃତି ଏବଂ ସାହିତ୍ୟ କ୍ଷେତ୍ରରେ ବିଶେଷ କୃତିତ୍ୱ ଦେଖାଇଥିବା ବ୍ୟକ୍ତିମାନଙ୍କୁ ଏଥିପାଇଁ ବଛାଯାଏ । ଉଭୟ ସଭା ମିଳି ଆଇନ ପ୍ରସ୍ତୁତ କରନ୍ତି ଏବଂ ଦେଶରେ ତାହାର ପ୍ରଚଳନ

ମଧ୍ୟ କରନ୍ତି । ପ୍ରତ୍ୟେକ ଆଇନ୍‌କୁ ବାଧ୍ୟବାଧକ କରିବା ନିମନ୍ତେ ଏଥିରେ ରାଷ୍ଟ୍ରପତିଙ୍କର ସ୍ୱାକ୍ଷର ନିଆଯାଏ ।

ରାଷ୍ଟ୍ରପତି ଆମ ଦେଶର ଆଳଙ୍କାରିକ ଶାସନ-ମୁଖ୍ୟ । କେନ୍ଦ୍ରର ମନ୍ତ୍ରିମଣ୍ଡଳ ସଭାର ନିଷ୍ପତ୍ତି ବିରୁଦ୍ଧରେ ଯିବାର ସ୍ୱାଧୀନତା ତାଙ୍କର ନଥାଏ । ଏ ଦୃଷ୍ଟିରୁ ଆମେରିକାର ରାଷ୍ଟ୍ରପତି ବେଶୀ ଅଧିକ କ୍ଷମତାର ଅଧିକାରୀ । ବ୍ରିଟେନ୍‌ରେ ତ ରାଷ୍ଟ୍ରପତି ନଥାନ୍ତି – ତା' ବଦଳରେ ରାଜା ହିଁ ଶାସନ-ମୁଖ୍ୟ ହୋଇଥାନ୍ତି । ତେବେ ତାଙ୍କୁ ମନ୍ତ୍ରିପରିଷଦର ନିଷ୍ପତ୍ତି ମାନି ଚଳିବାକୁ ପଡ଼ିଥାଏ ।

କେନ୍ଦ୍ରଭଳି ପ୍ରତ୍ୟେକ ରାଜ୍ୟରେ ମଧ୍ୟ ବିଧାନସଭା ଓ କେତେକ ରାଜ୍ୟରେ ବିଧାନ ପରିଷଦ ନାମରେ ଦୁଇଟି ସଭା ଥାଏ । କେନ୍ଦ୍ରଦ୍ୱାରା ନିଯୁକ୍ତ ରାଜ୍ୟପାଳ ହେଉଛନ୍ତି ରାଜ୍ୟର ଶାସନ-ମୁଖ୍ୟ । ତାଙ୍କୁ ବିଧାନସଭାରେ ଗୃହୀତ ହୋଇଥିବା ବିଲଗୁଡ଼ିକୁ ଅନୁମୋଦନ କରିବାକୁ ପଡ଼ିଥାଏ । ଏହି ସବୁ ରାଜ୍ୟ ବ୍ୟତୀତ ଭାରତରେ କିଛି କେନ୍ଦ୍ରଶାସିତ ଅଞ୍ଚଳ ମଧ୍ୟ ରହିଛି— ଯାହାର ଶାସନ ଦାୟିତ୍ୱ ସିଧାସଳଖ କେନ୍ଦ୍ରସ୍ତରରେ ନ୍ୟସ୍ତ । ଗୋଆ, ଦିଲ୍ଲୀ, ଆଣ୍ଡାମାନ-ନିକୋବର, ଦାଦ୍ରା-ନଗରହାବେଲି ପ୍ରଭୃତି ହେଉଛି କେନ୍ଦ୍ରଶାସିତ ଅଞ୍ଚଳ । ଏ ସବୁ ଅଞ୍ଚଳର ଶାସନ ପାଇଁ କେନ୍ଦ୍ର ଜଣେ ଜଣେ ଉପ-ରାଜ୍ୟପାଳ ନିଯୁକ୍ତ କରନ୍ତି ଏବଂ ସ୍ଥାନୀୟ ପ୍ରତିନିଧି ସଭା ସାହାଯ୍ୟରେ ସେ ଶାସନ ଚଳାନ୍ତି ।

ଏହି ଶାସନ ପଦ୍ଧତିର ପ୍ରଚଳନ ଫଳରେ ଦେଶରୁ ରାଜାରାଜୁଡ଼ାଙ୍କର ମନୋମୁଖୀ ଶାସନ ଲୋପପାଇଛି । ଏବେ ଶାସନର ଡୋର ସାଧାରଣ ଜନତା ହାତରେ, ଯେଉଁ ଲୋକପ୍ରତିନିଧି ଶାସନକାର୍ଯ୍ୟରେ ଖିଲାପ୍ କରିବେ, ପାଞ୍ଚବର୍ଷ ପରେ ସେମାନଙ୍କୁ ବାହାର କରିଦେବାର କ୍ଷମତା ଜନତାର ରହିଛି । ଗତ ବତିଶବର୍ଷରେ ଏହି ଶାସନ-ବ୍ୟବସ୍ଥା ଦେଶର ଚେହେରା ବଦଳାଇଦେଇଛି । ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ଡାକତାର, କୋଠାବାଡ଼ି, ପୋଲ ନିର୍ମାଣ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ପ୍ରଚୁର ଉନ୍ନତି ହେଲାଣି । ବହିଃଆକ୍ରମଣରୁ ଦେଶର ସାର୍ବଭୌମତ୍ୱକୁ ରକ୍ଷା କରିବା ନିମନ୍ତେ ଭାରତୀୟମାନେ ସର୍ବଦା ପ୍ରସ୍ତୁତ । ଶାସନ-ବ୍ୟବସ୍ଥାର ଦୋଷତ୍ରୁଟି, ଶୋଭାଯାତ୍ରା, ଧର୍ମଘଟ, ପତ୍ରପତ୍ରିକାରେ ତୀବ୍ର ପ୍ରତିବାଦ ଇତ୍ୟାଦି ଦ୍ୱାରା ନିବାରଣ କରିବା ନିମନ୍ତେ ଉଦ୍ୟମ ହେଉଛି । ଶାସକଙ୍କୁ ସ୍ୱେଚ୍ଛାଚାରୀ ହେବା ନିମନ୍ତେ ସାମାନ୍ୟତମ ସୁଯୋଗ ମଧ୍ୟ ଦିଆଯାଉନାହିଁ ।

ଅବଶ୍ୟ ଗଣତନ୍ତ୍ର ଶାସନର କେତେକ ଦୋଷତ୍ରୁଟି ମଧ୍ୟ ରହିଛି । ସ୍ୱାର୍ଥପର ଓ କ୍ଷମତାଲୋଭୀ ଶ୍ରେଣୀର ନେତା ନିଜର ସ୍ୱାର୍ଥ ହାସଲ କରିବା ନିମନ୍ତେ ସରଳ ତଥା ନିରୀହ ଗ୍ରାମବାସୀଙ୍କୁ ଅର୍ଥର ଲୋଭ ଦେଖାଇ ଅଯୋଗ୍ୟ ପ୍ରାର୍ଥୀମାନଙ୍କୁ କେତେକ କ୍ଷେତ୍ରରେ ନିର୍ବାଚିତ କରାଇ ନେଉଛନ୍ତି । ଏମାନେ ନିଜ ସ୍ୱାର୍ଥପାଇଁ ଯେକୌଣସି ନିମ୍ନ ସ୍ତରକୁ ମଧ୍ୟ ଖସିଯିବା ନିମନ୍ତେ ପ୍ରସ୍ତୁତ । ଏହା ବ୍ୟତୀତ ମତ ବ୍ୟକ୍ତ କରିବାର ସ୍ୱାଧୀନତା ପାଇ କେତେକ କ୍ଷେତ୍ରରେ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ଘନଘନ ହରତାଳ, ପ୍ରତିବାଦ ସଭା ଇତ୍ୟାଦିର ବ୍ୟବସ୍ଥା କରି ଶାସନକୁ ଏକପ୍ରକାର ପଙ୍ଗୁ କରିଦିଅନ୍ତି । ଗଣତନ୍ତ୍ର ଶାସନରେ ବହୁ ଦଳ

ହୋଇଥିବାରୁ, ଏମାନେ ସରକାରୀ କର୍ମଚାରୀଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇ, ହରତାଳ ଧର୍ମଘଟର ଡାକରା ଦେଇ, ଶାସନର ପତନ ଘଟାଇବା ନିମନ୍ତେ ସଦା ତତ୍ପର ହୁଅନ୍ତି। ଏମାନଙ୍କ ବିରୁଦ୍ଧରେ ପ୍ରତିବାଦ କରିବାକୁ ଭୟରେ କେହି ସାହସ କରିପାରନ୍ତି ନାହିଁ। ଚୋରି, ଅନାଚାର, ଦୁର୍ନୀତି ଇତ୍ୟାଦି ସମାଜରେ ବ୍ୟାପିଯିବାର ଆଶଙ୍କା ରହିଥାଏ। ଗଣତନ୍ତ୍ର ଶାସନ ବ୍ୟବସ୍ଥାରେ ଦେଶର ସଙ୍କଟସଙ୍କୁଳ ମୁହୂର୍ତ୍ତରେ ଦୃଢ଼ତା ସହ କୌଣସି ନିଷ୍ପତ୍ତି ନେଇ ହୁଏ ନାହିଁ। ଏଭଳି ପରିସ୍ଥିତିରେ ରାଷ୍ଟ୍ରପତି କିମ୍ବା ରାଜ୍ୟପାଳ ସ୍ୱତନ୍ତ୍ର ଅଧ୍ୟାଦେଶ ବଳରେ ପରିସ୍ଥିତିକୁ ଆୟତ୍ତାଧୀନ କରିପାରନ୍ତି।

ଏ ସମସ୍ତ ଦୋଷତ୍ରୁଟି ସତ୍ତ୍ୱେ ଗଣତନ୍ତ୍ର ଶାସନ ବ୍ୟବସ୍ଥା ଯେ ସର୍ବୋତ୍କୃଷ୍ଟ ଏହା ସ୍ୱୀକାର କରିବାକୁ ହେବ। ସାଧାରଣ ଜନତା ଉତ୍ତମ ରୂପରେ ଶିକ୍ଷିତ ହୋଇ ନିଜର ଦାୟିତ୍ୱ ଏବଂ ଅଧିକାରବୋଧ ସମ୍ପର୍କରେ ସଚେତନ ହୋଇଗଲେ, ଏସବୁ ଦୋଷତ୍ରୁଟି ଦୂର ହୋଇଯିବ। ହୁଏତ ଅଦୂର ଭବିଷ୍ୟତରେ ସେ ଦିନ ଆସିବ।

## ବେକାର-ସମସ୍ୟା

ଆମ ଦେଶ ଆଜି ଯେଉଁସବୁ ଗୁରୁତର ସମସ୍ୟାର ସମ୍ମୁଖୀନ ହୋଇଛି, ତନ୍ମଧ୍ୟରୁ ବେକାର ସମସ୍ୟା ଅନ୍ୟତମ। ଦିନକୁ ଦିନ ଏହା ଉତ୍କଟତର ହେଉଥିବା ଦେଶପାଇଁ ଏକ ଅଶୁଭ ସଂକେତ। ଏହି ସମସ୍ୟାଟି ପୁଣି ଶିକ୍ଷିତ ଏବଂ ଅଶିକ୍ଷିତ ଉଭୟ ଗୋଷ୍ଠୀ ମଧ୍ୟରେ ରହିଛି। ସାଧାରଣ ଶିକ୍ଷାପ୍ରାପ୍ତ ବ୍ୟକ୍ତିଙ୍କ କଥା ବା କ'ଣ କହିବା—ବୈଷୟିକ ଶିକ୍ଷାପ୍ରାପ୍ତ ଡାକ୍ତର ଏବଂ ଇଞ୍ଜିନିୟର୍‌ମାନେ ଏବଂ ତାଲିମପ୍ରାପ୍ତ କାରିଗରମାନେ ମଧ୍ୟ ବେକାର ହୋଇ ବୁଲୁଛନ୍ତି। ଗୋଟିଏ ସମୀକ୍ଷାରୁ ଜଣାପଡ଼ିଛି ଯେ ବର୍ତ୍ତମାନ ସମଗ୍ର ଦେଶରେ ପ୍ରାୟ ସାତକୋଟି ଲୋକ ବେକାର ରହିଛନ୍ତି।

କଥା ଅଛି—"ବୁଭୁକ୍ଷିତଂ କିଂ ନ କରୋତି ପାପମ।" ପେଟ ପାଇଁ ଏହି ବେକାର ଯୁବକଯୁବତୀମାନେ ଯେକୌଣସି ପ୍ରକାରର ଦୁର୍ନୀତି ଏବଂ ପାପ କରିବାକୁ ଆଗ୍ରହବାନ୍। ପରିବାରର ଭରଣପୋଷଣ ସମସ୍ୟା ସେମାନଙ୍କୁ 'ପେଟ୍ ପୋଛ ନ ହି ଦେଖ' ନୀତିକୁ ଗ୍ରହଣ କରିନେବା ନିମନ୍ତେ ପ୍ରେରଣା ଯୋଗାଉଛି। ଫଳରେ ଚୋରି, ଡକାୟତି, ପକେଟ କାଟିବା ଏବଂ ଯେକୌଣସି ପ୍ରକାରର ବ୍ୟଭିଚାର କରିବାକୁ ପରିସ୍ଥିତି ସେମାନଙ୍କୁ ବାଧ୍ୟ କରୁଛି। ଜୀବନ-ଯୁଦ୍ଧରେ ପରାଜିତ ହୋଇ କେହି କେହି ଆତ୍ମହତ୍ୟା ମଧ୍ୟ କରି-ବସୁଛନ୍ତି। ଆଜିର ସମ୍ବାଦପତ୍ର ଏହି ସବୁ ଘଟଣାର ବିବରଣୀରେ ପ୍ରାୟ ପୂର୍ଣ୍ଣ ରହୁଛି। ଏ ସବୁ ଦେଖିଲେ ଗଭୀର ଅନୁଶୋଚନା ଆସୁଛି।

ପୂର୍ବରୁ କୁହାଯାଇଛି ଯେ ଜନସଂଖ୍ୟାର ଦ୍ରୁତ ବୃଦ୍ଧି ଏହି ସମସ୍ୟାର ଏକ ପ୍ରଧାନ କାରଣ। ଏହାଛଡ଼ା ଅନ୍ୟ କାରଣ ମଧ୍ୟ ରହିଛି। ପୁଞ୍ଜି ଲଗାଣ ବ୍ୟବସ୍ଥାର ତ୍ରୁଟିପୂର୍ଣ୍ଣ

ପ୍ରୟୋଗ ହେତୁ ସମସ୍ତ ଧନ କେତେକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ହାତରେ ଠୁଳହେଉଛି; ଫଳରେ ଧନୀ ଅଧିକ ଧନୀ ହେଉଛି ଏବଂ ଦରିଦ୍ର କ୍ରମଶଃ ଦାରିଦ୍ର୍ୟର ସୀମାରେଖା ତଳକୁ ଚାଲିଯାଉଛି । ଯନ୍ତ୍ର-ସଭ୍ୟତାର କ୍ରମିକ ପ୍ରସାର ଫଳରେ ବହୁଲୋକଙ୍କର କାର୍ଯ୍ୟ ଅଳ୍ପ କେତେକ ଲୋକଙ୍କଦ୍ୱାରା କମ୍ ସମୟ ମଧ୍ୟରେ ହୋଇଯାଉଛି, ଫଳରେ ବେକାରି ବଢ଼ୁଛି ।

ଆମ ଶିକ୍ଷାନୀତି ମଧ୍ୟ ଏଥିପାଇଁ କମ୍ ଦାୟୀ ନୁହେଁ । ସାମ୍ପ୍ରତିକ ଶିକ୍ଷାନୀତି କେବଳ ମାତ୍ର ଚାକିରି-ମୁଖୀ ହୋଇ ରହିଛି । ସ୍ୱାଧୀନ ଭାବରେ ବ୍ୟବସାୟ-ବାଣିଜ୍ୟଦ୍ୱାରା ପେଟ ପୋଷିବାର କୌଣସି ଶିକ୍ଷା ଦିଆଯାଉନାହିଁ । ଇଂରେଜ ଅମଳରେ ଏକ କିରାଣିଗୋଷ୍ଠୀ ସୃଷ୍ଟି କରିବା ନିମନ୍ତେ ଏହି ପ୍ରଣାଳୀ ଅନୁସୃତ ହେଉଥିଲା । ଆଜି ସ୍ୱାଧୀନତା ଲାଭର ପଚିଶ ବର୍ଷ ପରେ ମଧ୍ୟ ସେଥିରେ କୌଣସି ପରିବର୍ତ୍ତନ ହୋଇନାହିଁ । ଚାକିରି ସଂଖ୍ୟା ସୀମିତ । ସମସ୍ତଙ୍କୁ କଦାପି ତାହା ଯୋଗାଇ ଦିଆଯାଇ ପାରିବ ନାହିଁ । ପରିଣାମରେ ବେକାରି ବଢ଼ୁଛି ।

ଏହା ବ୍ୟତୀତ କେତେକ ସ୍ଥଳରେ ପ୍ରିୟାପ୍ରୀତି-ତୋଷଣ ନୀତି, ଆର୍ଥିକ ପ୍ରଲୋଭନଦ୍ୱାରା ଅଯୋଗ୍ୟ ଲୋକ ମଧ୍ୟ ଯୋଗ୍ୟ ଲୋକଙ୍କୁ ପଛରେ ପକାଇ ଚାକିରି ପାଇଯାଉଛନ୍ତି । ଯୋଗ୍ୟତା ଥାଇ ମଧ୍ୟ ଲୋକେ ଚାକିରିପାଇଁ ଉପଯୁକ୍ତ ବିବେଚିତ ହୋଇପାରୁନାହାନ୍ତି । ଏ ଦେଶରେ ବର୍ତ୍ତମାନ ଏଭଳି ଅବସ୍ଥା ଯେ, ଘୋଡ଼ାର କାମକୁ ହାତୀଦ୍ୱାରା କରାଯାଉଛି । ଫଳରେ ଘୋଡ଼ା କାମ ନ ପାଇ ବୁଲୁଛି ଏବଂ ହାତୀ ମଧ୍ୟ ତାକୁ ଦିଆଯାଇଥିବା କାର୍ଯ୍ୟଟି ସୁରୁଖୁରୁରେ ତୁଲାଇ ପାରୁନାହିଁ । ଫଳରେ ଅସନ୍ତୋଷ, ଅରାଜକତା ପ୍ରଭୃତି କ୍ରମଶଃ ବୃଦ୍ଧି ପାଉଛି ।

ଏହି ସମସ୍ୟା ଦୂର କରିବା ନିମନ୍ତେ କେତେକ ଦୃଢ଼ ପଦକ୍ଷେପ ନିଆଯାଇପାରେ । ପ୍ରଥମେ ଆମର ଜନସଂଖ୍ୟା ବୃଦ୍ଧିକୁ କୌଣସିମତେ ରୋକାଯାଇ ନ ପାରିଲେ, ଏ ଦିଗରେ ଯେତେ କାର୍ଯ୍ୟ କରାଯିବ ସମସ୍ତ ପଣ୍ଡ ହେବ । ଜାତି ଧର୍ମ-ବର୍ଣ୍ଣ-ନିର୍ବିଶେଷରେ ଦେଶର ସମସ୍ତ ନାଗରିକ ପରିବାର-ନିୟନ୍ତ୍ରଣ ବ୍ୟବସ୍ଥାକୁ କଡ଼ାକଡ଼ି ପାଳନ ନକଲେ ବିକାଶର ସମସ୍ତ ଆୟୋଜନ ବ୍ୟର୍ଥ ହୋଇଯିବ ।

ପୁଞ୍ଜି ଲଗାଣ ବ୍ୟବସ୍ଥା ଶ୍ରମଭିତ୍ତିକ ହୋଇପାରିଲେ କିଛିଟା ସୁଫଳ ନିଶ୍ଚୟ ମିଳିବ । ଯନ୍ତ୍ରଶିଳ୍ପର ପ୍ରସାର ବଦଳରେ କୁଟୀରଶିଳ୍ପକୁ ପ୍ରୋତ୍ସାହନ ଦିଆଗଲେ ନିଯୁକ୍ତିର ଅନେକ ସୁଯୋଗ ଆସିଯିବ । ଜାତିର ପିତା ମହାତ୍ମା ଗାନ୍ଧୀ ଏହାହିଁ ଚାହିଁଥିଲେ । କୃଷିକାମରେ ଯଥାସମ୍ଭବ କମ୍ ଯନ୍ତ୍ରପାତିର ବ୍ୟବହାର କଲେ ସେଥିରେ ଅଧିକ ଶ୍ରମିକ ନିଯୁକ୍ତିର ସୁବିଧା ପାଇବେ । ଯେଉଁମାନଙ୍କ ହାତରେ ଅଧିକ କୃଷିଜମି ଠୁଳ ହୋଇ ରହିଛି, ସେମାନଙ୍କ ହାତରୁ ତାହା ଆଣି ଭୂମିହୀନମାନଙ୍କ ମଧ୍ୟରେ ତାକୁ ବାଣ୍ଟିଦେବାକୁ ପଡ଼ିବ । ଏହିଭଳି ଭାବରେ ଶାରୀରିକ-ଶ୍ରମକୁ ଗୁରୁତ୍ୱ ଦିଆଗଲେ ବେକାରି ସମସ୍ୟାର ଏକ ସନ୍ତୋଷଜନକ ସମାଧାନ ହୋଇପାରେ ।

ଶିକ୍ଷା-ଜଗତରେ ଶାରୀରିକ-ଶ୍ରମକୁ ମର୍ଯ୍ୟାଦା ଦେବା ନିମନ୍ତେ ଇତିମଧ୍ୟରେ କିଛି କିଛି ପଦକ୍ଷେପ ନିଆଯାଇଛି; ମାତ୍ର ତାହା ପର୍ଯ୍ୟାପ୍ତ ନୁହେଁ । ଶିକ୍ଷା-ନୀତି ଏଭଳି ହେବା ଆବଶ୍ୟକ, ଯାହା ଫଳରେ କି ବିଦ୍ୟାଳୟ ତ୍ୟାଗ ପରେ କେତେ ଛାତ୍ର ସ୍ୱାଧୀନ ଧନ୍ଦା ମାଧ୍ୟମରେ ନିଜକୁ ପ୍ରତିପୋଷଣ କରିବା ନିମନ୍ତେ ପ୍ରସ୍ତୁତ ହୋଇପାରିବେ । ଏହିଭଳି ଯୁବକମାନଙ୍କୁ ବ୍ୟବସାୟରେ ପ୍ରତିଷ୍ଠିତ ହେବା ନିମନ୍ତେ ଦେଶର ବ୍ୟାଙ୍କଗୁଡ଼ିକ ଋଣ ଯୋଗାଇଦେଇ ପାରିବେ । ସରକାର ଯଦି ସମବାୟ ସମିତି ସାହାଯ୍ୟରେ ଏମାନଙ୍କର ଉତ୍ପାଦିତ ଦ୍ରବ୍ୟଗୁଡ଼ିକ କ୍ରୟ କରିନେବେ, ତାହାହେଲେ ଅଧିକ ଭଲ ହେବ ।

ପ୍ରିୟାପ୍ରୀତିତୋଷଣ, ଲାଞ୍ଚ ଇତ୍ୟାଦି ଦୂର କରି ଶାସନକ୍ଷେତ୍ରରେ ନିର୍ମଳତା ପ୍ରବର୍ତ୍ତନ କରିବାକୁ ହେଲେ, ପ୍ରଥମେ ଯଥେଷ୍ଟ ସଂଖ୍ୟକ ସାଧୁ ଚରିତ୍ର ଶାସକ ନିର୍ବାଚନ କରିବାକୁ ପଡ଼ିବ । ଏଥିନିମନ୍ତେ ଆମ ଦେଶର ପାରମ୍ପରିକ ଆଧ୍ୟାତ୍ମିକ ମୂଲ୍ୟବୋଧ ସହିତ ପ୍ରତ୍ୟେକ ନାଗରିକଙ୍କୁ ପରିଚିତ ହେବାକୁ ପଡ଼ିବ । କାରଣ ଦେଶରେ ଥରେ ସତ୍ କର୍ମିଷ୍ଠମାନେ ଶାସକ ରୂପରେ ନିଯୁକ୍ତି ପାଇଲେ ଯୋଗ୍ୟ ବ୍ୟକ୍ତି ତା'ର ଉପଯୁକ୍ତ ମୂଲ୍ୟ ପାଇବା ନିମନ୍ତେ ସୁଯୋଗ ପାଇବ ଏବଂ ଅଯୋଗ୍ୟମାନେ ଅପସରିଯିବେ । ଏହାଦ୍ୱାରା ଜନ-ଅସନ୍ତୋଷ ହ୍ରାସ ପାଇବ ।

ଆଜି ବେକାର ସମସ୍ୟା ଦେଶର ସମସ୍ତ ପ୍ରଗତିର ବାଧକ ସ୍ୱରୂପ ହୋଇଛି । ନୈତିକ ଅଧୋଗତି, ସାମାଜିକ ଅବ୍ୟବସ୍ଥା, ଉତ୍କଟ ଦାରିଦ୍ର୍ୟଜନିତ ଗ୍ଲାନିମନ୍ୟତା ପ୍ରଭୃତି ଏହି କାରଣରୁ ହିଁ ଦ୍ରୁତ ପ୍ରସାରିତ ହେଉଛି । ଯେତେ ଶୀଘ୍ର ଏହାକୁ ଦୂର କରାଯାଇପାରିବ, ଦେଶପାଇଁ ଏହା ସେତେ ଶୁଭପ୍ରଦ ହେବ । ଶିକ୍ଷା-ସମ୍ପର୍କୀୟ ଯେଉଁ ଅହଂବୋଧ ଆମର ଶିକ୍ଷିତ ଜନତା ମଧ୍ୟରେ ରହିଛି, ତାହାକୁ ଦୂର କରି ଶାରୀରିକ ଶ୍ରମର ମର୍ଯ୍ୟାଦାକୁ ପ୍ରତିଷ୍ଠା କରିପାରିଲେହିଁ ଏହି ସମସ୍ୟାର ସନ୍ତୋଷଜନକ ସମାଧାନ ହୋଇପାରିବ । ସମଗ୍ର ବିଶ୍ୱରେ ଏହି ସମସ୍ୟା ଆଜି ଭୟଙ୍କର ରୂପ ଧାରଣ କରି ଆତ୍ମପ୍ରକାଶ କରିଛି । ସମୟୋଚିତ ଉପାୟ ଅବଲମ୍ବନ କରି ଏହାର ସମାଧାନ ନକଲେ, ଏହା ସମଗ୍ର ମାନବଜାତିକୁ ଧ୍ୱଂସ ଆଡ଼କୁ ଠେଲିନେବ ।

## ପରିବାର-ନିୟନ୍ତ୍ରଣ

ଗୋଟିଏ ସମୟରେ ଜୀବନ ଆଜିକାଲି ପରି ଏତେ ଆର୍ଥନୀତିକ ସମସ୍ୟାସଙ୍କୁଳ ନଥିଲା । ମଣିଷର ପ୍ରୟୋଜନ ଥିଲା ସାମାନ୍ୟ । ପେଟପୂରାଇ ଗଣ୍ଡେ ଖାଇବାକୁ, ମୋଟା-ସୋଟା କରି ଖଣ୍ଡେ ପିନ୍ଧିବାକୁ ସହଜରେ ମିଳିଯାଉଥିଲା । ପ୍ରଚୁର ଅନାବାଦୀ ଜମି ଚାରିଆଡ଼େ ସେମିତି ପଡ଼ିରହିଥିଲା । ଯେଉଁଥିରୁ ଅଳ୍ପ ପରିଶ୍ରମରେ ଆବଶ୍ୟକ ଅନୁପାତରେ ଫସଲ ମିଳିଯାଉଥିଲା ।

ଦେଶରେ ମଣିଷଙ୍କ ସଂଖ୍ୟା କମ ଥିଲା । ତେଣୁ ସେ ସମୟରେ ବଡ ପରିବାରକୁ ପସନ୍ଦ କରାଯାଉଥିଲା । ନାରୀମାନଙ୍କୁ 'ଶତପୁତ୍ର'ର ଜନନୀ ହେବା ନିମନ୍ତେ ଆଶୀର୍ବାଦ ଦିଆଯାଉଥିଲା ।

ସେହି କାଳରେ ରୋଗ ଯନ୍ତ୍ରଣାର ଦୁର୍ଯୋଗକୁ ମଣିଷ ନିଜର ଭବିତବ୍ୟ ବୋଲି ଗ୍ରହଣ କରିନେଉଥିଲା । ମହାମାରୀ, ଦୁର୍ଭିକ୍ଷ, ଝଡବତାସ ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟରେ ଶହ ଶହ ଲୋକ ମୃତ୍ୟୁମୁଖରେ ପଡ଼ୁଥିଲେ । ରୋଗକୁ ଔଷଧ ନଥିଲା । ପ୍ରାକୃତିକ ବିପର୍ଯ୍ୟୟର କିଛି ପ୍ରତିକାର ମଧ୍ୟ ନଥିଲା । ଏହାଛଡ଼ା ଥିଲା ମନୁଷ୍ୟସୃଷ୍ଟ ଯୁଦ୍ଧ । ମଣିଷର କ୍ଷମତାଲିପ୍ସା ନିକଟରେ କେତେ ଯେ ନିରପରାଧ ଅକାଳରେ ବଳି ରୂପେ ଅର୍ପିତ ହେଉଥିଲେ ତାହାର କଳନା ନଥିଲା । ଫଳରେ ଜନସଂଖ୍ୟା ମଣିଷ ନିମନ୍ତେ କୌଣସି ସମସ୍ୟା ହୋଇନଥିଲା ।

ଏବେ କିନ୍ତୁ ଅବସ୍ଥା ସମ୍ପୂର୍ଣ୍ଣ ରୂପେ ବଦଳିଯାଇଛି । ବିଜ୍ଞାନର ଅଗ୍ରଗତି ଫଳରେ ମଣିଷ ସମସ୍ତ ପ୍ରକାର ପ୍ରାକୃତିକ ଏବଂ କୃତ୍ରିମ ବିପଦ ମଧ୍ୟରୁ ଆତ୍ମରକ୍ଷା କରିବା ନିମନ୍ତେ ସର୍ବଦା ପ୍ରସ୍ତୁତ । ଫଳରେ ଜନସଂଖ୍ୟାର ଏପରି ଦ୍ରୁତ ଅଭିବୃଦ୍ଧି ଘଟୁଛି ଯେ, ସୁସ୍ଥ ଭାବରେ ବଞ୍ଚି-ରହିବା ପ୍ରାୟ ଅସମ୍ଭବ ହୋଇପଡ଼ିଲାଣି । ପ୍ରତ୍ୟେକ କ୍ଷେତ୍ରରେ ଦରଦାମ ବୃଦ୍ଧି ଜୀବନକୁ ଅତ୍ୟନ୍ତ ଜଟିଳ କରିପକାଇଲାଣି । ମଣିଷ ଜୀବନ ଆଜି ଅଲୋଡ଼ା ଅଖୋଜା ହୋଇ-ପଡ଼ିଲାଣି । ଅନ୍ନବସ୍ତ୍ର ମଣିଷ-ଶିଶୁର ଦୁରବସ୍ଥା ଦେଖିଲେ ଅତ୍ୟନ୍ତ ଅସହ୍ୟ ମନେହୁଏ । ଦରିଦ୍ର ପରିବାରରେ ସନ୍ତାନାଧିକ୍ୟ ଅନ୍ନ, ବସ୍ତ୍ର, ଶିକ୍ଷା, ବାସଗୃହ, ଚିକିତ୍ସା ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଅଚଳାବସ୍ଥା ସୃଷ୍ଟି କରୁଛି । ବହୁକୁଟୁମ୍ବୀ ପରିବାରର ଦୁଃଖ-ଦୁର୍ଦ୍ଦଶା ସମ୍ପର୍କରେ ଆମର ପ୍ରାଚୀନ ଶାସ୍ତ୍ର ପୁରାଣରେ ବିସ୍ତୃତ ବର୍ଣ୍ଣନା ରହିଛି ।

ଏହି ଦୁଃଖଦ ସ୍ଥିତି କେବଳ ପାରିବାରିକ ଜୀବନକୁ ଯେ ଅଶାନ୍ତ କରୁଛି ତାହା ନୁହେଁ, ସାମାଜିକ ଜୀବନର ନାନା ସମସ୍ୟା ଏଥିରୁ ସୃଷ୍ଟି ହେଉଛି । ଆମର ଶାସକକୁଳ ଏହି ସମସ୍ତ ସମସ୍ୟାର ସମାଧାନ ନିମନ୍ତେ ପୂର୍ଣ୍ଣ ପ୍ରାଣରେ ଲାଗିପଡ଼ିଥିଲେହେଁ ଏଥିରୁ ମୁକ୍ତି ମିଳୁନାହିଁ; ଅନ୍ୟ ବହୁ ସମସ୍ୟା ପ୍ରତି ମଧ୍ୟ ଦୃଷ୍ଟି ଦିଆଯାଇପାରୁନାହିଁ । ବାସ୍ତବିକ ଅନ୍ନ, ବସ୍ତ୍ର ଏବଂ ବାସଗୃହର ସମସ୍ୟା ବର୍ତ୍ତମାନ ଯେପରି ଭୟଙ୍କର ରୂପ ଧାରଣ କରିଛି, ଇତିପୂର୍ବରୁ ତାହା କେବେ ଘଟିନାହିଁ ।

ପରିବାରର ସୁଖରେହିଁ ସମାଜର ଉନ୍ନତି । ଜନସଂଖ୍ୟାର ଦୃଢ଼ ନିୟନ୍ତ୍ରଣରେହିଁ ପରିବାରର ସୁଖ । ତେଣୁ ଏ ସମସ୍ତ ସମସ୍ୟା ସମାଧାନର ମୁଖ୍ୟତମ ଉପାୟ ହେଉଛି ପରିବାର-ନିୟନ୍ତ୍ରଣ । ପ୍ରାଚୀନ ଭାରତରେ ଶାସ୍ତ୍ରକାର ମନୁଙ୍କ ନିର୍ଦ୍ଦେଶିତ ଯେଉଁ ବର୍ଣ୍ଣାଶ୍ରମ ଧର୍ମର ପାଳନ ବ୍ୟବସ୍ଥା ଥିଲା, ତାହା ପ୍ରକାରାନ୍ତରେ ପରିବାରକୁ ଯୋଜନାବଦ୍ଧ କରି ରଖିବାରେହିଁ ସହାୟକ ହେଉଥିଲା । ଜୀବନର ପ୍ରଥମ ପଚିଶ ବର୍ଷ ବ୍ରହ୍ମଚର୍ଯ୍ୟ ମଧ୍ୟରେ କଟିଯାଉଥିଲା । ମୋକ୍ଷଲାଭର ଆଦର୍ଶକୁ ମଣିଷ ଆଗରେ ଏଭଳି ଝୁଲାଇ ରଖାଯାଉଥିଲା ଯେ, ତଦ୍ଦ୍ୱାରା କେତେକେ ଗୃହସ୍ଥାଶ୍ରମରେ ପ୍ରବେଶ କରୁନଥିଲେ । ଯେଉଁମାନେ ବା ଗୃହସ୍ଥ

ହେଉଥିଲେ ପଚିଶ ବର୍ଷ ପରେ ସେମାନଙ୍କୁ ପରିବାର ଗୃହ ବାନପ୍ରସ୍ଥ ଅବଲମ୍ବନ କରିବାକୁ ପଡ଼ୁଥିଲା । ପରିଣାମରେ ଜନସଂଖ୍ୟା ନିୟନ୍ତ୍ରିତ ହୋଇ ରହୁଥିଲା ।

ମାତ୍ର ଆଜିକାଲି ପରିସ୍ଥିତି ସମ୍ପୂର୍ଣ୍ଣ ବଦଳିଯାଇଛି । ସଂଯମ ବଦଳରେ ଉଚ୍ଛୃଙ୍ଖଳ ଭୋଗ ପ୍ରବୃତ୍ତି ସାମାଜିକ ଜୀବନରେ ସଙ୍କଟ ଦେଖାଦେଇଛି । କୌଣସି କୌଣସି ଗୋଷ୍ଠୀ ନିଜର ସଂଖ୍ୟାକୁ ବଢ଼ାଇବା ଲାଗି ବହୁବିବାହ ଏବଂ ସ୍ୱେଚ୍ଛାଚାର ଇତ୍ୟାଦିର ଆଶ୍ରୟ ଗ୍ରହଣ କରୁଛନ୍ତି । ରାଜନୈତିକ ଅଧିକାର ପ୍ରାପ୍ତି ନିମନ୍ତେହିଁ ସେମାନଙ୍କର ଏହି ଧରଣର ପ୍ରଚେଷ୍ଟା । ଯେଉଁ ଗୋଷ୍ଠୀର ଜନସଂଖ୍ୟା ଯେତେ ଅଧିକ, ଗଣତନ୍ତ୍ର ଶାସନରେ ତାହାର ସେତେ ଭୋଟ୍ ଏବଂ କ୍ଷମତା ମଧ୍ୟ ଅଧିକ । ବ୍ରହ୍ମଚର୍ଯ୍ୟ ପାଳନ ବ୍ୟବସ୍ଥା ଆଜି ନିତାନ୍ତ ହାସ୍ୟାସ୍ପଦ ମନେହେଉଛି; ପରିଣାମରେ ପରିବାର ବଢ଼ିଚାଲିଛି । ତାହାର ପରିଚାଳନା ନିମନ୍ତେ ଗୃହକର୍ତ୍ତାଙ୍କୁ ନ୍ୟାୟ-ଅନ୍ୟାୟ, ପାପପୁଣ୍ୟ ମଧ୍ୟରେ ଥିବା ପ୍ରଭେଦକୁ ଭୁଲିଯିବାକୁ ପଡ଼ୁଛି । ଶ୍ରେଷ୍ଠ ପରିବାରହିଁ ଏହି ଦୃଷ୍ଟିରୁ ମାନବସମାଜକୁ ରକ୍ଷାକରିପାରେ । ପରିବାରକୁ କ୍ଷୁଦ୍ର କରି ରଖିବା ନିମନ୍ତେ ପରିବାର-ନିୟନ୍ତ୍ରଣ ପ୍ରୟୋଜନ ।

ଭାରତବର୍ଷରେ ଗତ କେତେ ବର୍ଷଧରି ଏହି କାର୍ଯ୍ୟକ୍ରମର ପ୍ରସାର ନିମନ୍ତେ ବ୍ୟବସ୍ଥା କରାଯାଇଥିଲେ ମଧ୍ୟ ଜନସାଧାରଣଙ୍କର ଆନ୍ତରିକ ସହଯୋଗ ଅଭାବ ଯୋଗୁ ଏଥିରୁ ବିଶେଷ କିଛି ସୁଫଳ ମିଳିନାହିଁ । ରାଜନୈତିକ କାରଣରୁ କେତେବେଳେ ଏହାର ଗତି ଦ୍ରୁତ ହୋଇଛି ତ ଆଉ କେତେବେଳେ ଅତ୍ୟନ୍ତ ଶିଥିଳ ।

ସମ୍ପ୍ରତି ଏହାକୁ ପରିବାର କଲ୍ୟାଣ ବୋଲି କୁହାଯାଉଛି । ଏହାର ଉଦ୍ଦେଶ୍ୟ ହେଉଛି ସାଧାରଣ ଜନତାକୁ ବୁଝାଇସୁଝାଇ ଶ୍ରେଷ୍ଠ ପରିବାର ଗଢ଼ିବା ନିମନ୍ତେ ପ୍ରେରଣା ଯୋଗାଇବା । ଯେଉଁମାନେ ନିଜକୁ ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ କରୁଛନ୍ତି, ସେମାନଙ୍କୁ ଆର୍ଥିକ ସୁବିଧା ମଧ୍ୟ ଦିଆଯାଉଛି । କେବଳ ଏଇଥିପାଇଁ ବିବାହର ବୟସ-ସୀମାକୁ ବଢାଇ-ଦିଆଯାଇ ସ୍ତ୍ରୀମାନଙ୍କ ପାଇଁ ଏହାକୁ ଅଠର ଏବଂ ପୁରୁଷମାନଙ୍କ ପାଇଁ ଏକୋଇଶ ବର୍ଷ ରୂପେ ଧାର୍ଯ୍ୟ କରାଯାଇଛି । ଜନସଂଖ୍ୟା ବୃଦ୍ଧିକୁ ରୋକିବାକୁ ହେଲେ ଏହି ବୟସ-ସୀମାକୁ ଆହୁରି ବଢ଼ାଇ ଦିଆଯିବା ଉଚିତ ଏବଂ ସମସ୍ତେ ଯେପରି ଏହାକୁ ପାଳନ କରନ୍ତି, ସେଥିପ୍ରତି ମଧ୍ୟ ଦୃଷ୍ଟି ଦିଆଯିବା ଆବଶ୍ୟକ ।

ତରଳତା ଉତ୍ତେଜନା ବଢ଼ାଏ ଏବଂ ଏଥିରୁହିଁ ଭୋଗ ପିପାସାର ସୃଷ୍ଟି । ଏହାକୁ ଦୂର କରିବାକୁ ହେଲେ ଆମକୁ ସନାତନ ଭାରତୀୟ ସଂସ୍କୃତିର ଶରଣାପନ୍ନ ହେବାକୁ ପଡ଼ିବ ଏବଂ ସାମାଜିକ ଜୀବନରୁ ନଗ୍ନତା, ଅଶ୍ଳୀଳତା ଇତ୍ୟାଦିକୁ ଦୂର କରିବାକୁ ପଡ଼ିବ । କେବଳ ମାତ୍ର ଭୋଟଦାତା ସୃଷ୍ଟିକରି କ୍ଷମତାକୁ ହାତରେ ରଖିବାକୁ ଯେଉଁମାନେ ନିର୍ବିଚାର ଭାବରେ ସନ୍ତାନ ସୃଷ୍ଟିକରି ଚାଲିଛନ୍ତି, ସେମାନେ ଦେଶର ଶତ୍ରୁ ଏବଂ ସେମାନଙ୍କୁ ଏଥିରୁ ବିରତ କରିବାକୁ ପଡ଼ିବ; କିମ୍ବା ଭୋଟ ନିୟମରେ କିଛି ପରିବର୍ତ୍ତନ ମଧ୍ୟ କରାଯାଇପାରେ । ଏଥିପାଇଁ ସର୍ବନିମ୍ନ ଶିକ୍ଷାଗତ ଯୋଗ୍ୟତା ନିର୍ଦ୍ଧାରଣ କରାଯିବା ଆବଶ୍ୟକ । ଫଳରେ ଜନ୍ମ

ସହିତ ଶିକ୍ଷା-ବ୍ୟବସ୍ଥା ବାଧ୍ୟତାମୂଳକ ହୋଇଯିବ । ଯେଉଁମାନେ ଦୁଇଟି ସନ୍ତାନରୁ ଅଧିକ ସୃଷ୍ଟି କରିବେ, ସେମାନଙ୍କ ଉପରେ କର ଧାର୍ଯ୍ୟ କରାଯାଇପାରେ ।

ରାଷ୍ଟ୍ରରୂପରେ ଭାରତ ହେଉଛି ଏକ ଏବଂ ଅଭିନ୍ନ । ଏହାର ପ୍ରତ୍ୟେକ ନାଗରିକ, ସେ ଯେଉଁ ଜାତି କମ୍ବା ଗୋଷ୍ଠୀର ଅନ୍ତର୍ଭୁକ୍ତ ନା କାହିଁକି, ସେମାନେ ପ୍ରତ୍ୟେକେ ଜଣେ ଜଣେ ଭାରତୀୟ । ତେଣୁ ବିବାହ ଇତ୍ୟାଦି ବ୍ୟାପାରରେ ପ୍ରତ୍ୟେକଙ୍କ ପାଇଁ ସମାନ ଆଇନ ହେବା ଉଚିତ । ଏକାଧିକ ବିବାହ ସମ୍ପୂର୍ଣ୍ଣ ନିଷିଦ୍ଧ ହେବା ଆବଶ୍ୟକ । ଏ ସମ୍ପର୍କୀୟ ଧର୍ମୀୟ ବ୍ୟବସ୍ଥାର କୌଣସି ମୂଲ୍ୟ ନାହିଁ; କାରଣ ଯାହା ଜାତିକାରକ ତାହା ପ୍ରତ୍ୟେକଙ୍କ ପାଇଁ କ୍ଷତିକାରକ ।

ପରିବାର-ନିୟନ୍ତ୍ରଣ ନିମନ୍ତେ ଯେଉଁସବୁ ବିଜ୍ଞାନସମ୍ମତ ବ୍ୟବସ୍ଥାମାନ ରହିଛି, ତାହାକୁ ବ୍ୟାପକ ଭାବରେ ଗ୍ରହଣ କରାଯିବା ଆବଶ୍ୟକ; କାରଣ ଏହା ବ୍ୟକ୍ତି ପକ୍ଷରେ ତେଣୁ ଦେଶ ନିମନ୍ତେ ଅତ୍ୟନ୍ତ ଶୁଭଙ୍କର । ଏହି ବ୍ୟବସ୍ଥା ଅବଲମ୍ବନ କରାଗଲେହିଁ ଦେଶର ପ୍ରତ୍ୟେକ ନାଗରିକ ଜୀବନର ନ୍ୟୂନତମ ଆବଶ୍ୟକତା ଅର୍ଥାତ୍ ଖାଦ୍ୟ, ବାସଗୃହ, ଶିକ୍ଷା ଏବଂ ଚିକିତ୍ସା ଇତ୍ୟାଦିର ସୁଯୋଗ ଲାଭକରିପାରିବେ ।

## ନାରୀଶିକ୍ଷା

ପୁରୁଷ ଏବଂ ନାରୀ ଏ ଉଭୟ ହେଉଛନ୍ତି ଗୋଟିଏ ମୁଦ୍ରାର ଦୁଇପାର୍ଶ୍ୱ ଭଳି । ଏ ଉଭୟଙ୍କୁ ନେଇ ହିଁ ଜୀବନର ପୂର୍ଣ୍ଣତା । ଏମାନଙ୍କ ମଧ୍ୟରୁ ସାମାଜିକ ଜୀବନରେ ପୁଣି ନାରୀର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଜନନୀ ରୂପରେ ସେ ସ୍ନେହ ଦିଏ, ଭଗିନୀ ରୂପରେ ସେ ସୌଖ୍ୟ ଦିଏ ଓ ଭାର୍ଯ୍ୟା ରୂପରେ ସେହି ପୁଣି ପ୍ରେମ ଦେଇ ପୁରୁଷର ସମସ୍ତ ଯାତନାକୁ ଭୁଲାଇଦିଏ । ଯୁଗେ ଯୁଗେ ଏହି ନାରୀ ଭିନ୍ନ ଭିନ୍ନ ରୂପରେ ଭିନ୍ନ ଭିନ୍ନ ମହାପୁରୁଷଙ୍କ-ଦ୍ୱାରା ଚର୍ଚ୍ଚିତ ହୋଇଆସିଛି । ସନ୍ଥକବି ତୁଳସୀ ଦାସ ଏହାକୁ 'ଧନ୍‌ମେ ମୋହିନୀ ଘରୁ ମେ ବାଘିନୀ' ରୂପରେ ଲେଖିଛନ୍ତି । ଆଉ ସେକ୍‌ସପିୟର ତାହାକୁ 'Fraility' ବା ବିଶ୍ୱାସଘାତକତାର ମୂର୍ତ୍ତିମତୀ ବିଗ୍ରହର ଅପବାଦ ଦେଇଛନ୍ତି । ମନୁ ତ ନାରୀର ସ୍ୱାଧୀନତା ସଙ୍କୁଚିତ କରିଦେଇ ସ୍ପଷ୍ଟ ଘୋଷଣା କରିଛନ୍ତି :—

> "ପିତା ରକ୍ଷତି କୌମାରେ ଭର୍ତ୍ତା ରକ୍ଷତି ଯୌବନେ,
> ପୁତ୍ର ରକ୍ଷତି ବାର୍ଦ୍ଧକ୍ୟେ ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି ।"

କବିମାନେ ପୁଣି ଏହାକୁ ଏକ ଲତା ସହିତ ତୁଳନା କରି ଆଶ୍ରୟ ବିନା ଏହାର ଗତି ନାହିଁ ବୋଲି କହିଛନ୍ତି । ଏହିସବୁ ଉକ୍ତିରୁ ନାରୀର ଅସହାୟ ପରନିର୍ଭରଶୀଳ ରୂପଟି ଫୁଟିଉଠିଥିଲେହେଁ, ପ୍ରକୃତିରୂପିଣୀ ନାରୀ ହେଉଛି ଶକ୍ତିର ଉତ୍ସ । ଦୁର୍ଗା ରୂପରେ ସେ

ଦାନବ ସଂହାର କରେ । ଲକ୍ଷ୍ମୀବାଈ, ଜୋଆନ୍, ସ୍ୱନବବ ଅଉ ଶୁକଦେଈ ରୂପରେ ସେ ଦେଶର ସ୍ୱାଧୀନତା ପଥର ସମସ୍ତ ଖାଲକୁ ନିଜର ଅସ୍ଥିମାଂସରେ ଭରିଦିଏ । ତେଣୁ ଶାସ୍ତ୍ରକାରମାନେ ତାକୁ ଯେତେ 'ନରକର ଦ୍ୱାର' ବୋଲି ଘୋଷଣା କଲେ ମଧ୍ୟ ତାହାର କଲ୍ୟାଣମୟୀ ମାତୃମୂର୍ତ୍ତିକୁ ଭୁଲିହୁଏ ନାହିଁ ।

ଆର୍ଯ୍ୟ-ସଂସ୍କୃତିରେ କିନ୍ତୁ ନାରୀର ମହିମାମୟୀ ରୂପଟିର ଅଭାବ ଅନ୍ତବ ନାହିଁ । ସାମାଜିକ ଜୀବନରେ ତାହାର ମର୍ଯ୍ୟାଦାବନ୍ତ ସ୍ଥାନ ବିଷୟରେ ସ୍ମରଣ କରି କୁହାଯାଇଛି 'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ'—ଯେଉଁ ସମାଜରେ ନାରୀକୁ ସମ୍ମାନ ଦିଆଯାଏ, ତାହା ଦେବତାମାନଙ୍କର ମଧ୍ୟ ପ୍ରିୟ । ମାତୃରୂପିଣୀ ନାରୀ ସମ୍ପର୍କରେ ଉପନିଷଦ୍‌ରେ କୁହାଯାଇଛି, 'ମାତୃମାନ୍ ପିତୃମାନ୍ ଆଚାର୍ଯ୍ୟବାନ୍ ପୁରୁଷୋ ବେଦ', ଅର୍ଥାତ୍ ଯେଉଁ ମାତା ଶିକ୍ଷିତା, ବୁଦ୍ଧିମତୀ ତଥା ବିଦୁଷୀ ହୋଇଥାଏ, ଯେଉଁ ପିତା ବିଦ୍ୱାନ ଏବଂ ପୁଣ୍ୟବାନ୍ ତଥା ଯେଉଁ ଆଚାର୍ଯ୍ୟ ସର୍ବାନ୍ତଃକରଣରେ ଯୋଗ୍ୟ, କେବଳ ସେ ହିଁ ଶିଶୁକୁ ଜ୍ଞାନବାନ୍ କରିପାରନ୍ତି ।

ପାରିବାରିକ ଦାୟିତ୍ୱ ପାଳନ ନିମନ୍ତେ ତଥା ନିଜ ଅଧିକାର ସମ୍ପର୍କରେ ସଚେତନ ହେବା ନିମନ୍ତେ ନାରୀକୁ ଶିକ୍ଷିତା ହେବାକୁ ପଡ଼ିବ । ସୁସ୍ଥୁରୂପେ ସନ୍ତାନ ପାଳନ କରିବା, ସ୍ୱାସ୍ଥ୍ୟ-ବିଧି ସମ୍ପର୍କରେ ପୂର୍ଣ୍ଣ ସଚେତନ ରହିବା ତଥା ଉତ୍ତମ ରୂପେ ସଂସାର କର୍ମ ତୁଲାଇବା ଉପଯୁକ୍ତ ଜନନୀ ତଥା ଜାୟାର କର୍ତ୍ତବ୍ୟ । ସୁଶିକ୍ଷା ତାକୁ ଏ ଦିଗରେ ସହାୟତା କରିଥାଏ । ଶିକ୍ଷାହୀନା ନାରୀ ଗୃହସଂସାରରେ ତଥା ସାମାଜିକ କ୍ଷେତ୍ରରେ ବଡ଼ ଅବହେଳିତ ଜୀବନ ଯାପନ କରେ । ଉତ୍ତମ ଶିକ୍ଷା ନାରୀକୁ ଆତ୍ମସଚେତନ ତଥା ଆତ୍ମବିଶ୍ୱାସର ଅଧିକାରିଣୀ କରାଇଥାଏ । ସୁଶିକ୍ଷିତା ମାତା ହିଁ କେବଳ ଉପଯୁକ୍ତ ଶିକ୍ଷା-ବ୍ୟବସ୍ଥାଦ୍ୱାରା ଆପଣାର କନ୍ୟାସନ୍ତାନଙ୍କୁ ଭାବି ଜୀବନ ନିମନ୍ତେ ଉପଯୁକ୍ତ ରୂପରେ ଗଢ଼ିପାରେ । ଏହା ବ୍ୟତୀତ ବର୍ତ୍ତମାନ ଆମର ଜୀବନ ଏତେ ବ୍ୟୟବହୁଳ ହୋଇପଡ଼ିଲାଣି ଯେ, ଜଣେ ମାତ୍ର ପୁରୁଷର ଆୟରେ ଆଉ ସଂସାର ଚଳିପାରୁନାହିଁ । ଶିକ୍ଷିତା ପତ୍ନୀ ହିଁ କେବଳ ସ୍ୱତନ୍ତ୍ର ଆୟର ବ୍ୟବସ୍ଥା କରିପାରେ । ଦ୍ୱିତୀୟତଃ, ଯୌତୁକ ପ୍ରଥାର ବିଭୀଷିକା ଆଜି ବିବାହ କ୍ଷେତ୍ରରେ ପ୍ରଚଣ୍ଡ ସମସ୍ୟା ସୃଷ୍ଟି କରିଛି । ବର୍ତ୍ତମାନ ବୃତ୍ତ୍ୟୁପଜୀବିନୀ ନାରୀମାନଙ୍କର ବିବାହ ବଜାରରେ ଚାହିଦା ଅଧିକ । ତୃତୀୟତଃ, ଦୁର୍ଘଟଣା କ୍ରମେ ସ୍ୱାମୀର ଅକାଳ ମୃତ୍ୟୁ ଘଟିଲେ ସ୍ୱାଧୀନ ଭାବରେ ବଞ୍ଚିବାକୁ ଆତ୍ମନିର୍ଭରଶୀଳ ହେବାକୁ ନାରୀକୁ ସ୍ୱୀକାର କରିବାକୁ ପଡ଼ିବ—ଏଥିନିମନ୍ତେ ମଧ୍ୟ ଶିକ୍ଷାର ପ୍ରୟୋଜନ ।

ବୈଦିକ ଯୁଗରୁ ଏ ଦେଶରେ ନାରୀଶିକ୍ଷାର ପ୍ରଚଳନ ରହିଛି । ପୁଲୋମା, ଇନ୍ଦ୍ରାଣୀ ପ୍ରଭୃତି କେତେକ ନାରୀ ବୈଦିକ ମନ୍ତ୍ର ରଚନା କରିଥିଲେ । ଗାର୍ଗୀ, ମୈତ୍ରେୟୀ ପ୍ରଭୃତି ବ୍ରହ୍ମବାଦିନୀ ନାରୀମାନଙ୍କ ବିଷୟ କିଏ ବା ନଜାଣେ ? ରାମାୟଣ ଯୁଗରେ ନାରୀଶିକ୍ଷାର କିଭଳି ପ୍ରଚଳନ ଥିଲା, ତାହା କୌଶଲ୍ୟା, ସୀତା ପ୍ରଭୃତିଙ୍କର ଆଚରଣରୁ ହିଁ ଜଣାଯାଇ-

ଥାଏ । ମହାଭାରତରେ ସୁଦ୍ଧା ଦ୍ରୌପଦୀଙ୍କର ରାଜନୀତିପଟୁତା ସମ୍ପର୍କରେ ବହୁ ବର୍ଣ୍ଣନା ରହିଛି । କାଳିଦାସ-ପତ୍ନୀ ବିଦ୍ୟାବତୀ ଓ ସର୍ବଶାସ୍ତ୍ରନିପୁଣା ଥିଲେବୋଲି କିମ୍ବଦନ୍ତୀ ଶୁଣାଯାଏ । ଶଙ୍କରାଚାର୍ଯ୍ୟଙ୍କ ସହିତ ତର୍କଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିବା ଉଭୟଭାରତୀ, ଗଣିତଶାସ୍ତ୍ରପଣ୍ଡିତା ଲୀଳାବତୀ ଏମାନେ ଭାରତର କୋଣେ କୋଣେ ପରିଚିତା । ଏଥିରୁ ପ୍ରାଚୀନ କାଳରେ ଭାରତରେ ନାରୀଶିକ୍ଷାର ପ୍ରଚାର ସ୍ପଷ୍ଟ ଜଣାଯାଇଥାଏ ।

ମଧ୍ୟଯୁଗରେ କିନ୍ତୁ ନାରୀମାନେ ନିରଙ୍କୁଶ ସ୍ୱାଧୀନତା ଲାଭର ସୁଯୋଗରୁ ବଞ୍ଚିତା ହେଲେ । ସେମାନଙ୍କୁ ଶୂଦ୍ରଙ୍କର ସମଗୋତ୍ରୀୟ ରୂପରେ ବିଚାର କରାଯାଇ ବେଦାଧ୍ୟୟନରୁ ବଞ୍ଚିତ କରାଗଲା । ନାରୀ ହେଲା ପୁରୁଷ ନିମନ୍ତେ କେବଳ ଏକ ଉପଭୋଗର ସାମଗ୍ରୀ । ସେତିକି ଯବନମାନେ ଆସିବା ଫଳରେ ନାରୀସ୍ୱାଧୀନତା ଆହୁରି ସଙ୍କୁଚିତ ହୋଇଗଲା । ଫଳରେ ଯେଉଁ ତ୍ରୁଟି ସାମାଜିକ ବିପର୍ଯ୍ୟୟ ଘଟିଲା ତାହାର ସୁଯୋଗ ନେଇ ବିଦେଶୀମାନେ ଭାରତବର୍ଷ ଅଧିକାର କରିନେଲେ । ନାରୀମାନେ ପର୍ଦ୍ଦାର ଅନ୍ତରାଳରେ ରହି ଅଶିକ୍ଷାଜନିତ ଦୁର୍ବଳ ଆତ୍ମବିଶ୍ୱାସର ଶିକାର ହେଲେ; ଫଳରେ ସେମାନଙ୍କ ମଧ୍ୟରେ ବହୁ ଅନ୍ଧବିଶ୍ୱାସ ସୃଷ୍ଟି ହେଲା । କାଠ ପଥରକୁ ଦେବତା ରୂପରେ ପୂଜାକରି ସର୍ବଦା ଏକ ଶଙ୍କାକୁଳ ଜୀବନଯାପନରେ ସେମାନେ ଅଭ୍ୟସ୍ତ ହୋଇପଡ଼ିଲେ । ଏହାର ପ୍ରଭାବ ସେମାନଙ୍କର ସନ୍ତାନମାନଙ୍କ ଉପରେ ପଡ଼ିଲା । ସେମାନେ ହେଲେ ଭୀରୁ, କାପୁରୁଷ ଏବଂ ବ୍ୟକ୍ତିତ୍ୱହୀନ ମଣିଷ ।

ସ୍ୱାଧୀନତାଲାଭପରେ ଏହି ଅବସ୍ଥା କିନ୍ତୁ ବଦଳିବାରେ ଲାଗିଛି । ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଦୟାନନ୍ଦ ସରସ୍ୱତୀ, ରାଜା ରାମମୋହନ, ମଧୁସୂଦନ ରାଓ ପ୍ରଭୃତି ପ୍ରାତଃସ୍ମରଣୀୟ ମନୀଷୀବୃନ୍ଦ ନାରୀଶିକ୍ଷାର ସପକ୍ଷରେ ସ୍ୱର ଉତ୍ତୋଳନ କରିଥିଲେ । ପରିଣାମରେ ସ୍ୱାଧୀନତା-ସଂଗ୍ରାମରେ ସରୋଜିନୀ ନାଇଡୁ, କମଳା ନେହେରୁ, ରମାଦେବୀ ପ୍ରଭୃତି ବହୁ ନାରୀ ପୁରୁଷ ସହିତ କାନ୍ଧକୁ କାନ୍ଧ ମିଳାଇ ସଂଗ୍ରାମ କରିଛନ୍ତି । ଆଜି ତ ନାରୀଶିକ୍ଷାର ବ୍ୟାପକ ପ୍ରସାର ଫଳରେ ସମସ୍ତ କ୍ଷେତ୍ରରେ ନାରୀମାନେ ଅଗ୍ରଗତି କରୁଛନ୍ତି । ସେମାନେ ଡାକ୍ତର, ଇଂଜିନିୟର୍, ବିମାନଚାଳକ, ହାଇକୋର୍ଟ ତଥା ସୁପ୍ରିମ୍ କୋର୍ଟର ବିଚାରପତି, ପ୍ରଶାସକ ତଥା ମନ୍ତ୍ରୀ, ଉପମନ୍ତ୍ରୀ, ରାଜ୍ୟପାଳ ପ୍ରଭୃତି ଗୁରୁତ୍ୱପୂର୍ଣ୍ଣ ପଦରେ ବେଶ୍ ଦକ୍ଷତାର ସହିତ କାର୍ଯ୍ୟ କରିଚାଲିଛନ୍ତି ।

ଅନେକେ ମନେକରନ୍ତି ଯେ, ନାରୀର ଜୀବନ ଯେହେତୁ ଘରର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ସେମାନଙ୍କୁ ବେଶି ଶିକ୍ଷା ଦେଇ ଲାଭନାହିଁ । ଯେତେହେଲେ ଝିଅ-ଜନମ ତ ଚୂଲିମୁଣ୍ଡିକୁ— ତେଣୁ ତା’ର ବେଶି ପାଠରେ କି ପ୍ରୟୋଜନ ? ଏହାକୁ ସତ୍ୟର ମର୍ଯ୍ୟାଦା ଦିଆଯାଇନପାରେ । ଅବଶ୍ୟ ସନ୍ତାନପାଳନର ଗୁରୁଦାୟିତ୍ୱ ତାହା ଉପରେ ନ୍ୟସ୍ତ; ପରିବାରକୁ ସର୍ବତୋଭାବରେ ସୁଖୀ ରଖିବା ତାହାର କର୍ତ୍ତବ୍ୟ । ମାତ୍ର ସେହି ସଂସାରର ପ୍ରୟୋଜନରେ ନାରୀକୁ ଯଦି ଅର୍ଥ ଉପାର୍ଜନ ନିମନ୍ତେ ବାହାରକୁ ଯିବାକୁ ପଡ଼େ, ତେବେ ସେଥିରେ କ୍ଷତି

କ'ଣ ? ଗୃହକର୍ମ କ ଅଦ୍ୟାବଧି ଏକ ସାର୍ବଜନୀନ ସତ୍ୟ ନୁହେଁ । ଆତ୍ମମର୍ଯ୍ୟାଦା ରକ୍ଷାକରି ନାରୀ ଯଦି ପରିବାରର ଆର୍ଥିକ ସମସ୍ୟାର କିଛିଟା ସମାଧାନ କରିପାରେ, ତେବେ ସେଥିରେ ତାକୁ ବାଧାଦେବା ଉଚିତ ହେବନାହିଁ; ବରଂ ତାହା ସମାଜ ନିମନ୍ତେ ମଙ୍ଗଳପ୍ରଦ ହେବ ।

ଏହି କାରଣରୁ ବର୍ତ୍ତମାନ ଦେଶରେ ବହୁସଂଖ୍ୟାରେ ନାରୀଶିକ୍ଷାପ୍ରତିଷ୍ଠାନମାନ ଖୋଲାଯାଉଛି । ବିଭିନ୍ନ ବୈଷୟିକ କ୍ଷେତ୍ରରେ ଏମାନଙ୍କୁ ଆତ୍ମନିର୍ଭରଶୀଳ ହେବା ନିମନ୍ତେ ତାଲିମ୍ ଦିଆ-ଯାଉଛି । ଏମାନଙ୍କଦ୍ୱାରା ଯେ ଦେଶର ରୂପ ବଦଳିଯିବ, ଏଥିରେ ସନ୍ଦେହ ନାହିଁ । ଏହାର ଗୋଟିଏ ଅନ୍ଧକାର ଦିଗ ମଧ୍ୟ ରହିଛି; ମାତ୍ର ତାହା ଏତେ ନଗଣ୍ୟ ଯେ, ସେ ବିଷୟରେ ଉଲ୍ଲେଖ ନକଲେ ମଧ୍ୟ ଚଳିବ ।

## ସାମ୍ପ୍ରତିକ ଶିକ୍ଷା-ସମସ୍ୟା

ଜ୍ଞାନହୀନ ମନୁଷ୍ୟକୁ ପଶୁ ସହିତ ତୁଳନା କରାଯାଇଥାଏ । ନିୟମିତ ଶିକ୍ଷା ଅଜ୍ଞାନତା ଦୂରକରି ମଣିଷକୁ ମାର୍ଜିତ, ଭଦ୍ର ତଥା ବିନୀତ କରିଥାଏ । ପ୍ରାଚୀନ ଭାରତରେ ଗୁରୁକୁଳ ଆଶ୍ରମମାନଙ୍କରେ, ଅରଣ୍ୟର ଶାନ୍ତ ନିର୍ଜନ ପରିବେଶରେ, ପରିବାରଠାରୁ ବହୁତ ଦୂରରେ ମାନବଶିଶୁକୁ ଶିକ୍ଷା ଦିଆଯାଉଥିଲା । ଜୀବନର ପ୍ରଥମ ଭାଗ କଠୋର ବ୍ରହ୍ମଚର୍ଯ୍ୟ ମଧ୍ୟରେ ଏହିଠାରେହିଁ କଟିଯାଉଥିଲା । କଠିନ ଶାରୀରିକ ପରିଶ୍ରମ ମଧ୍ୟରେ ବିଦ୍ୟାଶିକ୍ଷା ଆଗେଇ-ଚାଲୁଥିଲା । ଗୁରୁଙ୍କ ନିର୍ଦ୍ଦେଶରେ ହିଁ ଛାତ୍ର ଶିକ୍ଷା ଶେଷକରି ଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲା । ତା'ପରେ କ୍ରମଶଃ ଶିକ୍ଷାକେନ୍ଦ୍ର ଗ୍ରାମ ଏବଂ ନଗରାଭିମୁଖୀ ହେବାକୁ ଲାଗିଲା ଏବଂ ଶିକ୍ଷାର ସ୍ୱରୂପ ମଧ୍ୟ ବଦଳିବାକୁ ଲାଗିଲା । ଅଭିଜାତ ପରିବାର ଗୁରୁଙ୍କୁ ନିମନ୍ତ୍ରଣ କରିଆଣି ସ୍ୱଗୃହରେ ତାଙ୍କୁ ଆଶ୍ରୟ ଦେଇ ନିଜନିଜର ସନ୍ତାନମାନଙ୍କର ଶିକ୍ଷା ବ୍ୟବସ୍ଥା କରିବାକୁ ଲାଗିଲେ । ଏହାପରେ ଆସିଲା ଇଂରେଜ ଅମଳ । ଶାସନକାର୍ଯ୍ୟରେ ସେମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଇଂରେଜମାନେ ଚାହୁଁଥିଲେ ଏକ କିରାଣିଗୋଷ୍ଠୀ, ଯେଉଁମାନେ କି କେବଳମାତ୍ର ବର୍ଣ୍ଣରେ ଭାରତୀୟ ହେବେ, ମାତ୍ର ସେମାନଙ୍କର ବେଶ-ପୋଷାକ, ଆଚାର ବ୍ୟବହାର ଠିକ୍ ୟୁରୋପୀୟମାନଙ୍କ ଭଳି ହେବ । ମାକଲେ ସାହେବ ଯେଉଁ ଅନୁସାରେହିଁ ଭାରତରେ ଇଂରେଜୀ ଶିକ୍ଷାର ପ୍ରଚାର ପଠାଇବା ପାଇଁ ସରକାରଙ୍କୁ ପରାମର୍ଶ ଦେଲେ । କ୍ରମଶଃ ସ୍କୁଲ, କଲେଜ ଏବଂ ବିଶ୍ୱବିଦ୍ୟାଳୟମାନ ଖୋଲିଯିବାକୁ ଲାଗିଲା ଏବଂ ସମଗ୍ର ଭାରତରେ ଦ୍ରୁତ ଗତିରେ ଇଂରାଜୀ ଶିକ୍ଷା ଦିଆଯିବାକୁ ଲାଗିଲା ।

ବର୍ତ୍ତମାନ ଶିକ୍ଷାକୁ ମାତ୍ର ଜ୍ଞାନାର୍ଜନର ମାର୍ଗରୂପରେ ଗ୍ରହଣ କରିନେଲେ ଚଳିବ ନାହିଁ । ଏହା ସହିତ ଜଡ଼ିତ ରହିଛି ଅର୍ଥୋପାର୍ଜନର ସମସ୍ୟା । ଇଂରେଜମାନେ ଯେଉଁ

ଶିକ୍ଷାନୀତି ଏ ଦେଶରେ ପ୍ରଚଳିତ କରାଇଥିଲେ, ସେଥିରେ ଶାରୀରିକ ଶ୍ରମର କୌଣସି ସ୍ଥାନ ନଥିଲା । ଗୋଟାଏ ଦୁ'ଟା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲାପରେ ବସିବାକୁ ଚୌକିଖଣ୍ଡେ କୌଣସିମତେ ମିଳିଯାଉଥିଲା । ଏବେ କିନ୍ତୁ ଅବସ୍ଥା ସମ୍ପୂର୍ଣ୍ଣ ବଦଳିଯାଇଛି । ସାର୍ଟିଫିକେଟ୍‌ର ଆଉ ବିଶେଷ କୌଣସି ମୂଲ୍ୟ ନାହିଁ । ଶିକ୍ଷାର ପ୍ରସାର ଓ ଦ୍ରୁତ ଜନସଂଖ୍ୟା ବୃଦ୍ଧି ଫଳରେ ନିଯୁକ୍ତିର କ୍ଷେତ୍ର ସୀମିତ ହୋଇଯାଇଛି । ତେଣୁ ବର୍ତ୍ତମାନ ଆମର ଶିକ୍ଷା-ନୀତିରେ ପରିବର୍ତ୍ତନର ଆବଶ୍ୟକତା ପଡ଼ୁଛି ।

ବଞ୍ଚିବା ନିମନ୍ତେ ଅବଶ୍ୟକ ପ୍ରଥମେ ଖଣ୍ଡେ ଚାକିରି । ଶିକ୍ଷାର ପ୍ରସାର ହେବା ଫଳରେ ବହୁସଂଖ୍ୟକ ଶିକ୍ଷିତ ବ୍ୟକ୍ତି ବାହାରୁଛନ୍ତି; ମାତ୍ର ଏତେ ସଂଖ୍ୟକ ଚାକିରିର ବ୍ୟବସ୍ଥା କରାଯାଇ ପାରୁନାହିଁ । ପରିଣାମରେ ବେକାରି ବଢ଼ୁଛି ଏବଂ ତା'ସହିତ ଅସନ୍ତୋଷ ମଧ୍ୟ ବୃଦ୍ଧିପାଉଛି । ଏହି ଅବସ୍ଥା ଦୀର୍ଘକାଳ ଲାଗିରହିଲେ ସାମାଜିକ ବିପ୍ଳବ ସୃଷ୍ଟି ହୋଇଯାଇପାରେ । ତେଣୁ ଏଥିରୁ କୌଣସିମତେ ଉଦ୍ଧାର ପାଇବାର ବାଟ ଖୋଜିବାକୁ ପଡ଼ିବ ।

ସାଧାରଣ ଶିକ୍ଷା ବଦଳରେ ଧନ୍ଦାମୂଳକ ଶିକ୍ଷା-ବ୍ୟବସ୍ଥା କରାଗଲେ ଛାତ୍ରମାନେ ପଢ଼ା ଶେଷବେଳକୁ ଯେକୌଣସି ଗୋଟିଏ ଧନ୍ଦାରେ ନିଯୁକ୍ତ ହୋଇଯିବା ନିମନ୍ତେ ପ୍ରସ୍ତୁତ ହୋଇପାରିବେ । ତାହା କୃଷି, ଶିଳ୍ପ, କୁକୁଡ଼ାପାଳନ କିମ୍ବା ମାଛଚାଷ ଯାହା ହେଉନା କାହିଁକି, ଅନ୍ତ-ନିଯୁକ୍ତିର ଗୋଟାଏ ଚମତ୍କାର ସୁଯୋଗ ଛାତ୍ର ଆଗରେ ଖୋଲିରହିପାରିବ । ଏଥିନିମନ୍ତେ ଶାରୀରିକ ଶ୍ରମକୁ ମର୍ଯ୍ୟାଦାବାନ୍ ରୂପରେ ପ୍ରତିଷ୍ଠା କରିବାକୁ ପଡ଼ିବ । ଯେ ପାଠ ଦୁ'ଅକ୍ଷର ପଢ଼ିଲା ସେ କେବଳ ଚୌକିରେ ବସି କଲମ ଚଳାଇବା ଛଡ଼ା ଅନ୍ୟ କୌଣସି କାମ କରିବାକୁ ଅନିଚ୍ଛୁକ । ମାତ୍ର ମନେରଖିବାକୁ ହେବ ଯେ, ଶାରୀରିକ ପରିଶ୍ରମରେ ଲଜ୍ଜାକର କିଛି ନାହିଁ । ପ୍ରାଚୀନ ଗୁରୁକୁଳ ଆଶ୍ରମରେ ଧନୀଦରିଦ୍ର-ନିର୍ବିଶେଷରେ ଛାତ୍ରଙ୍କୁ କଠିନ ପରିଶ୍ରମ କରିବାକୁ ପଡ଼ୁଥିଲା । ରାଜାର ସନ୍ତାନ ସୁଦ୍ଧା ଗୁରୁଙ୍କ ନିମନ୍ତେ ଗାଈ ଚରାଇବା, କାଠକାଟିବା କିମ୍ବା ତତ୍ତୁଲ୍ୟ ଅନ୍ୟ କୌଣସି କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହେଉନଥିଲେ । ପାଶ୍ଚାତ୍ୟ ଦେଶମାନଙ୍କରେ ଅଧ୍ୟୟନ କାଳରେହିଁ ଅଧିକାଂଶ ଛାତ୍ର ଯେକୌଣସି କାର୍ଯ୍ୟ କରି ନିଜର ଖର୍ଚ୍ଚ ପାଇଁ ଅର୍ଥ ସଂଗ୍ରହ କରିଥାଆନ୍ତି । କୋଟିପତିର ସନ୍ତାନ ସୁଦ୍ଧା ଛୁଟିସମୟରେ ମାଲବୁହା କୁଲି ହୋଇ ଅର୍ଥୋପାର୍ଜନ କରେ । ଏହି ବ୍ୟବସ୍ଥା ଆମେରିକା, ଇଂଲଣ୍ଡ, ଫ୍ରାନ୍ସ ପ୍ରଭୃତି ଦେଶମାନଙ୍କରେ ବିଶେଷ ଭାବରେ ପ୍ରଚଳିତ । ଏହାଦ୍ୱାରା ଆଉ ଗୋଟିଏ ସୁଫଳ ମିଳିଥାଏ । ଛାତ୍ରର ଆତ୍ମନିର୍ଭରଶୀଳତା ଏବଂ ବ୍ୟକ୍ତିତ୍ୱ ଏହାଦ୍ୱାରା ବୃଦ୍ଧିପାଏ, ଯାହାକି ତାହାର ଭବିଷ୍ୟତ୍ ଜୀବନ ନିର୍ମାଣରେ ବିଶେଷ ସହାୟକ ହୋଇଥାଏ ।

ବର୍ତ୍ତମାନ ଶିକ୍ଷା ଛାତ୍ରଙ୍କୁ ସହରାଭିମୁଖୀ କରି ତୋଳୁଛି । ପରିଣାମରେ ଗ୍ରାମବହୁଳ ଭାରତ ଜନଶୂନ୍ୟ, ହତଶ୍ରୀ ହୋଇପଡ଼ୁଛି ଏବଂ ସହର ଉପରେ ପ୍ରଚୁର ଚାପ ପଡ଼ୁଛି । ଏହି ଅବସ୍ଥାର ଆଶୁ ପରିବର୍ତ୍ତନ ଆବଶ୍ୟକ । ଗ୍ରାମାଞ୍ଚଳରେ କ୍ଷୁଦ୍ର କ୍ଷୁଦ୍ର ଶିଳ୍ପର ସୁଯୋଗ ସୃଷ୍ଟି କରି

ଛାତ୍ରମାନଙ୍କୁ ସେଠାରେ ଜୀବିକାର୍ଜନର ସୁବିଧା ଦିଆଯାଇପାରେ । ବର୍ତ୍ତମାନ ପରିସ୍ଥିତିରେ ଦେଶରେ ବଡ଼ ବଡ଼ କଳକାରଖାନା ଯେତେ କମ୍ ପ୍ରତିଷ୍ଠା କରାଯାଇପାରେ, ତାହା ଦେଶ ପାଇଁ ସେତେ ମଙ୍ଗଳପ୍ରଦ ହେବ । କୁଟୀରଶିଳ୍ପର ବ୍ୟାପକ ପ୍ରସାର ଦ୍ୱାରା ନିଯୁକ୍ତିର ଅଧିକ ସୁଯୋଗ ସୃଷ୍ଟି କରାଯାଇପାରିବ । ପ୍ରାୟୋଗିକ ବିଜ୍ଞାନ ଏବଂ ଫଳିତ ବିଜ୍ଞାନରେ ଏତେ ଅଗ୍ରଗତି କରି ସୁଦ୍ଧା ଜାପାନ ଏବେ କ୍ଷୁଦ୍ରଶିଳ୍ପର ପ୍ରସାର ଉପରେ ଅଧିକ ଗୁରୁତ୍ୱ ଦେଉଛି । ଏଠାରେ ତାହାର ପ୍ରସାର କରାଗଲେ ନିଶ୍ଚୟ ସୁଫଳ ମିଳିବ ।

ସ୍ୱାଧୀନତା ଲାଭ ପରେ ଭାରତବର୍ଷରେ ଶିକ୍ଷା-ବ୍ୟବସ୍ଥାର ବ୍ୟାପକ ପ୍ରସାର ହୋଇଥିଲେ ସୁଦ୍ଧା ଏହାର ଅର୍ଦ୍ଧାଧିକ ଲୋକ ଅଦ୍ୟାବଧି ନିରକ୍ଷର ରହିଛନ୍ତି । ଅଶିକ୍ଷା ଏକ ସାମାଜିକ ବ୍ୟାଧି ଏବଂ ଅଜ୍ଞତା ବଢ଼ାଇ ମନୁଷ୍ୟଙ୍କୁ କୁସଂସ୍କାରଗ୍ରସ୍ତ ହେବାକୁ ସାହାଯ୍ୟ କରେ । ଅଶିକ୍ଷିତ ବ୍ୟକ୍ତି ନିଜର ଶକ୍ତି ସମ୍ପର୍କରେ, ଅଧିକାର ବିଷୟରେ ଆଦୌ ସଚେତନ ହୋଇପାରେ ନାହିଁ । ବିଶେଷକରି ନାରୀମାନେ ହେଉଛନ୍ତି ସମାଜ-ଜୀବନର ମେରୁଦଣ୍ଡ ସଦୃଶ । ଭବିଷ୍ୟତ ନାଗରିକ ଗଢ଼ିବାର ଦାୟିତ୍ୱ ସେମାନଙ୍କ ଉପରେ; ତେଣୁ ସେମାନଙ୍କୁ ଯଦି ପ୍ରଥମରୁ ଶିକ୍ଷା ଦିଆନଯାଏ, ତେବେ ସେମାନେ ଭବିଷ୍ୟତରେ ସୁଗୃହିଣୀ, ସୁଜନନୀ କିମ୍ବା ଉତ୍ତମ ନାଗରିକା ହୋଇପାରିବେ ନାହିଁ । କେବଳମାତ୍ର ପୁରୁଷ ଉପରେ ଏକ ବୋଝ ହୋଇ ସେମାନଙ୍କର ଜୀବନ କଟିଯିବ । ତେଣୁ ପ୍ରୌଢ଼ଶିକ୍ଷା ସହିତ ନାରୀଶିକ୍ଷାର ବ୍ୟାପକ ଆୟୋଜନ କରିବାକୁ ପଡ଼ିବ ।

ଭାରତରେ ଶିକ୍ଷା-ବ୍ୟବସ୍ଥା ଏକ ବ୍ୟୟବହୁଳ ବ୍ୟାପାର । ବିଦେଶରେ ଅନେକଠାରେ ସ୍କୁଲଶିକ୍ଷା ଏବଂ କେତେ କ୍ଷେତ୍ରରେ କଲେଜ ଶିକ୍ଷାକୁ ମଧ୍ୟ ଅବୈତନିକ କରିଦିଆଗଲାଣି । ମେଧାବୀ ଛାତ୍ରମାନଙ୍କୁ ଯଥେଷ୍ଟ ସଂଖ୍ୟକ ସରକାରୀ ସହାୟତା ମଧ୍ୟ ଯୋଗାଇ ଦିଆଯାଉଛି । ମାତ୍ର ଏ ଦେଶରେ କେବଳ ମାତ୍ର ଅର୍ଥ ଅଭାବରୁ କେତେ ଯେ ମେଧାବୀ ଛାତ୍ରଙ୍କର ପୋଥିରେ ଅକାଳରେ ଡୋରି ବନ୍ଧାହେଉଛି, ତାହା କହିହେବ ନାହିଁ । ଏଥିପାଇଁ ମଧ୍ୟ ଆମର ଯଥେଷ୍ଟ ପଦକ୍ଷେପ ନେବାର ରହିଛି ।

ଉପସଂହାରରେ ତେଣୁ କୁହାଯାଇପାରେ ଯେ, ସାଧାରଣ ଶିକ୍ଷା ବଦଳରେ ଧନ୍ଦାମୂଳକ ଶିକ୍ଷା-ବ୍ୟବସ୍ଥାର ପ୍ରଚଳନ ନିମନ୍ତେ ସମୟ ଆସିଯାଇଛି । ଦେଶର ପ୍ରତ୍ୟେକ ନାଗରିକ ବୟସ ନିର୍ବିଶେଷରେ ଯେ ପର୍ଯ୍ୟନ୍ତ ଶିକ୍ଷାର ସୁଯୋଗ ନ ପାଇଛନ୍ତି, ସେ ପର୍ଯ୍ୟନ୍ତ ଆମର ଦାୟିତ୍ୱ ଶେଷ ହୋଇଛି ବୋଲି କୁହାଯାଇ ପାରିବ ନାହିଁ । କାରଣ ଶିକ୍ଷାହିଁ ମାନବିକତାର ପୂର୍ଣ୍ଣ ବିକାଶରେ ସହାୟକ ହୋଇଥାଏ ।

# ପଲ୍ଲୀ-ଉନ୍ନୟନ

ଭାରତ ଏକ ଗ୍ରାମବହୁଳ ଦେଶ ଏବଂ ଭାରତର ପ୍ରକୃତ ଆତ୍ମା ପଲ୍ଲୀ ଅଞ୍ଚଳରେହିଁ ଲୁକ୍କାୟିତ ରହିଛି । କୃଷିପ୍ରଧାନ ଦେଶ ହୋଇଥିବାରୁ ଏହାର ଜନସଂଖ୍ୟାର ଅଧିକାଂଶ ଭାଗ ଗ୍ରାମାଞ୍ଚଳରେହିଁ ରହିଛନ୍ତି । ଯେ ପର୍ଯ୍ୟନ୍ତ ଏମାନଙ୍କର ସମୃଦ୍ଧି ଉନ୍ନତ ନ ହୋଇଛି, ସେ ପର୍ଯ୍ୟନ୍ତ ଭାରତ ସର୍ବତୋଭାବରେ ବିକାଶ ଲାଭ କରିଛି ବୋଲି କୁହାଯାଇ ପାରିବନାହିଁ ।

ପଲ୍ଲୀ ଅଞ୍ଚଳର ସରଳତା ସମ୍ପର୍କରେ ଆମେ ଶୁଣି ଅଧିକେ ବହୁତ କଥା ଜାଣୁ । ଏହି ସରଳତାର ସୁଯୋଗ ନେଇ ଅତୀତରେ ବହୁ ଅତ୍ୟାଚାର ସେମାନଙ୍କ ଉପରେ ହୋଇ-ଯାଇଛି । ପରାଧୀନ ଦେଶର ଗ୍ରାମାଞ୍ଚଳରୁ କେବଳ କର ସଂଗ୍ରହ କରିବା ବ୍ୟତୀତ ବ୍ରିଟିଶ୍-ଶାସକବୃନ୍ଦ ସେମାନଙ୍କର ପ୍ରକୃତ ଉନ୍ନତି ନିମନ୍ତେ ବିଶେଷ କୌଣସି ବ୍ୟବସ୍ଥା ଗ୍ରହଣ କରୁ ନଥିଲେ । ଫଳରେ ଅଶିକ୍ଷା, ଦାରିଦ୍ର୍ୟ, ରୋଗ ପ୍ରଭୃତି ପ୍ରାକୃତିକ ଏବଂ କୃତ୍ରିମ ବିପର୍ଯ୍ୟୟ ମଧ୍ୟରେ ଗ୍ରାମୀଣ ଜନତା ମ୍ରିୟମାଣ ଅବସ୍ଥାରେ ରହିଲେ । ଯାତାୟାତର କୌଣସି ସୁବିଧା ନଥିଲା । ରେଳ ମଟର ତ ଦୂରର କଥା, ଅଧିକାଂଶ ଗ୍ରାମ ସହିତ ଡାକ ଯୋଗାଯୋଗ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ଶିକ୍ଷା-ବ୍ୟବସ୍ଥା ମଧ୍ୟ ଅତ୍ୟନ୍ତ ଦୟନୀୟ ଥିଲା । ଅଶିକ୍ଷା ହେତୁରୁ ଗ୍ରାମବାସୀମାନେ ସ୍ୱାସ୍ଥ୍ୟ ସମ୍ପର୍କୀୟ କୌଣସି ନିୟମ ପାଳନ କରି ନପାରି ବାରମ୍ବାର ରୋଗର ଶିକାର ହେଉଥିଲେ ।

ସ୍ୱାଧୀନତାଲାଭ ପରେ ପରେ ଏହି ଅବସ୍ଥାର କେତେକ ପରିବର୍ତ୍ତନ ଅବଶ୍ୟ ହୋଇଛି । ଗ୍ରାମାଞ୍ଚଳରେ ଅନେକ ସ୍କୁଲ କଲେଜ ସ୍ଥାପିତ ହୋଇଥିବା ଫଳରେ ଶିକ୍ଷା-ବ୍ୟବସ୍ଥାର ଉନ୍ନତି ହୋଇଛି । ପଞ୍ଚାୟତ ପ୍ରତିଷ୍ଠା ହେବା ଫଳରେ ତାହାଦ୍ୱାରା ଗ୍ରାମର କେତେକ ସମସ୍ୟାର ସମାଧାନ ହୋଇପାରିଛି । କୃଷି-ବ୍ୟବସ୍ଥାର ଉନ୍ନତି ନିମନ୍ତେ ଗ୍ରାମବାସୀମାନଙ୍କୁ ବିଶେଷଜ୍ଞଙ୍କର ପରାମର୍ଶ, ବ୍ୟାଙ୍କ୍ ଋଣ, ଉନ୍ନତ ପ୍ରଣାଳୀର ବିହନ, ସାର ଇତ୍ୟାଦି ମିଳିପାରୁଛି । ଗୋମହିଷାଦି ପଶୁପାଳନ, ଉନ୍ନତ ଧରଣର କୁକୁଡ଼ା ଫାର୍ମ, ମାଛଚାଷ ଇତ୍ୟାଦି କରିବା ନିମନ୍ତେ ସେମାନଙ୍କୁ ଉତ୍ସାହିତ କରାଯାଉଛି । ଅନାବାଦୀ ଭୂମିକୁ ଆବାଦୀ କରିବା ନିମନ୍ତେ ମଧ୍ୟ ସେମାନଙ୍କୁ ସାହାଯ୍ୟ କରାଯାଉଛି । ସ୍ୱାସ୍ଥ୍ୟକେନ୍ଦ୍ର ସ୍ଥାପନ ଗ୍ରାମର ସ୍ୱାସ୍ଥ୍ୟ-ବ୍ୟବସ୍ଥାର କିଛିଟା ଉନ୍ନତି ଅବଶ୍ୟ କରାଇଛି । ଅନ୍ତତଃ ଗ୍ରାମବାସୀମାନଙ୍କୁ ରୋଗ ସମ୍ପର୍କରେ ସଚେତନ କରାଇଦିଆଯାଇ ପରିଷ୍କାର-ପରିଚ୍ଛନ୍ନତା ଦ୍ୱାରା ଯେ ଅନେକ ରୋଗ-କବଳରୁ ମୁକ୍ତ ମିଳିପାରେ ଏହା ବୁଝାଇ ଦିଆଯାଇପାରୁଛି ।

ଚାଷ ହେଉଛି ଗ୍ରାମବାସୀମାନଙ୍କର ପ୍ରଧାନ ଅବଲମ୍ବନ । ଦୀର୍ଘକାଳ ଧରି ଭାଗ-ବଣ୍ଟାରା ହୋଇ ଗ୍ରାମାଞ୍ଚଳର ଜମିଗୁଡ଼ିକ କ୍ଷୁଦ୍ର କ୍ଷୁଦ୍ର ଅଂଶରେ ବିଭକ୍ତ ହୋଇପଡ଼ିଥିବାରୁ ତାହାଦ୍ୱାରା ଅନେକ ଜମି ତ ବିନା କାରଣରେ ନଷ୍ଟ ହୋଇଯାଇଛି, ତଥା ଉନ୍ନତ କୃଷି-ବ୍ୟବସ୍ଥାର

ପ୍ରଚଳନରେ ବାଧକ ହୋଇପଡ଼ୁଛି । ଏହି ଅବସ୍ଥାକୁ ଦୂର କରିବା ନିମନ୍ତେ 'ଚକବନ୍ଦୀ ବ୍ୟବସ୍ଥା'ର ପ୍ରଚଳନ ଏବେ ଆରମ୍ଭ ହୋଇଛି । ଏହାଦ୍ୱାରା ଜଣେ ଜମିମାଲିକର ସମସ୍ତ ଜମିକୁ ଗୋଟିଏ 'ଚକ' ମଧ୍ୟରେ ଆବଦ୍ଧ କରାଯାଇପାରିବ । ଫଳରେ ଉନ୍ନତ ଯନ୍ତ୍ରପାତିର ବ୍ୟବହାର ସହଜ ହୋଇପାରିବ । ଜଳର ଅଭାବ କୃଷିର ପ୍ରଧାନ ଶତ୍ରୁ । ଏପର୍ଯ୍ୟନ୍ତ ସବୁ ଅଞ୍ଚଳକୁ କେନାଲଦ୍ୱାରା ଜଳ ପହଞ୍ଚାଇବାର ସୁଯୋଗ କରାଯାଇପାରିନାହିଁ । ଗ୍ରାମବାସୀ-ମାନେ 'ପାଗ' ଉପରେ ମୁଖ୍ୟତଃ ନିର୍ଭର କରୁଛନ୍ତି । ଏହାର ଆଶୁ ସମାଧାନ ଦିଗରେ ପଦକ୍ଷେପମାନ ନିଆଯିବା ଉଚିତ । ଯେଉଁ ଅଞ୍ଚଳକୁ ଜଳଯୋଗାଣର ସୁବିଧା ନାହିଁ, ସେଠାରେ ନଳକୂପମାନ ଖୋଲାଇ ଏହି ସମସ୍ୟାକୁ ଦୂର କରାଯାଇପାରେ । ଭୂଗର୍ଭରୁ ଜଳ ଉତ୍ତୋଳନ ନିମନ୍ତେ ବିଦ୍ୟୁତ୍‌ଶକ୍ତିର ସାହାଯ୍ୟ ନିଆଯାଇପାରେ । ଏଥିନିମନ୍ତେ ଗ୍ରାମାଞ୍ଚଳକୁ ବିଦ୍ୟୁତ୍‌ଶକ୍ତି ଯୋଗାଇଦେବାକୁ ପଡ଼ିବ । ଦ୍ୱିତୀୟ କଥା ହେଉଛି, ଉନ୍ନତ ପ୍ରଣାଳୀର ସାର ପ୍ରୟୋଗରେ ଉତ୍ପାଦନ ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇବ । ଉକ୍ତବ୍ୟବସ୍ଥାର ସମସ୍ତ ପ୍ରକାର ଉନ୍ନତି ନିମନ୍ତେ ଦକ୍ଷ ବିଶେଷଜ୍ଞମାନଙ୍କର ସହାୟତା ଯେଉଁଭଳି ସବୁ ଗ୍ରାମରେ ମିଳିପାରିବ, ସେ ବ୍ୟବସ୍ଥା କରିବାକୁ ପଡ଼ିବ । କୀଟ-ପତଙ୍ଗ ଫସଲର ପ୍ରଧାନ ଶତ୍ରୁ । ସେମାନଙ୍କ କବଳରୁ ଫସଲକୁ ରକ୍ଷା କରିବା ନିମନ୍ତେ ଔଷଧପତ୍ରର ସାବଧାନ ବ୍ୟବହାର ସମ୍ପର୍କରେ ଗ୍ରାମବାସୀମାନଙ୍କୁ ତାଲିମ୍ ଦେବାକୁ ପଡ଼ିବ ।

କୃଷି-କର୍ମ ବାହାରେ ଯେଉଁ ଅବସର ଗ୍ରାମବାସୀଙ୍କୁ ମିଳିଥାଏ, ତାହାର ସୁବିନିଯୋଗ ନିମନ୍ତେ ଉପାୟମାନ ବାହାର କରିବାକୁ ପଡ଼ିବ । ଉନ୍ନତ ଗୋମହିଷାଦି ପାଳନ, ମାଛଚାଷ, କୁକୁଡ଼ାପାଳନ, ମହୁମାଛିପାଳନ କିମ୍ବା ଅନ୍ୟ ଯେକୌଣସି କୁଟୀରଶିଳ୍ପ ସାହାଯ୍ୟରେ ସେମାନଙ୍କର ଅବସର ଯାପନର ସୁଯୋଗ କରିଦେବାକୁ ହେବ । ଏହାଦ୍ୱାରା ଗ୍ରାମାଞ୍ଚଳର ଆର୍ଥିକ ମାନଦଣ୍ଡ ତ ଦୃଢ଼ ହୋଇପାରିବ, ଏହାଛଡ଼ା ଅବସରକୁ ପରଚର୍ଚ୍ଚା, ତାଉତିଆସ ଇତ୍ୟାଦିରେ ନ ଲଗାଇ ସେମାନେ ପ୍ରକୃତରେ ଅର୍ଥକରୀ କାର୍ଯ୍ୟରେ ବ୍ୟସ୍ତରହି ଲାଭବାନ୍ ହୋଇପାରିବେ । ଆଳସ୍ୟ ହେଉଛି ମାନବଜାତିର ପ୍ରଧାନ ଶତ୍ରୁ । ତେଣୁ କୁହାଯାଇଛି ଯେ, 'Idle mind is devil's workshop' । ଥରେ କାମରେ ମନ ଲାଗିଗଲେ, ମଣିଷ ଆଉ ଅନ୍ୟଆଡ଼େ ଚିନ୍ତା କରିବାକୁ ସମୟ ପାଏ ନାହିଁ । ତେଣୁ କୌଣସିମତେ ସେମାନଙ୍କୁ କର୍ମଦ୍ୱାରା ସମୟର ସଦ୍‌ବିନିଯୋଗର ସୁଯୋଗ ଯୋଗାଇଦେବାକୁ ହେବ ।

ଯଥାର୍ଥରେ ଦେଖିବାକୁ ଗଲେ, ସହରାଞ୍ଚଳ ଅପେକ୍ଷା ଗ୍ରାମାଞ୍ଚଳରେ ହିଁ ଆତ୍ମ-ନିର୍ଭରର ସୁଯୋଗ ଅଧିକ । ତେଣୁ ରାଷ୍ଟ୍ରର ପିତା ମହାତ୍ମା ଗାନ୍ଧୀ ଭାରତୀୟମାନଙ୍କୁ ଗ୍ରାମାଭିମୁଖୀ ହେବା ନିମନ୍ତେ ଆହ୍ୱାନ ଜଣାଇଥିଲେ । ଦୁଃଖର ବିଷୟ ଯେ, ସ୍ୱାଧୀନତାଲାଭ ପରେ ପରେ ଆମର ବିକାଶର ଧାରା ନଗରକୈନ୍ଦ୍ରିକ ହୋଇପଡ଼ିଥିବାରୁ, ଗ୍ରାମାଞ୍ଚଳର ପ୍ରକୃତ ଉନ୍ନତି ହୋଇପାରିନାହିଁ ।

ସ୍ୱାସ୍ଥ୍ୟ-ବ୍ୟବସ୍ଥାର ଉନ୍ନତି ନିମନ୍ତେ ସ୍ୱାସ୍ଥ୍ୟ-କେନ୍ଦ୍ରମାନ ସ୍ଥାପିତ ହୋଇ ଗ୍ରାମବାସୀମାନଙ୍କୁ ସ୍ୱାସ୍ଥ୍ୟରକ୍ଷାର ମୂଳନୀତିଗୁଡ଼ିକ ସମ୍ପର୍କରେ ସଚେତନ କରାଇଦେବା ଉଚିତ । ପ୍ରୟୋଜନ-ବୋଧରେ ରୋଗ ଦୂର ନିମନ୍ତେ ରୋଗୀକୁ ବିଶେଷଜ୍ଞଙ୍କ ପରାମର୍ଶର ସମସ୍ତ ସୁଯୋଗ ଦିଆଯିବା ଉଚିତ ।

ସ୍ୱାଧୀନତା ପରେ ଦେଶରେ ଶିକ୍ଷାଲାଭର ବ୍ୟାପକ ସୁଯୋଗ ହୋଇଛି । ମାତ୍ର ଅନେକ କ୍ଷେତ୍ରରେ ଏହା କେବଳ 'ପୋଥି ବାଇଗଣ' ହୋଇ କାଗଜପତ୍ର ମଧ୍ୟରେ ସୀମିତ ହୋଇ ରହିଛି । ଶିକ୍ଷା ବିକାଶର ପ୍ରଥମ ସୋପାନ । ଅନ୍ତତଃ ସ୍କୁଲଶିକ୍ଷାକୁ ଅବୈତନିକ କରାଯାଇ ପାରିଲେ ଏହାଦ୍ୱାରା ଗ୍ରାମବାସୀମାନେ ପ୍ରକୃତରେ ଉପକୃତ ହୋଇପାରନ୍ତେ ।

ଅବସରବିନୋଦନ ନିମନ୍ତେ ପ୍ରାଚୀନ କାଳର ଭାଗବତଘର ଭଳି କ୍ଲବ ଘରମାନ ପ୍ରତ୍ୟେକ ଗ୍ରାମରେ ସ୍ଥାପନ କରାଯାଇପାରେ । ଏଠାରେ ସମ୍ବାଦପତ୍ର ପଠନ, ରେଡ଼ିଓଶ୍ରବଣ, ପାରସ୍ପରିକ ମତ ବିନିମୟ ପ୍ରଭୃତି ଅତି କମ୍ ଶରେ କରାଯାଇପାରିବ ।

ପଲ୍ଲୀ ଅଞ୍ଚଳର ଯଥାର୍ଥ ଉନ୍ନତିରେ ହିଁ ବାପୁଜୀଙ୍କର କଳ୍ପିତ 'ରାମରାଜ୍ୟ'ର ସ୍ୱରୂପ ଲୁଚିରହିଛି । ଯେ ପର୍ଯ୍ୟନ୍ତ ଏହାର ସର୍ବାଙ୍ଗୀଣ ଉନ୍ନତି ନହୋଇଛି, ସେ ପର୍ଯ୍ୟନ୍ତ ଭାରତର ପ୍ରକୃତ ବିକାଶ ହୋଇଛି ବୋଲି କୁହାଯାଇ ପାରିବନାହିଁ । ଏଥିପାଇଁ ଯୋଜନାବଦ୍ଧ ଉଦ୍ୟମ ଲୋଡ଼ା । ତାହା ହେଲେହିଁ କାବ୍ୟ ନାଟକାଦିରେ ଯେଉଁ ପଲ୍ଲୀ ଅଞ୍ଚଳର ଭୂରି ଭୂରି ପ୍ରଶଂସା ଦେଖିବାକୁ ମିଳେ, ତାହା ବାସ୍ତବ ହୋଇପାରିବ ।

## ଜାତୀୟ ସଂହତି

ଐକ୍ୟବୋଧ ଜାତୀୟ ଜୀବନର ଶକ୍ତିର ଉତ୍ସ । ତେଣୁ କୁହାଯାଇଥାଏ, United we stand, divided we fall. ଯେଉଁ ଦେଶର ଏହି ଐକ୍ୟବୋଧ ଯେତେ ଦୃଢ଼, ବିଶ୍ୱଦରବାରରେ ତାହାର ଭାବମୂର୍ତ୍ତି ସେତେ ଉଜ୍ଜ୍ୱଳ, ସେତେ ବର୍ଣ୍ଣାଢ଼୍ୟ । ଭାରତବର୍ଷ ହିନ୍ଦୀ, ଓଡ଼ିଆ, ବଙ୍ଗଳା, ଆସାମୀ, ତେଲେଗୁ, ତାମିଲ, ମରହଟ୍ଟୀ, ଗୁଜୁରାଟୀ ପ୍ରଭୃତି ବହୁ ଭାଷାଭାଷୀ ତଥା ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଜୈନ, ପାର୍ସୀ, ବୌଦ୍ଧ ପ୍ରଭୃତି ବହୁ ଧର୍ମାବଲମ୍ବୀମାନଙ୍କର ବାସସ୍ଥାନ । କ୍ଷୁଦ୍ର ତଟିନୀ ତୁଲ୍ୟ ଏମାନେ ସମସ୍ତେ ଭାରତରୂପକ ମହାସାଗରରେ ନିଜର ସତ୍ତା ହରାଇଛନ୍ତି । ଭାରତବର୍ଷର 'ଧ୍ୟାନ-ଗମ୍ଭୀର ଭୂଧର', 'ନଦୀଜଳ ମାଲାଧୃତ ପ୍ରାନ୍ତର', କୁଞ୍ଜକାନନମାଳ, ଦିଗନ୍ତ-ବିସ୍ତୃତ ଫେନଚୂଡ଼ ଊର୍ମି ମୁକୁଟମଣ୍ଡିତ ସାଗର—ଏ ସମସ୍ତ ନିମନ୍ତେ ପ୍ରତ୍ୟେକ ଭାରତୀୟ ଗର୍ବ ଅନୁଭବ କରନ୍ତି । ଭାଷା, ଧର୍ମ, ଜାତି, ସଂସ୍କୃତିର ଅନୈକ୍ୟ ମଧ୍ୟରେ ଦୃଷ୍ଟି ଓ ଦର୍ଶନର ଐକ୍ୟ ହିଁ ଅନ୍ତଃସଲିଳା ଫଲ୍‌ଗୁ ଧାରା ତୁଲ୍ୟ

ପ୍ରତ୍ୟେକ ଭାରତୀୟ ପ୍ରାଣକୁ ପ୍ଲାବିତ କରି ଛୁଟିଚାଲିଛି, ଦୂରକୁ ନିକଟ କରୁଛି, ପରକୁ ଆପଣାର କରୁଛି । ତେଣୁ ଯଥାର୍ଥରେ କୁହାଯାଇଛି ଯେ, 'From Kashmir to Kanyakumari India is one'.

ଇତିହାସରୁ ଜଣାଯାଏ ଯେ ଅତୀତରେ गृह-ବିବାଦର ସୁଯୋଗ ନେଇ ବହିଃଶତ୍ରୁ ଏ ଦେଶ ଅଧିକାର କରି ଶାସନ ଚଳାଇଥିଲେ । ମହମ୍ମଦ ଘୋରୀ, ବାବର ଶାହ, କିମ୍ବା ଇଂରେଜମାନଙ୍କ ଭାରତ ଅଧିକାର ପଛରେ ଏହିଭଳି ଜଳନ୍ୟାକର ଘଟଣାର ବହୁଚିତ୍ର ସ୍ମୃତି ଏବେ ମଧ୍ୟ ରହିଛି । ତେଣୁ ବାହାରେ ନିଜର ଏକ ସୁନ୍ଦର ଭାବମୂର୍ତ୍ତି ନିର୍ମାଣ କରିବାକୁ ହେଲେ ପ୍ରଥମେ ଆବଶ୍ୟକ ପାରସ୍ପରିକ ଐକ୍ୟବୋଧ ।

ସ୍ୱାଧୀନ ଭାରତ ତାହାର ସୃଷ୍ଟି ଲଗ୍ନରେ ହିଁ ଦ୍ୱିଖଣ୍ଡିତ ହୋଇ ଏକ ଦୟନୀୟ ଅବସ୍ଥାର ସମ୍ମୁଖୀନ ହୋଇଥିଲା । ଏହାର ପରିଣାମ ଯେ ଆଦୌ ସୁଖକର ହୋଇନାହିଁ, ଏହା ଆମେ ବର୍ତ୍ତମାନର ଅଭିଜ୍ଞତାରୁ କହିପାରିବା । ଓଳିତଳେ ଏକ ଶତ୍ରୁ ନେଇ କେଉଁ ରାଷ୍ଟ୍ର ବା ସୁଖୀ ହୋଇପାରିବ ? ତଥାପି ଭାରତ ନିଜର ଏକ ବଳିଷ୍ଠ ଭାବମୂର୍ତ୍ତି ବାହାରେ ପ୍ରତିଷ୍ଠା କରିବା ନିମନ୍ତେ ଉଦ୍ୟମ ଅବ୍ୟାହତ ରଖିଛି ।

କଥାରେ କହନ୍ତି, 'ଦେଶକେ ଫାଙ୍କ, ନଈକେ ବାଙ୍କ' । ଭାରତର ବିଭିନ୍ନ ଧର୍ମାବଲମ୍ବୀ ଏବଂ ଭିନ୍ନ ଭିନ୍ନ ଭାଷାଭାଷୀଙ୍କ ଆକୃତି ତଥା ପ୍ରକୃତିରେ ବହୁତ ପାର୍ଥକ୍ୟ ରହିଛି । ତଥାପି ଆମକୁ ଏହି ବିଚ୍ଛିନ୍ନତା ମଧ୍ୟରୁ ହିଁ ସାମଗ୍ରିକ ଐକ୍ୟ ସୃଷ୍ଟି କରିବାକୁ ପଡ଼ିବ । ଆମେ ଯେଉଁ ପ୍ରଦେଶରେ ବସବାସ କରୁଥାଉଁ ନା କାହିଁକି ଆମର ଭାଷା ଯାହା ହେଉନା କାହିଁକି, ଆମର ପ୍ରଥମ ପରିଚୟ—ଆମେ ଭାରତୀୟ । ଭାରତ ହିଁ ଆମର ସ୍ୱର୍ଗାଦପି ଗରୀୟସୀ ଜନ୍ମଭୂମି । ଆମର ଏଭଳି କୌଣସି କାର୍ଯ୍ୟ କରିବା ଅନୁଚିତ, ଯାହାଦ୍ୱାରା ଆମ ଜନନୀର ସମ୍ମାନ କ୍ଷୁଣ୍ଣ ହେବ ।

ରାଷ୍ଟ୍ରୀୟ-ଏକତା ସୃଷ୍ଟିରେ ପ୍ରଧାନ ସହାୟକ ହେଉଛି ରାଷ୍ଟ୍ରଭାଷା । ଇଂରେଜମାନେ ଏ ଦେଶରେ ଥିବାବେଳେ ଇଂରେଜୀ ହିଁ ସରକାରୀ ଭାଷା ଥିଲା । ସେମାନେ ବିଦାୟ ନେବାପରେ ହିନ୍ଦୀକୁ ରାଷ୍ଟ୍ରଭାଷାର ମର୍ଯ୍ୟାଦା ଦିଆଗଲା । ଦୁଃଖର କଥା ଯେ ଦାକ୍ଷିଣାତ୍ୟରେ ହିନ୍ଦୀର ରାଷ୍ଟ୍ରଭାଷାତ୍ୱକୁ ସ୍ୱୀକାର କରାଯାଇନାହିଁ । ସେମାନେ ଦୀର୍ଘକାଳରୁ ଏହା ବିରୁଦ୍ଧରେ ଆନ୍ଦୋଳନ ଚଳାଇ ଆସୁଛନ୍ତି । ହିନ୍ଦୀ-ଭାଷାଭାଷୀମାନେ ସଂଖ୍ୟା ଦୃଷ୍ଟିରୁ ଅଧିକ ହୋଇଥିବାରୁ ତଥା ଏହା ଅନ୍ୟାନ୍ୟ ଭାଷାଭାଷୀମାନଙ୍କର ସୁବିଧା ଦୁର୍ବୋଧ ହୋଇନଥିବାରୁ ଏହି ଭାଷାକୁ ରାଷ୍ଟ୍ରଭାଷାର ମର୍ଯ୍ୟାଦା ଦିଆଯାଇଛି । ସଂସ୍କୃତଭାଷା ଯାହା ଭାରତର ନିଜସ୍ୱ, ତାହା ବ୍ୟାକରଣକାଠିନ୍ୟ ହେତୁ ସମ୍ପ୍ରତି ପ୍ରାୟ ପରିତ୍ୟକ୍ତ ହୋଇଛି । ଏହାର ପୁନରୁଦ୍ଧାର ଏବଂ ରାଷ୍ଟ୍ରୀୟ ମର୍ଯ୍ୟାଦା ଦାନ ଏକ ସହଜସାଧ୍ୟ ବ୍ୟାପାର ନୁହେଁ । ଦକ୍ଷିଣାତ୍ୟର ଦ୍ରାବିଡ଼-ଭାଷା-ପରିବାରର ସମସ୍ତ ଭାଷା ଅନ୍ୟତ୍ର ଅତ୍ୟନ୍ତ ଦୁର୍ବୋଧ । ତେଣୁ ହିନ୍ଦୀକୁ ରାଷ୍ଟ୍ରଭାଷାର ମର୍ଯ୍ୟାଦା ଦିଆଯିବା ଅଯୌକ୍ତିକ ନୁହେଁ । ସାମ୍ପ୍ରତିକ କାଳରେ ଆମଠାରେ ସହନଶୀଳତାର

ଘୋର ଅଭାବ ଦେଖାଦେଇଛି । ବ୍ୟକ୍ତିଗତ ସ୍ୱାର୍ଥରକ୍ଷା ନିମନ୍ତେ ନ୍ୟସ୍ତ-ସ୍ୱାର୍ଥ ରାଜନୀତିଜ୍ଞଗଣ ସହଜରେ ଲୋକମାନଙ୍କୁ ଉତ୍ତେଜିତ କରିଦେଉଛନ୍ତି । ପରିଣାମରେ ଆମର ସଂହତି ଦୁର୍ବଳ ହୋଇଯାଉଛି ଏବଂ ବାହାରେ ଆମର ସୁନାମରେ ଆଞ୍ଚ ଆସୁଛି ।

ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ର । ଏହାର ପ୍ରତ୍ୟେକ ଅଧିବାସୀ ପ୍ରଥମେ ଭାରତୀୟ ଏବଂ ପରେ ହିନ୍ଦୁ କିମ୍ବା ମୁସଲମାନ । ମାତ୍ର ଧର୍ମକ୍ଷେତ୍ରରେ ମଧ୍ୟ ଏଇ ଅସହିଷ୍ଣୁତା ଆମକୁ ଧ୍ୱଂସ-ମୁଖକୁ ଟାଣିନେଉଛି । ହତ୍ୟା, ଗୃହଦାହ, ଲୁଣ୍ଠନରେ ଦେଶ ଭରିଯାଉଛି । ଧର୍ମ ନାମରେ ନିର୍ବିକାର ଚିତ୍ତରେ ଭାଇ ଭାଇର ଶିରଚ୍ଛେଦ କରୁଛି । ଏହାଦ୍ୱାରା ଆମର ଜାତୀୟ ସଂହତି ଯେ କେତେଦୂର ବିପନ୍ନ ହେଉଛି, ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ଯେ ପର୍ଯ୍ୟନ୍ତ ଏହି ବିଦ୍ୱେଷ ଦୂର ହୋଇ ଧାର୍ମିକ ଉଦାରତା ପ୍ରତିଷ୍ଠିତ ନ ହୋଇଛି, ସେ ପର୍ଯ୍ୟନ୍ତ ଦେଶ ନିରାପଦ ନୁହେଁ ।

ଧୂର୍ତ୍ତ, ଦେଶଦ୍ରୋହୀ, ଭଣ୍ଡ ଏବଂ ସ୍ୱାର୍ଥପର ରାଜନୀତିଜ୍ଞମାନେ ହିଁ ଜାତୀୟ ଐକ୍ୟ ପ୍ରତିଷ୍ଠାରେ ବାଧା ସୃଷ୍ଟି କରୁଛନ୍ତି । ବ୍ୟକ୍ତିଗତ ସ୍ୱାର୍ଥ ନିମନ୍ତେ ସେମାନେ ସବୁବେଳେ ପାଣିକୁ ଗୋଳିଆ କରି ରଖିବାରେ ଆଗ୍ରହୀ । ଏମାନଙ୍କୁ ଚିହ୍ନି ରଖିବାକୁ ହେବ । ଶିକ୍ଷାର ପ୍ରସାର, ଭଲମନ୍ଦ ବିଚାର କରିବାର ଶକ୍ତି ସୃଷ୍ଟି କରୁଥିବାରୁ ଏ ଦିଗରେ ପଦକ୍ଷେପ ନେବାକୁ ହେବ । ପାଠ୍ୟପୁସ୍ତକ ମାଧ୍ୟମରେ ପରସ୍ପରକୁ ଜାଣିବା, ବୁଝିବା ନିମନ୍ତେ ସୁଯୋଗ ସୃଷ୍ଟି କରିବାକୁ ପଡ଼ିବ ।

ଭାବର ଆଦାନ-ପ୍ରଦାନ, ମତ ବିନିମୟ, ସୌହାର୍ଦ୍ଦ୍ୟ ବୃଦ୍ଧିରେ ସହାୟକ ହୋଇଥିବାରୁ ବିଭିନ୍ନ ଭାଷାଭାଷୀଙ୍କ ମଧ୍ୟରେ ସାଂସ୍କୃତିକ ମତ ବିନିମୟ କରାଯିବା ଏକାନ୍ତ ଆବଶ୍ୟକ । ଲୋକ-ସାହିତ୍ୟଗୁଡ଼ିକରେ ଭାଷାଗତ ଦୂରତ୍ୱ ସତ୍ତ୍ୱେ ଅଦ୍ଭୁତ ସାମଞ୍ଜସ୍ୟ ବିଦ୍ୟମାନ । ଅନୁବାଦ ମାଧ୍ୟମରେ ଏଗୁଡ଼ିକର ପ୍ରସାର ଘଟିପାରିଲେ, ପ୍ରଥମେ ଆମେ ଆମର ସାମଞ୍ଜସ୍ୟଟିକୁ ହୃଦୟଙ୍ଗମ କରିପାରନ୍ତେ । ପାରସ୍ପରିକ ବୁଝାମଣାର ଅଭାବରୁ ଆଜି କେତେକ ପ୍ରଦେଶ କେନ୍ଦ୍ରଠାରୁ ବିଚ୍ଛିନ୍ନ ହେବା ନିମନ୍ତେ ଉଦ୍ୟମ କରୁଛନ୍ତି, କେହି କେହି ସ୍ପଷ୍ଟ ଭାବରେ ଏହା ପ୍ରକାଶ କରିଦେଉଛନ୍ତି ମଧ୍ୟ । ଦୀର୍ଘକାଳ ଧରି ଆସାମରେ ଅଶାନ୍ତି ଲାଗିରହିଛି । ପଶ୍ଚିମବଙ୍ଗର ଅବସ୍ଥା ମଧ୍ୟ ବିଶେଷ ଭଲ ନୁହେଁ । ପଞ୍ଜାବରେ 'ଖଲିସ୍ତାନ' ନାମକ ନୂତନ ପ୍ରଦେଶ ସୃଷ୍ଟିର ଧ୍ୱନି ଉଠାଯାଇଛି । ରାଜନୈତିକ ପରିବର୍ତ୍ତନ ହେତୁ ଦକ୍ଷିଣଭାରତର ଅବସ୍ଥା ଯେ କ'ଣ ହେବ, ତାହା ହଠାତ୍ କହିହେଉ ନାହିଁ । ଆଭ୍ୟନ୍ତରୀଣ ଅବସ୍ଥା ଯେତେବେଳେ ଏଭଳି ବିକ୍ଷୁବ୍ଧ, ସେତେବେଳେ ଆମର ସୀମାନ୍ତ ମଧ୍ୟ ସମ୍ପୂର୍ଣ୍ଣ ନିରାପଦ ନୁହେଁ । ଦୁଇ ପ୍ରବଳ ଶତ୍ରୁ କେବଳ ମାତ୍ର ସୁଯୋଗକୁ ଅପେକ୍ଷା କରି ବସିଛନ୍ତି । ଏଭଳି ବିପଜ୍ଜନକ ମୁହୂର୍ତ୍ତରେ ଆମର ପାରସ୍ପରିକ କଳହ ଯେ ଜାତୀୟ ସଂହତିକୁ ଅତ୍ୟନ୍ତ ଦୁର୍ବଳ କରି-ପକାଉଛି, ଏହା ସମସ୍ତେ ଉପଲବ୍ଧି କରିବା ଉଚିତ ।

ଦେଶ ମଧ୍ୟରେ ବହୁ ସମସ୍ୟା ରହିଛି । ସ୍ୱାଧୀନତା ଲାଭର ପଞ୍ଚଦଶଣ ବର୍ଷ ପରେ ମଧ୍ୟ ଆଜି ଦେଶରୁ ଅନ୍ନ ଆଉ ବସ୍ତ୍ରର ସମସ୍ୟା ଦୂର ହୋଇପାରିନାହିଁ । ନିରକ୍ଷରତାର ହାର ବଢ଼ି ଚାଲିଛି । ଜନସଂଖ୍ୟାର ଦ୍ରୁତ ବୃଦ୍ଧି, ବେକାରି, ଲାଞ୍ଚ, ମିଛ, ଭଣ୍ଡାମି ଦେଶକୁ ଏକ ସଙ୍କଟରେ ନେଇ ପହଞ୍ଚାଇଦେଇଛି । ଏଇ ମୁହୂର୍ତ୍ତରେ ଦେଶ ଅନୈକ୍ୟ ନୁହେଁ, ଏକ ସଙ୍କଳ୍ପବଦ୍ଧ ଐକ୍ୟଦ୍ୱାରା ହିଁ ଦେଶ ବିପଦମୁକ୍ତ ହୋଇପାରିବ । ପ୍ରତ୍ୟେକ ଭାରତୀୟର ଏଥି ନିମନ୍ତେ ଦାୟିତ୍ୱ ରହିଛି । ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଯେ ପର୍ଯ୍ୟନ୍ତ କାନ୍ଧକୁ କାନ୍ଧ ମିଳାଇ ନଚାଲିଛନ୍ତି ସେ ପର୍ଯ୍ୟନ୍ତ ସଂହତି ଆସିବ କେମିତି ? ମଧୁସୂଦନ ଦାସ ଲେଖିଛନ୍ତି—

"କେତିଏ ସନ୍ତାନ ଗୋଟିଏ ମୁଖରେ
ଜନନୀ ଜନନୀ ଡାକ,
ତୃଷ୍ଣାରେ କାତର ଗଗନକୁ ଚାହିଁ
ଯେସନେ ଡାକେ ଚାତକ ।"

ଓଡ଼ିଶା ନିମନ୍ତେ ସେ ଯେଉଁ ସ୍ୱପ୍ନ ଏକଦା ଦେଖିଥିଲେ, ଆଜି ଜାତିନନ୍ଦିଘୋଷ ଟାଣିନେବାପାଇଁ ସ୍ୱାର୍ଥକୁ ସମ୍ପୂର୍ଣ୍ଣରୂପେ ବିସର୍ଜନ ଦେଇ, ଭାରତୀୟମାନଙ୍କର ସମବେତ ପ୍ରଚେଷ୍ଟା ହିଁ ବିଶ୍ୱଦରବାରରେ ଭାରତର ଭାବମୂର୍ତ୍ତିକୁ ଉଜ୍ଜ୍ୱଳ କରିପାରିବ ।

## ଓଡ଼ିଶାର ଶିଳ୍ପ

ଶିଳ୍ପକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ; ଯଥା – ଯନ୍ତ୍ରଶିଳ୍ପ ଏବଂ କୁଟୀରଶିଳ୍ପ । ବଡ଼ ବଡ଼ କଳକାରଖାନାଗୁଡ଼ିକ ଯନ୍ତ୍ରଶିଳ୍ପର ଅନ୍ତର୍ଭୁକ୍ତ ଏବଂ ପରିବାରର ସହଯୋଗରେ ଅଳ୍ପ ପୁଞ୍ଜି ସାହାଯ୍ୟରେ, ଛୋଟ ଛୋଟ ଯନ୍ତ୍ରପାତି ସାହାଯ୍ୟରେ ଯାହା ପ୍ରସ୍ତୁତ କରାଯାଏ, ସେ ସବୁ କୁଟୀରଶିଳ୍ପର ଅନ୍ତର୍ଭୁକ୍ତ । ଭାରତ ପ୍ରଧାନତଃ ଏକ କୃଷିପ୍ରଧାନ ଦେଶ । ଏହାର ଜନସଂଖ୍ୟାର ଶତକଡ଼ା ଷାଠିଏ ଭାଗ ଏବେ ମଧ୍ୟ କୃଷିରେ ନିଯୁକ୍ତ । ଇଂରେଜ-ମାନେ ଏ ଦେଶକୁ ଆସିବା ପରେ ଏଠାରେ ଯନ୍ତ୍ରଶିଳ୍ପର ପ୍ରସାର ହୋଇଥିଲା । ଇଂରେଜମାନେ ଥିଲେ ବ୍ୟବସାୟୀ ଜାତି । ପ୍ରଥମେ ସେମାନେ ଏ ଦେଶରେ ପ୍ରଚୁର ଭାବରେ ମିଳୁଥିବା କଞ୍ଚାମାଲ ଜାହାଜଯୋଗେ ନିଜ ଦେଶକୁ ନେଇଯାଇ ସେଠାରେ ନାନା ଦ୍ରବ୍ୟ ପ୍ରସ୍ତୁତ କରୁଥିଲେ ଏବଂ ପରେ ସେସବୁକୁ ଏଠାକୁ ନେଇଆସି ଚଢ଼ା ଦାମ୍‌ରେ ବିକ୍ରି କରୁଥିଲେ । ସାମାନ୍ୟ ଲୁଣ ନିମନ୍ତେ ମଧ୍ୟ ଆମକୁ ଲିଭର୍‌ପୁଲ୍ ଉପରେ ନିର୍ଭର କରିବାକୁ ବାଧ୍ୟ କରାଯାଉଥିଲା । କ୍ରମଶଃ ଏ ଦେଶରେ ବ୍ରିଟିଶ୍ ସରକାରଙ୍କର ଶିଳ୍ପନୀତି ବିରୁଦ୍ଧରେ ଜନଜାଗରଣ ଦେଖାଗଲା ଏବଂ ସ୍ୱଦେଶୀ ଆନ୍ଦୋଳନ କାଳରେ ବ୍ରିଟିଶ୍ ଜିନିଷକୁ ପରିହାର

କଥାଗଲା। ତଥାପି ସ୍ଵାଧୀନତା ପୂର୍ବରୁ ଏ ଦେଶରେ ଖୁବ୍ କମ୍ କଳକାରଖାନା ନିର୍ମିତ ହୋଇଥିଲା। ଜାମସେଦ୍‌ପୁରଠାରେ ଗୋଟିଏ ମାତ୍ର ଇସ୍ପାତ କାରଖାନା ଏବଂ ଦେଶର ପଶ୍ଚିମ ଉପକୂଳରେ କେତୋଟି ମାତ୍ର ଲୁଗା କାରଖାନା ମଧ୍ୟରେ ଏ ଦେଶର ଯନ୍ତ୍ରଶିଳ୍ପ ସୀମାବଦ୍ଧ ଥିଲା। ମାତ୍ର ସ୍ଵାଧୀନତାଲାଭ ପରେ ଏ ଅବସ୍ଥା ବଦଳିଗଲା। ଦେଶକୁ ସବୁ ଦିଗରୁ ଆତ୍ମନିର୍ଭରଶୀଳ କରିବାକୁ ନୂତନ ନୂତନ କଳକାରଖାନାମାନ ସ୍ଥାପିତ ହେବାକୁ ଲାଗିଲା। ଏବେ ଦେଶରେ ଜାମସେଦ୍‌ପୁରକୁ ଛାଡ଼ି ରାଉରକେଲା, ଭିଲାଇ, ବୋକାରୋ, ଦୁର୍ଗାପୁର, ସାଲେମ୍ ପ୍ରଭୃତି ସ୍ଥାନରେ ନୂତନ ଇସ୍ପାତ୍ କାରଖାନାମାନ ସ୍ଥାପିତ ହୋଇଗଲାଣି ଏବଂ ଆହୁରି କିଛି ସ୍ଥାପିତ ହେବାର ଯୋଜନା ମଧ୍ୟ ରହିଛି। ଇସ୍ପାତ୍ ବ୍ୟତୀତ ଅନ୍ୟାନ୍ୟ କେତେକ କ୍ଷେତ୍ରରେ କଳକାରଖାନାମାନ ସ୍ଥାପିତ ହୋଇଛି ବା ହେଉଛି।

ସମଗ୍ର ଭାରତବର୍ଷରେ ଓଡ଼ିଶା ହେଉଛି ଏକ ଅନଗ୍ରସର ରାଜ୍ୟ। ତଥାପି ସାମ୍ପ୍ରତିକ କାଳରେ ଏହାକୁ ଶିଳ୍ପସମୃଦ୍ଧ କରିବା ନିମନ୍ତେ ନିରବଚ୍ଛିନ୍ନ ଉଦ୍ୟମ ହୋଇଚାଲିଛି। ଫଳରେ ସ୍ଥାପିତ ହୋଇଛି ରାଉରକେଲାରେ ଗୋଟିଏ ବିରାଟ ଇସ୍ପାତ କାରଖାନା, ସର୍ଜିପାଲିରେ ସୀସା କାରଖାନା, ହୀରାକୁଦ୍‌ଠାରେ ଆଲୁମିନିୟମ୍ କାରଖାନା, ବ୍ରଜରାଜନଗର, ରାୟଗଡ଼ା ଏବଂ ଚୌଦ୍ୱାରଠାରେ କାଗଜକଳ, ଆସ୍କାଠାରେ ଚିନିକାରଖାନା, ଚୌଦ୍ୱାରଠାରେ ଲୁଗାକଳ, ସୁନାବେଡ଼ାରେ ମିଗ୍ ଉଡ଼ାଜାହାଜ ତିଆରି କାରଖାନା, ମଞ୍ଚେଶ୍ୱରଠାରେ ରେଲଡବା ତିଆରି କାରଖାନା, ତାଲଚେରଠାରେ ସାର କାରଖାନା ଇତ୍ୟାଦି। ଏହାଛଡ଼ା ଭବିଷ୍ୟତରେ ଆହୁରି ଏକ ସାରକାରଖାନା ଏବଂ ଇସ୍ପାତ୍ କାରଖାନା ପ୍ରତିଷ୍ଠିତ ହେବାର ଯୋଜନା ମଧ୍ୟ ରହିଛି।

ଯନ୍ତ୍ରଶିଳ୍ପର ଦ୍ରୁତ ପ୍ରସାର ଦେଶରେ ବହୁ ନିଯୁକ୍ତିର ସୁଯୋଗ ସୃଷ୍ଟି କରେ। ଏହାଦ୍ୱାରା ଦେଶର ଆର୍ଥିକ ମାନଦଣ୍ଡ ଦୃଢ଼ ହୁଏ ଏବଂ ଆତ୍ମନିର୍ଭରଶୀଳତା ବୃଦ୍ଧି ପାଏ—ଏହା ଅବଶ୍ୟ ସତ୍ୟ। ମାତ୍ର ଏହାର କେତେକ ଅସୁବିଧା ମଧ୍ୟ ରହିଛି। ପ୍ରଥମତଃ, କଳକାରଖାନାର ଧୂଆଁରେ ଏବଂ ଏଥିରୁ ବାହାରୁଥିବା ଆବର୍ଜନାରେ ଦେଶର ବାୟୁମଣ୍ଡଳ ଓ ନଦୀର ଜଳ ଦୂଷିତ ହୋଇଯାଏ। ପରିଣାମରେ ନୂତନ ନୂତନ ରୋଗର ସୃଷ୍ଟି ହୁଏ। ଉଦାହରଣ ସ୍ୱରୂପ, ବରଗଡ଼ ଏବଂ ରାଜଗାଙ୍ଗପୁରଠାରେ ପ୍ରତିଷ୍ଠିତ ହୋଇଥିବା ସିମେଣ୍ଟ କାରଖାନାରୁ ଉତ୍ଥିତ ଧୂଳିଦ୍ୱାରା ସେ ଅଞ୍ଚଳରେ ଯକ୍ଷ୍ମାରୋଗର ପ୍ରସାର ହେଉଛି ବୋଲି ସ୍ୱାସ୍ଥ୍ୟତତ୍ତ୍ୱବିତ୍‌ମାନେ ମତ ପ୍ରକାଶ କରୁଛନ୍ତି। ଦ୍ୱିତୀୟତଃ, କାରଖାନା ଲୋକଙ୍କର ନୈତିକ ମାନଦଣ୍ଡକୁ ଖୁବ୍ ଦୁର୍ବଳ କରିଦିଏ। ଫଳରେ ଅସାଧୁତା, ଚୋରି, ଡକାୟତି ଇତ୍ୟାଦି ବୃଦ୍ଧି ପାଏ। ଶିଳ୍ପାଞ୍ଚଳରେ ବହୁ ସଂଖ୍ୟାରେ ଘଟୁଥିବା ହତ୍ୟାକାଣ୍ଡ ଇତ୍ୟାଦି ଘଟଣାରୁ ପୂର୍ବୋକ୍ତ ମତର ପୃଷ୍ଠପୋଷକତା ହୋଇଥାଏ। ତୃତୀୟତଃ, ଯନ୍ତ୍ରଶିଳ୍ପର ଦ୍ରୁତ ପ୍ରସାର କୃଷିକାର୍ଯ୍ୟରେ ଏକ ଅଚଳ ଅବସ୍ଥା ସୃଷ୍ଟି କରେ। ଏହି ସବୁ କାରଣରୁ ଜାତିର ପିତା ମହାତ୍ମା ଗାନ୍ଧୀ ଭାରତବର୍ଷର ଶିଳ୍ପାୟନ ନିମନ୍ତେ ଏହା ଅତ୍ୟନ୍ତ କ୍ଷତିକାରକ ହେବ ବୋଲି କହି କୁଟୀରଶିଳ୍ପର ପ୍ରସାର ଉପରେ ଗୁରୁତ୍ୱ ଦେଉଥିଲେ।

ବହୁ ପ୍ରାଚୀନ କାଳରୁ ଓଡ଼ିଶା ଉନ୍ନତ ଧରଣର କୁଟୀରଶିଳ୍ପ ନିମନ୍ତେ ଖ୍ୟାତି ଲାଭ କରିଥିଲା । ସେ କାଳରେ ଓଡ଼ିଶାର ସାଧବପୁଅମାନେ ବୋଇତରେ ଯଥେଷ୍ଟ ଶିଳ୍ପ-ସାମଗ୍ରୀ ନେଇ ଦେଶ-ବିଦେଶରେ ସେଗୁଡ଼ିକୁ ବିକ୍ରୟ କରିଆସୁଥିଲେ । ଓଡ଼ିଶାର ସୂକ୍ଷ୍ମବସ୍ତ୍ର ବାଉଁଶନଳୀରେ ରଖାଯାଇ ପଠାଯାଉଥିଲା । ଏବେ ମଧ୍ୟ ସମ୍ବଲପୁର, ମୟୂରଭଞ୍ଜ, କଟକ, ପୁରୀ ଅଞ୍ଚଳରେ କୁଟୀରଶିଳ୍ପ ରୂପରେ ବେଶ୍ ଉନ୍ନତ ଧରଣର ବସ୍ତ୍ର ପ୍ରସ୍ତୁତ କରାଯାଇପାରୁଛି । ବିଶେଷକରି ମୟୂରଭଞ୍ଜର ପାଟ ମଠା, ମାଣିଆବନ୍ଧର ଶାଢ଼ି ଏବଂ ବରପାଲି, ବରଗଡ଼, ସମ୍ବଲପୁର ଓ ସୋନପୁର ଅଞ୍ଚଳର ବିଶେଷ ଧରଣର ଶାଢ଼ି ଭାରତ ତଥା ଭାରତ ବାହାରେ ବେଶ୍ ଆଦୃତ ହେଉଛି । ଇଂରେଜ ସରକାରଙ୍କ ଏକଚାଟିଆ ବାଣିଜ୍ୟନୀତିର ପ୍ରଭାବରେ ମଝିରେ ଅବଶ୍ୟ ଏଗୁଡ଼ିକ ମୁମୂର୍ଷୁ ହୋଇଯାଇଥିଲା; ମାତ୍ର ସମ୍ପ୍ରତି ଏଗୁଡ଼ିକର ପୁନରୁଦ୍ଧାର କରାଯାଉଛି । ପିପିଲିର ଚାନ୍ଦୁଆ, ଛତ୍ରବାସ, ଆଉଟିଣି, ବଟୁଆ ଇତ୍ୟାଦି ତ ଏ ମଧ୍ୟରେ ବିଶ୍ୱପ୍ରସିଦ୍ଧ ହୋଇଗଲାଣି ।

ଓଡ଼ିଶା ହେଉଛି ପ୍ରକୃତିର ଅମୂଲ୍ୟ ଗନ୍ତାଘର । ପ୍ରକୃତି ଦେବୀଙ୍କର ଅକୃପଣ ହସ୍ତର ଦାନରେ ଓଡ଼ିଶା ସମୃଦ୍ଧ । 'ତମାଲ ତାଳ ବନରାଜି ନୀଳା' ପରିବେଷ୍ଟିତ ଓଡ଼ିଶାର ପ୍ରାକୃତିକ ସୌନ୍ଦର୍ଯ୍ୟ ଏବେ ମଧ୍ୟ ବିସ୍ମୟକର । ତାଳ, ନଡ଼ିଆ, ବେତ, ବାଉଁଶ, ସବାଇଘାସ ପ୍ରଭୃତି ସାଧାରଣ ଦ୍ରବ୍ୟ ସାହାଯ୍ୟରେ ବର୍ତ୍ତମାନ ଉତ୍କୃଷ୍ଟ ଦ୍ରବ୍ୟମାନ ପ୍ରସ୍ତୁତ ହୋଇ ସେଥିରେ ଓଡ଼ିଶାର ଚାହିଦା ପୂରଣ ହୋଇ କିଛି ବାହାରକୁ ପଠାଯାଇ ପ୍ରଶଂସିତ ହେଉଛି । ଅରଣ୍ୟଜାତ ଦ୍ରବ୍ୟ ଯଥା—କାଠ, ଶିଙ୍ଘ, ଲାଖ, ପଶୁଚମଡ଼ା ଓ ଅସ୍ଥି, ହାତୀଦାନ୍ତ, ବେତ, ବାଉଁଶ ପ୍ରଭୃତି କୁଟୀରଶିଳ୍ପ ନିମନ୍ତେ ବ୍ୟବହୃତ ହେଉଛି । ବିଶେଷକରି କଟକର ଉନ୍ନତ କଳାତ୍ମକ ରୁପା ତାରକସି କାମ ଇତିମଧ୍ୟରେ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛି । କଣ୍ଟିଲୋ ଓ ବାଲକାଟିର କଂସାବାସନ ଶିଳ୍ପ ମଧ୍ୟ କ୍ରମଶଃ ଲୋକପ୍ରିୟ ହେଉଛି । ପଥର ଖୋଦେଇକରି ସୁନ୍ଦର ସୁନ୍ଦର ମୂର୍ତ୍ତି ପ୍ରସ୍ତୁତ ହେଉଛି ଯାହାକି ବାହାରେ ଖୁବ୍ ଆଦୃତ ହେଉଛି ।

ମୋଟାମୋଟି ଭାବରେ ଦେଖିବାକୁ ଗଲେ, ଉଭୟ ଯନ୍ତ୍ର ଓ କୁଟୀରଶିଳ୍ପରେ ଓଡ଼ିଶା ଅଗ୍ରଗତି କରିଚାଲିଛି । ମାତ୍ର ପୂର୍ବରୁ ଯେମିତି କୁହାଯାଇଛି, ବିରାଟ ବିରାଟ କଳ-କାରଖାନାମାନ ନିର୍ମାଣ କରିବା ଅପେକ୍ଷା ଦେଶର ସର୍ବତ୍ର, ବିଶେଷକରି ଗ୍ରାମାଞ୍ଚଳରେ, ବହୁସଂଖ୍ୟକ ନୂତନ ନୂତନ କୁଟୀରଶିଳ୍ପର ପ୍ରସାରରେ ହିଁ ଦେଶର ପ୍ରକୃତ ମଙ୍ଗଳ ହେବ । କାରଣ ଏହାଦ୍ୱାରା ନିଯୁକ୍ତିର ପରିସର ଯଥେଷ୍ଟ ବୃଦ୍ଧି ପାଇ ବେକାରି ଦୂର ହେବ । ପେଟପାଇଁ ଲୋକଙ୍କୁ ଘର ଛାଡ଼ି ବାହାରକୁ ଯିବାକୁ ପଡ଼ିବ ନାହିଁ । ସାମାନ୍ୟ କଦଳୀ-ପଟୁକା କିମ୍ବା କଆପଟରେ କିପରି ପ୍ରସ୍ତୁତକରି ଯେ ସମ୍ମାନଜନକ ଭାବରେ ବଞ୍ଚାଯାଇପାରେ, ଏହି ତଥ୍ୟଟି ତେଣୁ ଲୋକଙ୍କ ନିକଟରେ ପହଞ୍ଚାଇଦେବାକୁ ପଡ଼ିବ । ଚିମ୍ନି ଧୂଆଁ କିମ୍ବା ଆବର୍ଜନାଦ୍ୱାରା ପରିବେଶ ଦୂଷିତ ହେବାର ଆଶଙ୍କା ରହିବ ନାହିଁ । ବିଶେଷକରି ଏହାଦ୍ୱାରା ଲୋକଙ୍କର ନୈତିକ ମାନଦଣ୍ଡ ବେଶ୍ ଦୃଢ଼ ରହିବ ।

ଶିଳ୍ପଜାତ ଦ୍ରବ୍ୟର ବିକ୍ରୟ ନିମନ୍ତେ ସେଗୁଡ଼ିକୁ ଦୂରଦୂରାନ୍ତକୁ ପଠାଇବା ନିମନ୍ତେ ସମବାୟ ସମିତିମାନ ସ୍ଥାପନ କରାଯାଇଛି । ଏହି ସମିତିମାନ ଉପଯୁକ୍ତ ମୂଲ୍ୟରେ ଶିଳ୍ପଜାତ ଦ୍ରବ୍ୟଗୁଡ଼ିକୁ କ୍ରୟ କରି କିଛି ଲାଭରେ ସେଗୁଡ଼ିକୁ ବାହାରକୁ ପଠାଉଛନ୍ତି । ଫଳରେ ଉତ୍ପାଦନକାରୀ ଘରେ ବସି ମଧ୍ୟ ଉପଯୁକ୍ତ ମୂଲ୍ୟରେ ତାହାର ଦ୍ରବ୍ୟଗୁଡ଼ିକୁ ବିକ୍ରି କରିପାରୁଛି । ଏହି ଧରଣର ଶିଳ୍ପ ନିମନ୍ତେ ଆର୍ଥିକ ସମସ୍ୟା ହେଉଛି ଏକ ବିରାଟ ବାଧା । ବ୍ୟାଙ୍କ୍‌ରୁ ଅଳ୍ପ ହାର ସୁଧରେ ଟଙ୍କା ଦିଆଯାଇ ଏ ଅସୁବିଧା କିଛି ମାତ୍ରାରେ ଦୂରକରାଯାଇଛି ।

ଯନ୍ତ୍ରଶିଳ୍ପ ବଦଳରେ କୁଟୀରଶିଳ୍ପହିଁ ଓଡ଼ିଶାର ରୂପ ବଦଳାଇଦେଇ ପାରିବ ବୋଲି ମନେକରାଯାଉଛି । କୁଟୀରଶିଳ୍ପ କୃଷିର ବାଧକ ନୁହେଁ । କାରଣ ଘରେ ରହି ଏ ଉଭୟ କାର୍ଯ୍ୟକୁ ପରିଚାଳନା କରାଯାଇପାରିବ । ତେଣୁ ଏ ଦିଗରେ ଉଭୟ ସରକାରୀ ଏବଂ ବେସରକାରୀ ସ୍ତରରେ ଯେତେ ଶୀଘ୍ର ସମୁଚିତ ପଦକ୍ଷେପ ନିଆଯାଇପାରିବ, ତାହା ଓଡ଼ିଶା ପାଇଁ ସେତେ ମଙ୍ଗଳପ୍ରଦ ହେବ ।

## ଓଡ଼ିଶାର ପ୍ରାକୃତିକ ସମ୍ପଦ

ସମୁଦ୍ରମେଖଳା ପର୍ବତ-କିରୀଟିନୀ ଶ୍ୟାମାୟମାନ ଘଞ୍ଚ ବନାନୀ-ପରିବେଷ୍ଟିତା ଜନନୀ ଉତ୍କଳ ପ୍ରକୃତିର ନିତ୍ୟ ଲୀଳାସ୍ଥଳୀ । ପ୍ରକୃତି ଦେବୀଙ୍କ ଅକୃପଣ ହସ୍ତର ଦାନରେ ଏହା ସମୃଦ୍ଧ ଏବଂ ଶ୍ରୀମଣ୍ଡିତ । ଏହାର ଭୂଗର୍ଭରେ ରହିଛି କୃଷ୍ଣହୀରକ (କୋଇଲା), ସୁବର୍ଣ୍ଣ, ସୀସକ, ଚୂନପଥର, ଲୁହାପଥରର ବିପୁଳ ଭଣ୍ଡାର । ନଦୀ, ହ୍ରଦ ପ୍ରଚୁର ମତ୍ସ୍ୟ-ସମ୍ପଦରେ ପରିପୂର୍ଣ୍ଣ । ଘଞ୍ଚ ଅରଣ୍ୟାନୀ ବହୁ ବହୁମୂଲ୍ୟ କାଷ୍ଠସମ୍ପଦଦ୍ୱାରା ଋଦ୍ଧିମନ୍ତ । ସମୁଦ୍ରର ଲବଣାକ୍ତ ଜଳ ଲବଣର ଅସରନ୍ତି ଭଣ୍ଡାର । ଏହାର ଭୂମି ଉର୍ବର ନଦୀବାହିତ ପଟୁମାଟିର ନିୟମିତ ସଞ୍ଚାରରେ; ନଦୀ ସୁନାବ୍ୟା ନିୟମିତ ବର୍ଷଣରେ । ତଥାପି ଭାରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଉତ୍କଳ ଦରିଦ୍ର । ଗ୍ରାସାଚ୍ଛାଦନ ନିମନ୍ତେ ଏହାର ସନ୍ତାନମାନଙ୍କୁ କଲିକତା, କାଳିମାଟି ଯିବାକୁ ପଡ଼ୁଛି । ଘର ଧନ ପରକୁ ଦେଇ ନିଜ ପ୍ରଦେଶରେ ଯୁବା ଓଡ଼ିଆ ଆଜି ପ୍ରବାସୀ ।

ଅତୀତର ଓଡ଼ିଆମାନେ ଏହାର ପ୍ରାକୃତିକ ସମ୍ପଦର ଉପଯୁକ୍ତ ବିନିଯୋଗ କରି ଭାରତ ମହାସାଗରରେ ନୌବହର ମେଲିଦେଉଥିଲେ । ସେମାନେ ଯାଉଥିଲେ ସିଂହଳ, ବାଲି, ସୁମାତ୍ରା, ବୋର୍ଣ୍ଣିଓ, ଚୀନ, ଏପରିକି ସୁଦୂର ଆଫ୍ରିକା ପର୍ଯ୍ୟନ୍ତ । ଧନରତ୍ନର ସୁଅ ବହି-ଆସୁଥିଲା । ତିଆରି ହେଉଥିଲା କୋଣାର୍କ, ପୁରୀ ମନ୍ଦିର, ଲିଙ୍ଗରାଜ ମନ୍ଦିର ପ୍ରଭୃତି ଅକ୍ଷୟ କୀର୍ତ୍ତି । ତାଙ୍କର ଉତ୍ତରାଧିକାରୀ ରୂପରେ ଆମ ଭାଗ୍ୟରେ ଲେଖାଯାଇଛି ଚିରଦାରିଦ୍ର୍ୟର ଲାଞ୍ଛନା ।

ଏତେ ପ୍ରାକୃତିକ ସମ୍ପଦର ଅଧିକାରୀ ହୋଇ ଓଡ଼ିଶା ଯେ ତଥାପି ଦାରିଦ୍ର୍ୟର ସୀମାରେଖା ତଳେ ଆତ୍ମଗୋପନ କରି ରହିଛି ଏହାହିଁ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟର କଥା । ଅଥଚ କେତେ କ୍ଷୁଦ୍ର ଦେଶଟିଏ ଜାପାନ ! ଆମଠାରୁ ଲୁହାପଥର ନେଇ, ସେଥିରେ ଇସ୍ପାତ୍ ତିଆରିକରି ତାକୁ ଅନ୍ୟାନ୍ୟ ଦେଶମାନଙ୍କୁ ବିକ୍ରୟ କରି କେତେ ବୈଦେଶିକ ମୁଦ୍ରା ଅର୍ଜନ କରୁଛି । ଓଡ଼ିଆମାନେ ଯେ ବୁଦ୍ଧିହୀନ, ସେ କଥା ମଧ୍ୟ ନୁହେଁ । ଅସଲ କଥା ଦୀର୍ଘକାଳର ପରାଧୀନତା ଆମ୍ଭମାନଙ୍କୁ ନିଷ୍କ୍ରିୟ କରିପକାଇଛି । ପ୍ରଥମେ ମୁସଲମାନ, ପରେ ମୋଗଲ ଏବଂ ମରହଟ୍ଟା ତଥା ଶେଷରେ ଇଂରେଜ ହାତରୁ କ୍ରମାଗତ ପାହାର ଖାଇ ଖାଇ ଗୋଟାଏ ବୀର ଜାତିର ମେରୁଦଣ୍ଡ ସମ୍ପୂର୍ଣ୍ଣରୂପେ ଭାଙ୍ଗିଯାଇଛି । ତେଣୁ ତା ଭିତରର ଉଦ୍‌ଯୋଗୀ-ପ୍ରବୃତ୍ତି ଦୁର୍ବଳ ହୋଇପଡ଼ିଛି । ଆଜି ଆମେ ଓଡ଼ିଶାରେ ବସି ପଞ୍ଜାବର ଗହମ, ଆନ୍ଧ୍ର ପ୍ରଦେଶର ଆମ୍ବ, କଦଳୀ, ଅଣ୍ଡା, ଏପରିକି ଲଙ୍କାମରିଚ ଉପରେ ପୁଣ୍ଣା ନିର୍ଭରଶୀଳ ହୋଇପଡ଼ୁଛୁ—ଅଥଚ ଓଡ଼ିଶାରୁ କ'ଣ ଏସବୁ ଚାହିଦା ମୁତାବକ ମିଳିପାରନ୍ତା ନାହିଁ ? କଥାରେ ଅଛି 'ଉଦ୍‌ଯୋଗିନଂ ପୁରୁଷସିଂହ ମୁପୈତି ଲକ୍ଷ୍ମୀ'—ଉଦ୍‌ଯୋଗୀ ପୁରୁଷ ହିଁ ଲକ୍ଷ୍ମୀଙ୍କର ଆଶୀର୍ବାଦ ଲାଭକରିଥାଏ । ଯେକୌଣସି ଉପାୟରେ ତାହାର ହୃତ ଆତ୍ମବିଶ୍ୱାସ ଫେରାଇ ଅଣାଯାଇପାରିଲେ ହିଁ ଓଡ଼ିଶାର ମଙ୍ଗଳ ହେବ ।

ଓଡ଼ିଶାରେ ପ୍ରଚୁର ଖଣିଜ ସମ୍ପଦ ରହିଛି—ବିଶେଷକରି ତାଳଚେର ଓ ବ୍ରଜରାଜନଗର ଅଞ୍ଚଳର କୋଇଲା, କେନ୍ଦୁଝର ଦଇତାରି ଅଞ୍ଚଳର ଲୁହାପଥର, ସର୍ଗିପାଲି ଅଞ୍ଚଳର ସୀସା, ସୁନ୍ଦରଗଡ଼-ସମ୍ବଲପୁର ଅଞ୍ଚଳର ଅଭ୍ର, ବଲାଙ୍ଗୀର ଅଞ୍ଚଳର ମାଙ୍ଗାନିଜ, ବକ୍‌ସାଇଟ୍, କୋରାପୁଟ ଅଞ୍ଚଳର ସୁନା—ଏସବୁର ଉପଯୁକ୍ତ ବିନିଯୋଗ ଅଦ୍ୟାବଧି ହୋଇପାରିନାହିଁ । ଆମର ମାତ୍ର ଗୋଟିଏ ଇସ୍ପାତ୍ କାରଖାନା; ତାହା ମଧ୍ୟ ଖୁବ୍ ବେଶି ଦିନର ନୁହେଁ । ଏ ପର୍ଯ୍ୟନ୍ତ ତେଣୁ ଆମେ ନାମମାତ୍ର ମୂଲ୍ୟରେ ଲୁହାପଥର ବିଦେଶକୁ ରପ୍ତାନି କରୁଛୁ ଏବଂ ଚଢ଼ା ଦରରେ ଅନ୍ୟତ୍ର ଇସ୍ପାତ୍ କିଣୁଛୁ । ବର୍ତ୍ତମାନ ଯୁଗକୁ ଲୌହଯୁଗ କୁହାଯାଇପାରେ । ସଭ୍ୟତାର ଅଗ୍ରଗତିରେ ଲୌହର ଏକ ବିଶେଷ ଅବଦାନ ରହିଛି । ଏହି ପରିପ୍ରେକ୍ଷୀରେ ଓଡ଼ିଶାରେ ଯଦି ଆଉ ଅନ୍ତତଃ ଗୋଟିଏ ଇସ୍ପାତ କାରଖାନା ପ୍ରତିଷ୍ଠା କରାଯାଇପାରନ୍ତା, ତେବେ ଓଡ଼ିଶାର ଆର୍ଥିକ ମାନ ଯଥେଷ୍ଟ ଦୃଢ଼ ହୋଇପାରନ୍ତା । ଇସ୍ପାତ୍ କାରଖାନାକୁ କେନ୍ଦ୍ର କରି ଅନେକ ଛୋଟ ଛୋଟ କାରଖାନା ମଧ୍ୟ ସୃଷ୍ଟି ହୁଅନ୍ତା । ଏହାଦ୍ୱାରା ନିଯୁକ୍ତିର ପରିସର ଅନାୟାସରେ ବୃଦ୍ଧି ପାଆନ୍ତା ।

ଓଡ଼ିଶାର ସୁନ୍ଦରଗଡ଼, ସମ୍ବଲପୁର, କେନ୍ଦୁଝର, ବଲାଙ୍ଗୀର, କୋରାପୁଟ ଅଞ୍ଚଳରେ ପ୍ରଚୁର ଚୂନପଥର ରହିଛି । ଓଡ଼ିଶାରେ ବର୍ତ୍ତମାନ ଥିବା ମାତ୍ର ଦୁଇଟି ସିମେଣ୍ଟ କାରଖାନା ତାହା ନିମନ୍ତେ ଯଥେଷ୍ଟ ନୁହେଁ । ସିମେଣ୍ଟର ଚାହିଦା ବର୍ତ୍ତମାନ କିଛି କମ୍ ନୁହେଁ । କୋଠାବାଡ଼ି ନିର୍ମାଣ ନିମନ୍ତେ ଆମକୁ ଭାରତର ଅନ୍ୟ ପ୍ରାନ୍ତରୁ ଏପରିକି ଭାରତ ବାହାରୁ

ମଧ୍ୟ ସିମେଣ୍ଟ ଆମଦାନି କରିବାକୁ ପଡ଼ୁଛି । ଯଦି ଆଉ ଦୁଇ ତିନୋଟି କାରଖାନା ବସାଯାଇପାରନ୍ତା, ତେବେ ଆମେ ନିଜ ଗୃହିଦା ମେଣ୍ଟାଇ ବାହାରକୁ ମଧ୍ୟ ରପ୍ତାନି କରିପାରନ୍ତେ । ଇସ୍ପାତ ଶିଳ୍ପ ନିମନ୍ତେ ମାଙ୍ଗାନିଜ ଏକ ଅପରିହାର୍ଯ୍ୟ ବସ୍ତୁ । ଏହା ସୁଦ୍ଧା ଓଡ଼ିଶାରେ ପ୍ରଚୁର ପରିମାଣରେ ରହିଛି । ଦେଶର ଶିଳ୍ପାୟନ ନିମନ୍ତେ କୋଇଲାର ଅବଦାନ କିଛି କମ୍ ନୁହେଁ । ଆମର କୋଇଲା ଖଣିଗୁଡ଼ିକରୁ ପ୍ରଚୁର କୋଇଲା ମିଳିପାରିବ । ଦ୍ୱିତୀୟ କଥା ହେଉଛି, ଆମର ଅରଣ୍ୟ-ସମ୍ପଦର ସୁବିନିଯୋଗ । ବନଜାତଦ୍ରବ୍ୟ ଯଥା ଲାଖ, ଝୁଣା, ଶାଳମଞ୍ଜି, ମହୁଲ, ବେତ, ବାଉଁଶ, ସବାଇଘାସ, ପଶୁଚର୍ମ ଓ ଶିଙ୍ଗ, ବିଭିନ୍ନ ପ୍ରକାରର କାଠ, ବହୁ ଦୁର୍ଲଭ ଔଷଧିଗୁଳ୍ମ ହରିଡ଼ା, ବାହାଡ଼ା, ଅଁଳା ପ୍ରଭୃତି ଫଳ ପ୍ରତ୍ୟେକ ଗୋଟିଏ ଗୋଟିଏ ଶିଳ୍ପ ରୂପରେ ପ୍ରତିଷ୍ଠାଲାଭ କରିବାନିମନ୍ତେ ଯୋଗ୍ୟ । ବିଶେଷକରି ବାଉଁଶ ଓ କାଠଦ୍ୱାରା କାଗଜ କାରଖାନାମାନ ପ୍ରତିଷ୍ଠା କରାଯାଇପାରେ । ଏହାଦ୍ୱାରା ମଧ୍ୟ ବୈଦେଶିକ ମୁଦ୍ରା ଅର୍ଜନ କରାଯାଇପାରେ । ମୋଟାମୋଟି ଭାବରେ ତେଣୁ କୁହାଯାଇପାରେ ଯେ, ଦେଶର ଶିଳ୍ପାୟନ ଦ୍ୱାରାହିଁ ପ୍ରାକୃତିକ ସମ୍ପଦର ସତ୍ ବିନିଯୋଗ କରାଯାଇପାରିବ । କଳକାରଖାନା ପ୍ରତିଷ୍ଠା ନିମନ୍ତେ ଦେଶ ବାହାରୁ ଏବଂ ଭିତରୁ ବିଶେଷଜ୍ଞମାନଙ୍କର ସହାୟତା ତଥା ଆର୍ଥିକ ସାହାଯ୍ୟ ମଧ୍ୟ ଲୋଡ଼ାଯାଇପାରେ ।

ଜଳସମ୍ପଦ ହେଉଛି ତୃତୀୟ ପ୍ରାକୃତିକ ଶକ୍ତି । ଓଡ଼ିଶା ଏକ ନଦୀବହୁଳ ରାଜ୍ୟ । ବର୍ଷାଦିନରେ ପ୍ରଚୁର ବର୍ଷା ଦ୍ୱାରା ଏଗୁଡ଼ିକ ମଧ୍ୟରୁ ଅନେକେ କୂଳ ଲଙ୍ଘନକରି ବହି-ଯାଆନ୍ତି ଏବଂ ବନ୍ୟାଦ୍ୱାରା ରାଜ୍ୟପାଇଁ ବିଶେଷ ସଙ୍କଟ ସୃଷ୍ଟି କରନ୍ତି । ପୂର୍ବେ ଏଥିମଧ୍ୟରୁ ଅଧିକାଂଶ ଗଭୀର ଥିବାରୁ ପରିବହନ ନିମନ୍ତେ ଜଳପଥକୁ ହିଁ ଅଧିକ ଉପଯୋଗୀ ମନେ-କରାଯାଉଥିଲା । ତେବେ ଅପଚୟ ହୋଇଯାଉଥିବା ଏହି ଜଳରାଶିକୁ ଯଦି କୌଣସି ଉପାୟରେ ସଞ୍ଚୟକରି ରଖାଯାଇପାରନ୍ତା ତେବେ ଜଳର ଚାହିଦା ସମୟରେ ତାକୁ ବ୍ୟବହାର କରି ରାଜ୍ୟକୁ ଶସ୍ୟ-ଶ୍ୟାମଳା କରି ରଖାଯାଇପାରନ୍ତା । ପ୍ରୟୋଜନ ମୁତାବକ ଜଳ ଛାଡ଼ିବାର ବ୍ୟବସ୍ଥା କରାଯାଇପାରିଲେ ନଦୀଗୁଡ଼ିକ ମଧ୍ୟ ବର୍ଷସାରା ସୁନାବ୍ୟ ହୋଇ ପାରନ୍ତା । ସବୁଠାରୁ ବଡ଼କଥା, ଜଳବିଦ୍ୟୁତ୍ କେନ୍ଦ୍ରମାନ ସୁଦ୍ଧା ସ୍ଥାପନ କରାଯାଇ ପ୍ରଚୁର ବିଦ୍ୟୁତ୍‌ଶକ୍ତି ମିଳନ୍ତା । ସମୁଦ୍ର ତଥା ନଦୀଗର୍ଭରେ ପ୍ରକୃତି ସଂଗ୍ରହ କରି ରଖିଛି ମାନବ ନିମନ୍ତେ ପ୍ରଚୁର ଖାଦ୍ୟଭଣ୍ଡାର । ଏବେ ଅବଶ୍ୟ ଗଭୀର ସମୁଦ୍ରରୁ ମାଛ ଧରାଯାଇ ତାକୁ ବିଦେଶକୁ ରପ୍ତାନି କରାଯାଉଛି; ମାତ୍ର ଏହି ବ୍ୟବସ୍ଥାର ବ୍ୟାପକ ପ୍ରସାର ଲୋଡ଼ା ।

ଏହିଭଳି ଭାବରେ ବିଚାରକରି ଦେଖିଲେ, ଜଣାଯିବ ଯେ, ଯେତେହେଲେ ସାଂପ୍ରତିକ କାଳରେ ଶିଳ୍ପାୟନ ହେଉଛି ପ୍ରଗତିର ପ୍ରତୀକ ଏବଂ ପ୍ରାକୃତିକ ସମ୍ପଦର ସୁବ୍ୟବହାର ବ୍ୟତୀତ ଶିଳ୍ପାୟନ ଏକ ସୁଦୂରପ୍ରସାରୀ କଳ୍ପନାମାତ୍ର; ତେଣୁ ଏହାର ଉପଯୁକ୍ତ ବିନିଯୋଗପୂର୍ବକ ଦେଶର ରୂପ ବଦଳାଇବାକୁ ଉଦ୍ୟମ ହେବା ଆବଶ୍ୟକ ।

# ଓଡ଼ିଶାର ବନ୍ୟା-ସମସ୍ୟା ଓ ତା'ର ପ୍ରତିକାର

ଓଡ଼ିଶା ଏକ ନଦୀମାତୃକ ପ୍ରଦେଶ । ମହାନଦୀ, କାଠଯୋଡ଼ି, ବଂଶଧାରା, ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ, ବ୍ରାହ୍ମଣୀ, ବୈତରଣୀ ପ୍ରଭୃତି ଦୀର୍ଘ ଏବଂ ଅତି ପବିତ୍ର ନଦୀ ବ୍ୟତୀତ ଆହୁରି ବହୁ ଛୋଟବଡ଼ ନଦୀ ଏହି ପ୍ରଦେଶରେ ପ୍ରବାହିତ । ମୌସୁମିବାୟୁର ପ୍ରଭାବରେ ବର୍ଷା ଆରମ୍ଭ ହେଲାମାତ୍ରେ ନଦୀବକ୍ଷ ଫୁଲିଉଠେ । ପ୍ରଚଣ୍ଡ ଆକ୍ରୋଶରେ ଗର୍ଜନ କରି ଏହି ସବୁ ନଦୀ କୂଳ ଲଙ୍ଘନ କରି ବହିଯାଏ । ଶସ୍ୟଶ୍ୟାମଳ ଦିଗନ୍ତବିସ୍ତୃତ କ୍ଷେତ ବାଲିଚର ହୋଇଯାଏ । ଘରଦ୍ୱାର, ପଶୁପକ୍ଷୀ ଏପରିକି କେତେ ଯେ ମଣିଷ କୁଆଡ଼େ ଭାସିଯାନ୍ତି, ତାହାର ପତ୍ତା ମିଳେ ନାହିଁ । ମାତ୍ର କେଇଟି ଦିନରେ ସମ୍ପନ୍ନ ଗୃହସ୍ଥ ଦାଣ୍ଡର ଭିକାରି ହୋଇଯାଏ । ବନ୍ୟାପରେ ସୁଦ୍ଧା ରକ୍ଷା ମିଳେନାହିଁ । ଖାଦ୍ୟାଭାବ, ଜର୍ଜରିତ ଆଶ୍ରୟର ଅଭାବ ସାଙ୍ଗକୁ ମାଡ଼ିଆସେ ହଇଜା, ଟାଇଫଏଡ୍ ଜ୍ୱର, ବାତଜ୍ୱର ପ୍ରଭୃତି ମହାମାରୀ ରୂପରେ । ବହୁ ପ୍ରାଣ ଝରିଯାଏ ଅକାଳରେ, ଅସହାୟ ଭାବରେ । ବନ୍ୟାର ପ୍ରଭାବ ପୁଣି ସୁଦୂରପ୍ରସାରୀ । ପ୍ରଳୟଙ୍କରୀ ବନ୍ୟା ଖାଦ୍ୟସମ୍ଭାରକୁ ପୂର୍ଣ୍ଣରୂପରେ ନଷ୍ଟ କରିଥିବାରୁ, ଦେଶରେ ଦୁର୍ଭିକ୍ଷ ଅବଶ୍ୟମ୍ଭାବୀ ହୋଇଉଠେ । ରୋଗ, ଖାଦ୍ୟାଭାବ, ଆଶ୍ରୟହୀନତା ପ୍ରଭୃତି ସତ୍ତ୍ୱେ ଯେଉଁମାନେ କୌଣସିମତେ ବଞ୍ଚିଥାନ୍ତି, ସେମାନେ ମଧ୍ୟ ଜୀବନ୍ମୃତ ହୋଇଯାଆନ୍ତି । ଅଥଚ ଅତୀତରେ ଆର୍ଯ୍ୟମାନେ ନଦୀକୂଳରେ ହିଁ ବସତି ସ୍ଥାପନ କରିବାକୁ ଶ୍ରେୟଃ ମଣୁଥିଲେ । ବିଶ୍ୱର ପ୍ରାଚୀନସଭ୍ୟତା ସବୁ ନଦୀକୂଳରେ ହିଁ ଗଢ଼ିଉଠିଥିଲା । ସିନ୍ଧୁସଭ୍ୟତା, ମିଶରୀୟ ସଭ୍ୟତା, ଗ୍ରୀସୀୟସଭ୍ୟତା ଏସବୁର ସାକ୍ଷ୍ୟ ଦିଏ ।

ବନ୍ୟା ଓଡ଼ିଶାର ଏକ ଚିରନ୍ତନ ସମସ୍ୟା । ବିଶେଷକରି ମହାନଦୀ, କାଠଯୋଡ଼ି, ବ୍ରାହ୍ମଣୀ, ବୈତରଣୀ ଏବଂ ସୁବର୍ଣ୍ଣରେଖା ପ୍ରଭୃତି ନଦୀମାନଙ୍କର ବନ୍ୟା ବାରମ୍ବାର ଏ ଦେଶର ଆର୍ଥିକ ସ୍ଥିତିକୁ ଦୋହଲାଇଦେଇଛି । ୧୯୫୫, ୧୯୬୧, ୧୯୭୧, ୧୯୭୭ ଏବଂ ୧୯୮୨ ମସିହାରେ ଏଠାରେ ଯେଉଁ ପ୍ରବଳ ବନ୍ୟା ହୋଇଥିଲା, ତାହାର କରୁଣ ସ୍ମୃତି ବଞ୍ଚିଥିବା ପର୍ଯ୍ୟନ୍ତ କାହାର ମନରୁ ଲିଭିପାରିବ ନାହିଁ । ବିଜ୍ଞାନର ଅଗ୍ରଗତି ସତ୍ତ୍ୱେ ଏହାର ଭୟାବହତା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି ।

ଏହାର କାରଣ ଅନୁସନ୍ଧାନ କଲେ ଜଣାଯାଏ ଯେ, ପୂର୍ବେ ନଦୀଗୁଡ଼ିକ ବିଶେଷ ଗଭୀର ଥିବାରୁ ବହୁ ପରିମାଣରେ ଜଳ ସହଜରେ ସମୁଦ୍ରକୁ ଚାଲିଯାଇ ପାରୁଥିଲା । ବର୍ତ୍ତମାନ ନଦୀଗର୍ଭଗୁଡ଼ିକ ତଥା ମୁହାଣସବୁ କ୍ରମଶଃ ପୋତିହୋଇଯିବା ଫଳରେ ନଦୀର ଜଳଧାରଣ ଏବଂ ଜଳ ନିଷ୍କାସନ ଶକ୍ତି ସମ୍ପୂର୍ଣ୍ଣ ହ୍ରାସ ପାଇଛି । ବଡ଼ ବଡ଼ ନଦୀଗୁଡ଼ିକରେ କେବଳ ବର୍ଷା

ଗ୍ରୀଷ୍ମମାସ ଗ୍ରୁଡ଼ିଦେଲେ ଆଉ ଜଳ ରହୁନାହିଁ । ବର୍ଷାକାଳରେ ଯେଉଁ ଜଳ ହଠାତ୍ ଆସୁଛି ସେ ସବୁ ପ୍ରାୟ ସମତଳ ନଦୀଗର୍ଭରେ ରହି ନ ପାରି ବାହାରକୁ ଉଛୁଳିପଡୁଛି । ଏହା ବ୍ୟତୀତ ଅରଣ୍ୟ-ସମ୍ପଦର ଅପବ୍ୟବହାର ଦ୍ୱାରା ଜଳବାୟୁ ମଧ୍ୟ ପରିବର୍ତ୍ତିତ ହୋଇଗଲାଣି । ନଦୀକୂଳର ଅରଣ୍ୟ ମୃତ୍ତିକାକ୍ଷୟ ରୋଧ କରିଥାଏ । ଅରଣ୍ୟସବୁ ନଷ୍ଟ ହୋଇଯିବା ଫଳରେ ବନ୍ୟାଜଳ ଅବାଧରେ କୂଳ ଲଙ୍ଘନ କରି ବହିଯାଉଛି । ସମସ୍ତେ ଆଶା କରିଥିଲେ ଯେ, ହୀରାକୁଦ ବନ୍ଧ ନିର୍ମିତ ହୋଇଯିବା ପରେ ଓଡ଼ିଶାର ବନ୍ୟା-ସମସ୍ୟାର ଆଶାଜନକ ସମାଧାନ ହୋଇଯିବ । ମାତ୍ର କାର୍ଯ୍ୟତଃ ତାହା ହୋଇନାହିଁ; ବରଂ ଏହାର ଉତ୍କଟତା ବୃଦ୍ଧି ପାଇଛି । ନଦୀଗର୍ଭ ଏବଂ ମୁହାଣ ପୋତିହୋଇଯିବା ହିଁ ହେଉଛି ଏହାର ଏକମାତ୍ର କାରଣ ।

ଓଡ଼ିଶାକୁ ସମୃଦ୍ଧ କରିବାକୁ ହେଲେ, ଏହି ସମସ୍ୟାର ଆଶୁ ସମାଧାନ ଆବଶ୍ୟକ । ଜଳ ହେଉଛି ବିପୁଳ ଶକ୍ତିର ଉତ୍ସ । ଏହାକୁ ପୋଷାମନାଇପାରିଲେ, ତାହା ଆମର ଅଶେଷ କଲ୍ୟାଣ ସାଧନ କରିବ । ଆମର ଜଳସମ୍ପଦର ଅଧିକାଂଶ ଅପଚୟ ହୋଇଯାଏ । ସ୍ଥାନେ ସ୍ଥାନେ ଗଭୀର ଜଳଭଣ୍ଡାରମାନ ନିର୍ମାଣ କରି ଉଦ୍‌ବୃତ୍ତ ଜଳକୁ ସଂଚୟ କରି ରଖିଲେ, ଜଳର ଅଭାବ ସମୟରେ ତାହାକୁ ବ୍ୟବହାର କରି ଫସଲ ଉପୁଜାଇ ହେବ । କେନାଲ ସାହାଯ୍ୟରେ ଜଳକୁ ଦେଶର ଦୂରତମ ପ୍ରାନ୍ତକୁ ମଧ୍ୟ ସହଜରେ ନେଇଯାଇହେବ । ଦ୍ୱିତୀୟତଃ ଏହାର ସାହାଯ୍ୟରେ ବିଦ୍ୟୁତ୍‌ଶକ୍ତି ସଂଗ୍ରହ କରାଯାଇପାରିବ । ଦେଶର ଶିଳ୍ପାୟନ ନିମନ୍ତେ ବିଦ୍ୟୁତ୍‌ଶକ୍ତି ଅପରିହାର୍ଯ୍ୟ । କଥାରେ କହନ୍ତି—"ଜଳ ବିହୁନେ ସୃଷ୍ଟି ନାଶ, ଜଳ ବହୁଳେ ସୃଷ୍ଟି ନାଶ ।" କୌଣସି ପଦାର୍ଥର ସମ୍ପୂର୍ଣ୍ଣ ଅଭାବ ଯେଉଁଭଳି ହାନିକାରକ, ତାହାର ବାହୁଲ୍ୟ ମଧ୍ୟ ତତୋଧିକ କ୍ଷତିକାରକ । ସଞ୍ଚୟ ଏବଂ ସୁଷମ ବଣ୍ଟନଦ୍ୱାରା ହିଁ ଏହି ସମସ୍ୟାର ସମାଧାନ କରାଯାଇପାରିବ ।

ନଦୀଗର୍ଭଗୁଡ଼ିକ କ୍ରମଶଃ ପୋତିହୋଇଯିବା ଫଳରେ ଏହାର ଜଳଧାରଣ ଏବଂ ପରିବହନ ଶକ୍ତି ହ୍ରାସପାଉଛି । ଏହାକୁ ଗଭୀର କରିବା ନିମନ୍ତେ ବିଜ୍ଞାନର ସାହାଯ୍ୟ ନିଆଯାଇପାରେ । ଖୋଦନଦ୍ୱାରା ଏହାକୁ ନିୟମିତ ଭାବରେ ଗଭୀର କରି ରଖିବାର ବ୍ୟବସ୍ଥା କରାଯାଇ-ପାରିଲେ ଜଳ କୂଳ ଲଙ୍ଘନ କରିବାର ଆଶଙ୍କା ବହୁପରିମାଣରେ ଦୂରୀଭୂତ ହୁଅନ୍ତା । ଏହା ବ୍ୟତୀତ ବନ୍ଧବାଡ଼, ଘାଇଗୁଡ଼ିକର ନିୟମିତ ମରାମତି ମଧ୍ୟ ଏକ ଅପରିହାର୍ଯ୍ୟ କର୍ତ୍ତବ୍ୟ । ନଦୀର ଉଭୟ ପାର୍ଶ୍ୱରେ ଯଦି ଅରଣ୍ୟ ସୃଷ୍ଟି କରାଯିବାର ଏକ ବ୍ୟାପକ ଯୋଜନା ହାତକୁ ନିଆଯାଇ ତାହାକୁ କାର୍ଯ୍ୟକାରୀ କରାଯାଏ, ତେବେ ଏହାଦ୍ୱାରା ମୃତ୍ତିକାକ୍ଷୟକୁ ତ ରୋକାଯାଇପାରିବ, ଅରଣ୍ୟ ଅତିକ୍ରମ କରି ନଦୀଜଳ ସହଜରେ ବାହାରକୁ ବହିଯାଇ ପାରିବ ନାହିଁ ।

ବନ୍ୟାଜଳବାହିତ ପଟ୍ଟମାଟି, ଯାହାକି ନଦୀର ଉଭୟ ପାର୍ଶ୍ୱରେ ଅଜାଡ଼ି ହୋଇଯାଏ, ତାହାହିଁ ହେଉଛି ବନ୍ୟାର ଏକମାତ୍ର ଉପକାରୀ ଗୁଣ । ଏହି ପଟ୍ଟମାଟି ଅତ୍ୟନ୍ତ ଉର୍ବର ହୋଇଥିବାରୁ ଚାଷୀମାନେ ଦୁଇ ତିନି ବର୍ଷର ଫସଲ ଏକାବେଳକରେ କାଟନ୍ତି ବୋଲି ଶୁଣାଯାଏ । ଏଥିରେ ହୁଏତ କିଛି ସତ୍ୟତା ରହିଛି, ମାତ୍ର ବନ୍ୟାରେ ଯେତେ କ୍ଷତି ହୁଏ ତାହା ତୁଳନାରେ ଏ ଲାଭ କିଛି ନୁହେଁ ବୋଲି କହିବାକୁ ହେବ । ସାମୟିକ ଧନକ୍ଷୟକୁ ବନ୍ୟାର ସାବଧାନତାଦ୍ୱାରା ହୁଏତ ଜନକ୍ଷୟ କିଛି ପରିମାଣରେ ରୋକାହୋଇ ପାରିବ; ମାତ୍ର ବନ୍ୟା କବଳରୁ ସହଜରେ ରକ୍ଷା କରି ହେବନାହିଁ ।

## ଛାତ୍ରସମାଜର ଦାୟିତ୍ୱ

ଛାତ୍ର-ଜୀବନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏବଂ ସ୍ମରଣୀୟ ସମୟ । ସଂସାରର ଜଟିଳତାଠାରୁ ବହୁଦୂରରେ ରହି ଛାତ୍ର ଏହି ସମୟରେ ଜୀବନ ସମ୍ପର୍କରେ ନାନା ପ୍ରକାରର କଳ୍ପନା-ଜଳ୍ପନା କରିବାକୁ ଆରମ୍ଭ କରେ; ସୁନେଲି ସ୍ୱପ୍ନ ମଧ୍ୟରେ ଜୀବନକୁ ବାନ୍ଧିବାକୁ ଚେଷ୍ଟାକରେ । ସଂସାରର କୌଣସି ଦାୟିତ୍ୱ ତା' ଉପରେ ନ ଥିବାରୁ ମୁକ୍ତ ଆକାଶର ବିହଙ୍ଗ ଭଳି ମନ ତା'ର ଘୁରିବୁଲେ । ହାତରେ ଥାଏ ତା'ର ଅଖଣ୍ଡ ସ୍ୱାଧୀନତା । ଛାତ୍ର ହିସାବରେ ସେ ସମାଜର ଶ୍ରଦ୍ଧା ଓ ସହାନୁଭୂତି ପାଇଥାଏ । ତେଣୁ ଜୀବନର ଏହି ଅଂଶଟି ତା'ର ଅତ୍ୟନ୍ତ ସ୍ମରଣୀୟ ବୋଲି କୁହାଯାଇପାରେ ।

ତେବେ ସମାଜର ଯେଉଁଭଳି ତା' ପାଇଁ ଦାୟିତ୍ୱ ଅଛି, ତା'ର ମଧ୍ୟ ଠିକ୍ ସେଇଭଳି ସମାଜ ନିମନ୍ତେ କିଛି କର୍ତ୍ତବ୍ୟ ରହିଛି । ପ୍ରଥମ କଥା ହେଉଛି, ଶୃଙ୍ଖଳିତ ଏହି ଜୀବନଯାପନ ସମାଜ ନିମନ୍ତେ ଶୁଭଙ୍କର ହୋଇଥାଏ । ଛାତ୍ରମାନେ ନୀତିନିୟମ ଏବଂ ଶୃଙ୍ଖଳା ତ୍ୟାଗକରି ଯଦି ଯଥେଚ୍ଛା ଜୀବନଯାପନ କରନ୍ତି, ତେବେ ସାମାଜିକ ଜୀବନ ବିଶୃଙ୍ଖଳ ହୋଇଯିବ । ଶୃଙ୍ଖଳା ଭାଙ୍ଗିବାର ଏହି ପ୍ରବୃତ୍ତି ଛାତ୍ରର ସାରା ଜୀବନ ପାଇଁ ରହିଯିବ ଏବଂ ପରବର୍ତ୍ତୀ କାଳରେ ସେ ସମାଜ ପାଇଁ ଏକ ସମସ୍ୟା ରୂପେ ଦେଖାଦେବ ।

କୁହାଯାଏ ଯେ, 'ଛାତ୍ରାଣାଂ ଅଧ୍ୟୟନଂ ତପଃ'—ଅର୍ଥାତ୍, ଛାତ୍ରପାଇଁ ଅଧ୍ୟୟନ ହେଉଛି ତପସ୍ୟା ସ୍ୱରୂପ । ପ୍ରାଚୀନ ଗୁରୁକୁଳମାନଙ୍କରେ ଛାତ୍ରମାନେ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ କାୟିକ ପରିଶ୍ରମ ମଧ୍ୟ କରିବାକୁ ଶିକ୍ଷା କରୁଥିଲେ, ଯାହା ଗୃହସ୍ଥାଶ୍ରମରେ ସେମାନଙ୍କୁ ସହାୟତା କରୁଥିଲା । ଆଜିର ଅଧ୍ୟୟନରେ ଶାରୀରିକ ଶ୍ରମର ସ୍ଥାନ ନାହିଁ; ମାତ୍ର ତାହା ବ୍ୟତୀତ ମନୁଷ୍ୟ ଆଳସ୍ୟପରାୟଣ ହୋଇଯାଏ । ମନରେ ନାନା ପ୍ରକାରର କୁଚିନ୍ତା ଆସି ପ୍ରବେଶ କରେ । ତେଣୁ ଏଥିରୁ ମୁକ୍ତି ପାଇବା ନିମନ୍ତେ ଛାତ୍ର ଶକ୍ତି ଅନୁରୂପ ଶାରୀରିକ

ଶ୍ରମ କରିବା ଏକାନ୍ତ ଆବଶ୍ୟକ ।

ଛାତ୍ରସମାଜ ଦେଶର ଭବିଷ୍ୟତ । ଦେଶ ଓ ଜାତିର ପରିଚାଳନା ଦାୟିତ୍ୱ ସେମାନଙ୍କୁ ବହନ କରିବାକୁ ପଡ଼ିବ । ସେଥିପାଇଁ ସେମାନଙ୍କୁ ପୂର୍ବରୁ ପ୍ରସ୍ତୁତ ରହିବାକୁ ହେବ । ଦୁର୍ବଳ ଲୋକ କୌଣସି ଦାୟିତ୍ୱ ବହନ କରିପାରେନାହିଁ । ତେଣୁ ମାନସିକତା ଦୃଷ୍ଟିରୁ ଛାତ୍ରମାନଙ୍କୁ ଦୃଢ଼ ହେବାକୁ ପଡ଼ିବ । ଛାତ୍ର ଜୀବନ ହେଉଛି ଭବିଷ୍ୟତର ପ୍ରସ୍ତୁତିପର୍ବ । ଆଜିର ଛାତ୍ର କାଲି ହେବ ମନ୍ତ୍ରୀ, ପ୍ରଶାସକ, ଅଧ୍ୟାପକ, ଡାକ୍ତର, ଇଞ୍ଜିନିୟର । ବୈଜ୍ଞାନିକରୂପରେ ସେ କେତେ ନୂତନ ଉଦ୍‌ଭାବନ କରିବ । ଡାକ୍ତର ରୂପରେ ସେ କେତେ ମଉଳା ମୁହଁରେ ହସ ଫୁଟାଇବ । ଇଞ୍ଜିନିୟର ରୂପରେ ସେ ନିର୍ମାଣ କରିଚିବ କେତେ କୋଠାବାଡ଼ି, ପୋଲ ପ୍ରଭୃତି । ଏ ଦାୟିତ୍ୱ କିଛି ସାମାନ୍ୟ ନୁହେଁ । ଏଥିପାଇଁ ତାକୁ ପୂର୍ବରୁ ସଚେତନ ରହିବାକୁ ପଡ଼ିବ । ଉତ୍ତମ ରୂପରେ ଶିକ୍ଷା ଗ୍ରହଣ କରିବାକୁ ପଡ଼ିବ । ଶିକ୍ଷାକ୍ଷେତ୍ରରେ ତା'ର ଅଭିନିବେଶ ହିଁ ତାକୁ ଭବିଷ୍ୟତ ଜୀବନରେ ସଫଳତା ଆଣିଦେବ ।

ଛାତ୍ର ଅଖଣ୍ଡ ସ୍ୱାଧୀନତାର ଅଧିକାରୀ । ମାତ୍ର ମନେରଖିବାକୁ ହେବ, ସ୍ୱାଧୀନତାର ଅର୍ଥ ସ୍ୱେଚ୍ଛାଚାରିତା ନୁହେଁ । ଏହାଦ୍ୱାରା ବରଂ ଦାୟିତ୍ୱ ବଢ଼ିଯାଏ । ଏହା ସର୍ବଦା ସ୍ମରଣ ରଖି କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ପଡ଼ିବ । ଛାତ୍ର ଯେକୌଣସି କାର୍ଯ୍ୟ କରୁନା କାହିଁକି, ପ୍ରଥମରୁ ତାକୁ ଚିନ୍ତା କରିନେବାକୁ ପଡ଼ିବ—'ଏ କାର୍ଯ୍ୟ ମୋର କରିବା ଉଚିତ ତ ? ଏହା କରିବାଦ୍ୱାରା ସମଗ୍ର ଛାତ୍ରସମାଜର ସୁନାମ ଉପରେ ଆଞ୍ଚ ଆସିବ ନାହିଁ ତ ? କିମ୍ବା ମୁଁ ଏହା କଲେ ଛାତ୍ରସମାଜ କେଉଁ ଭାବରେ ଲଭବାନ୍ ହେବ ?' ଧୀର ଚିତ୍ତ, ସ୍ଥିର ମସ୍ତିଷ୍କରେ ଏହା ବିଚାର କରି ତାହାପରେ ସେ କାର୍ଯ୍ୟରେ ପ୍ରବୃତ୍ତ ହୋଇପାରେ । ଆଜିକାଲି ସାମାଜିକ ଜୀବନରେ ସହନଶୀଳତାର ଘୋର ଅଭାବ ଦେଖାଯାଉଛି । ପିତା ନିଜର ସମ୍ମାନ ନେଇ ବ୍ୟସ୍ତ । ମାତା ନିଜର ତ୍ୟାଗପାଇଁ ଗର୍ବିତା । ସନ୍ତାନ ବ୍ୟସ୍ତ ନିଜର ବଢ଼ିଉଠୁଥିବା ବୟସ ଏବଂ ଭାବପ୍ରବଣତାକୁ ନେଇ । ଶିକ୍ଷକ ସ୍ୱୀକୃତ ନିଜର ଜ୍ଞାନ ଓ ପ୍ରଜ୍ଞାର ଅହଂକାରରେ ଆବଦ୍ଧ । ଏ ସମସ୍ତଙ୍କ ମଧ୍ୟରେ ଏକ ସମନ୍ୱୟ ରହିବା ଆବଶ୍ୟକ । ପିତାମାତାଙ୍କର ସନ୍ତାନ ପ୍ରତି ଯେଉଁଭଳି ଦାୟିତ୍ୱ ରହିଛି, ସନ୍ତାନର ପିତାମାତାଙ୍କ ପ୍ରତି ମଧ୍ୟ ଠିକ୍ ସେହିଭଳି କର୍ତ୍ତବ୍ୟ ରହିଛି । ଶିକ୍ଷକ ଏବଂ ଛାତ୍ରଙ୍କର ପାରସ୍ପରିକ ଦାୟିତ୍ୱବୋଧ ଏକ ଚିରନ୍ତନ ସତ୍ୟ । ମାତ୍ର ଏ କ୍ଷେତ୍ରରେ ଛାତ୍ରର ଦାୟିତ୍ୱ ଟିକିଏ ଅଧିକ ଏବଂ ଗୁରୁତ୍ୱପୂର୍ଣ୍ଣ ମଧ୍ୟ । କାରଣ ପରିବାରପ୍ରତି, ସମାଜପ୍ରତି ତାହାର ଦାୟିତ୍ୱ ବହୁମୁଖୀ । ଯେହେତୁ ସେ ବୟସରେ ସାନ, ଅଭିଜ୍ଞତାରେ ଊଣା; ତେଣୁ ବୟସ୍କମାନେ ଆଶା କରନ୍ତି ସେ ନିର୍ବିବାଦରେ ସେମାନଙ୍କର ଆଦେଶକୁ ପାଳନ କରିନେଉ । ବୟସ୍କମାନେ ଏହା ଆଶା କରନ୍ତି ନିଜ ବାଲ୍ୟକାଳକୁ ମନେପକାଇ । ମାତ୍ର ସମୟ ପରିବର୍ତ୍ତିତ ହେଉଛି । ତା' ସହିତ ବଦଳୁଛି ମୂଲ୍ୟବୋଧ । ବଂଶଗତ ଧାରାରେ ଏକଲବ୍ୟ କିମ୍ବା ଆରୁଣି ଭଳି ବ୍ୟବହାର ଆଶା କରିବା ଏକାନ୍ତ ଅନୁଚିତ । ଆଶା କରାଯାଏ ଯେ ପରିବର୍ତ୍ତିତ ପରିସ୍ଥିତି ସହିତ ନିଜକୁ ଖାପ

ବିଷୟରେ ନେଇ ଅଭିଭାବକମାନେ ପୁଣି ନିଜର ଦୃଷ୍ଟିକୋଣର ପରିବର୍ତ୍ତନ ଘଟାଇବେ ।

ଛାତ୍ରମାନେ ରାଜନୀତି ସହିତ ସମ୍ପୃକ୍ତ ହୋଇ ନାନାପ୍ରକାର ଦାମାଜିକ ବିଶୃଙ୍ଖଳା ସୃଷ୍ଟି କରୁଛନ୍ତି ବୋଲି କୁହାଯାଉଛି । ଛାତ୍ର ପକ୍ଷରେ ରାଜନୀତି ଯେ ଅତ୍ୟନ୍ତ ହାନିକାରକ, ଏଥିରେ ସନ୍ଦେହ ନାହିଁ । ତେବେ ଯେହେତୁ ସେମାନେ ସମାଜର ଏକ ବଳିଷ୍ଠ ଅଙ୍ଗ ଏବଂ ରାଜନୀତି ସମାଜରୁ ହିଁ ସୃଷ୍ଟି, ତେଣୁ ସେମାନଙ୍କୁ ଏଥିରୁ ଦୂରେଇ ରଖିହେବ ନାହିଁ । ପ୍ଲେଟୋ, ସକ୍ରେଟିସ୍ଙ୍କ ଯୁଗ ଚାଲିଯାଇଛି । ବର୍ତ୍ତମାନ ରାଜନୀତି ହୋଇଛି ଯାବତୀୟ ପଙ୍କିଳତାର ଏକ ଗଭୀର ଉତ୍ସ । କୌଣସିମତେ ଯଦି ଛାତ୍ରସମାଜକୁ ଏଥିରୁ ଦୂରେଇ ରଖିହୁଅନ୍ତା, ତେବେ ତାହାହିଁ ହୁଅନ୍ତା ସମାଜ ପାଇଁ ମଙ୍ଗଳପ୍ରଦ । କେବଳ ଏହି କାରଣରୁ ହିଁ ହୁଏତ ପ୍ରାଚୀନକାଳରେ ଜୀବନର ପ୍ରଥମ ପଚିଶବର୍ଷ ପର୍ଯ୍ୟନ୍ତ ଛାତ୍ରମାନଙ୍କୁ ମାନବ-ସମାଜଠାରୁ ବହୁଦୂରରେ ଅରଣ୍ୟର ନିର୍ଜନ ପ୍ରଦେଶରେ ଗୁରୁକୁଳମାନଙ୍କରେ କଟାଇବାକୁ ହେଉଥିଲା ।

ଛାତ୍ରଜୀବନ ହେଉଛି ଶିକ୍ଷାର ଅଭିଜ୍ଞତା ସଂଗ୍ରହର କାଳ । ଏହି ଅଭିଜ୍ଞତା ପୁଣି ଏକାନ୍ତ ଭାବରେ ଜ୍ଞାନାପେକ୍ଷକ । ତେଣୁ ଲକ୍ଷ୍ୟକୁ ଏକମୁଖୀ କରି ଛାତ୍ର ଯଦି ନିଜର ଦାୟିତ୍ୱ ଉତ୍ତମରୂପେ ପାଳନ କରିପାରେ, ତେବେ ତା'ର ଭବିଷ୍ୟତ ଜୀବନ ହେବ ଶୁଭପ୍ରଦ । ଦେଶର ସାମ୍ପ୍ରତିକ ରୁଗ୍ଣ ଅବସ୍ଥାରେ ଶୃଙ୍ଖଳିତ, ସଂଯତ ଏବଂ ଶୁଭଙ୍କର ଛାତ୍ରଗୋଷ୍ଠୀହିଁ ତାହାକୁ ସୁସ୍ୱାସ୍ଥ୍ୟ ଫେରାଇ ଦେଇପାରିବେ । ଯେଉଁ ଛାତ୍ର ତାହାର ଛାତ୍ରତ୍ୱକୁ କେବଳ ଭୋଗବିଳାସ, ଆନନ୍ଦଉଲ୍ଲାସ, ଦାୟିତ୍ୱହୀନତାର ଅନୁମତିପତ୍ର ରୂପେ ବ୍ୟବହାର କରେ, ତା'ର ତ ନିଜକୁ ଦେବାପାଇଁ କିଛି ନଥାଏ—ସେ ଅପରକୁ ଦେବ କ'ଣ ?

## ନାଗରିକର ଦାୟିତ୍ୱ

ମନୁଷ୍ୟ ଏକାନ୍ତ ଭାବରେ ଏକ ସାମାଜିକ ଜୀବ । ସମାଜ ବାହାରେ ତାହାର ସ୍ଥିତି ଅତ୍ୟନ୍ତ ଅସ୍ୱାଭାବିକ । ସାମାଜିକ ଜୀବନ ହେଉଛି ମାନବକୁ ସ୍ରଷ୍ଟାଙ୍କର ମଙ୍ଗଳମୟ ଦାନ; ତେଣୁ କବି ଲେଖିଛନ୍ତି, "Society, Friendship and Love, divinely bestowed upon men" । ବ୍ୟକ୍ତିକୁ ନେଇ ସମାଜ । ଅନେକ ବ୍ୟକ୍ତି ଯେତେବେଳେ ଗୋଟିଏ ସ୍ଥାନରେ ବାସ କରି ରହିଛନ୍ତି, ସେତେବେଳେ ସେମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଦେବା ସ୍ୱାଭାବିକ । ଏହାକୁ ଯଦି ବଢ଼ିବାକୁ ଛାଡ଼ିଦିଆଯାଏ, ତେବେ ସାମାଜିକ ଜୀବନ ନିତାନ୍ତ ବିଶୃଙ୍ଖଳ ହୋଇପଡ଼ିବ । ଏହି ଅନୈକ୍ୟ ମଧ୍ୟରେ ଐକ୍ୟର ସନ୍ଧାନ କରିବାକୁ ପଡ଼ିବ । ଏକର ମତକୁ ଅନ୍ୟର ଗ୍ରହଣୀୟ ରୂପ ଦେବାକୁ ପଡ଼ିବ । ଏହା କିନ୍ତୁ ବଡ଼ ସହଜ କାମ ନୁହେଁ ।

ସହନଶୀଳତା ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଏକ ଅତ୍ୟନ୍ତ ଉପାଦେୟ ଗୁଣ । ଏହାଦ୍ୱାରା ହିଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସମସ୍ୟାମାନଙ୍କର ସମାଧାନ କରାଯାଇପାରେ । ବ୍ୟକ୍ତିକୈନ୍ଦ୍ରିକ-ସ୍ୱାର୍ଥପର ଚିନ୍ତାଧାରା ସମାଜ ନିମନ୍ତେ ଅତ୍ୟନ୍ତ କ୍ଷତିକାରକ । ସାମ୍ପ୍ରତିକ-କାଳରେ ଅବଶ୍ୟ ଏହା ଅତ୍ୟନ୍ତ ବୃଦ୍ଧିପାଇଛି । କୁହାଯାଇଛି ମଧ୍ୟ 'ଆପେ ବଞ୍ଚିଲେ ବାପର ନାଁ', କିମ୍ବା 'First yourself; second yourself and always yourself' । ନିଜେ ବଞ୍ଚି ଅପରକୁ ବଞ୍ଚିବାର ସୁଯୋଗ ଦେବାରେ ଯେଉଁ ସାର୍ଥକତା ରହିଛି ସେ ବିଷୟଟି ବୁଝିପାରିଲେ ଆମର ସାମାଜିକ ସମସ୍ୟା ଅନେକ କମିଯାଆନ୍ତା ।

ସମ୍ପ୍ରତି ନାଗରିକର ଦାୟିତ୍ୱ ବହୁଗୁଣରେ ବଢ଼ିଯାଇଛି । ସଂଘର୍ଷମୟ ଜୀବନକ୍ଷେତ୍ରରେ ତାକୁ ସଂଗ୍ରାମଶୀଳ ହୋଇ ଆପଣାର ବାଟ କାଟି ଆଗେଇବାକୁ ପଡ଼ୁଛି । ତେଣୁ ନାଗରିକର ପ୍ରଥମ କାର୍ଯ୍ୟ ହେଉଛି ଦାୟିତ୍ୱ-ସଚେତନତା । ତାକୁ କ'ଣ କରିବାକୁ ହେବ, କେଉଁ କାର୍ଯ୍ୟ ତାହାର ଆଦୌ କରଣୀୟ ନୁହେଁ—ଏ ବିଷୟରେ ଏକ ସ୍ପଷ୍ଟ ଧାରଣା ତାହାର ରହିଥିବା ଆବଶ୍ୟକ । ନିଜ ପରିବାର ପ୍ରତି ତାହାର ଯେଉଁଭଳି ଦାୟିତ୍ୱ ରହିଛି, ସମାଜ ପ୍ରତି ଥିବା ତାହା'ର ଦାୟିତ୍ୱ ତହିଁରୁ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ପ୍ରତ୍ୟେକ କାର୍ଯ୍ୟ କରିବା ପୂର୍ବରୁ ତାହାର ତେଣୁ ଚିନ୍ତା କରିବା ଉଚିତ, ଏଭଳି କାର୍ଯ୍ୟଦ୍ୱାରା ଅପରର କୌଣସି କ୍ଷତି ହେବ କି ନାହିଁ । କିଛି ଲୋକ ଅଛନ୍ତି ଯେଉଁମାନେ ନିଜ ଖିଆଲରେ ସର୍ବଦା ବ୍ୟସ୍ତ ରହିଥାନ୍ତି । ନିଜ ପରିବେଶରେ କ'ଣ ଘଟିଯାଉଛି ସେଥିପ୍ରତି ସେମାନଙ୍କର ଥିଲେହେଲେ ଦୃଷ୍ଟି ନଥାଏ । ସେମାନେ ହୁଏତ ଅପରର କ୍ଷତି କରନ୍ତି ନାହିଁ; ମାତ୍ର ନିଜେ ନୀରବ ରହିବା ଦ୍ୱାରା ଯାହା ସେମାନେ ଚାହାନ୍ତି ନାହିଁ ତାହା ଘଟିଯାଏ । ଏଭଳି ଦୃଷ୍ଟିକୋଣ ସମାଜ-ଜୀବନ ପକ୍ଷରେ ଏକାନ୍ତ ହାନିକାରକ । ବାଟରେ କଣ୍ଟାଟିଏ ପଡ଼ିଥିଲେ ନିଜେ ସେଥିରୁ ରକ୍ଷାପାଇଗଲେ ପଥିକର ଦାୟିତ୍ୱ ଶେଷ ହୋଇଯାଏ ନାହିଁ; ବରଂ ଅନ୍ୟମାନେ ଯେମିତି ତା' ଦ୍ୱାରା କ୍ଷତିଗ୍ରସ୍ତ ନ ହୁଅନ୍ତି, ତାହା ଦେଖିବା ମଧ୍ୟ ତାହାର ଦାୟିତ୍ୱ ଭିତରକୁ ଆସିଯାଏ । ଏ କ୍ଷେତ୍ରରେ 'ସବ୍ ସେ ଚୁପ୍ ଭଲ' ନୀତି ସର୍ବଥା ପରିତ୍ୟାଜ୍ୟ ।

ସ୍ୱାଧୀନତା ପରେ ନାଗରିକର ଦାୟିତ୍ୱ ବିଶେଷ ଭାବରେ ବଢ଼ିଯାଇଛି । ତାହାକୁ ନିଜର ଶାସନର ବ୍ୟବସ୍ଥା କରିବାକୁ ପଡ଼ୁଛି । ଶିକ୍ଷା, ସ୍ୱାସ୍ଥ୍ୟ, ଖାଦ୍ୟପେୟର ବ୍ୟବସ୍ଥା, ଧନଜୀବନର ନିରାପତ୍ତା ଇତ୍ୟାଦି ବିଷୟରେ ତାହାକୁ ନିଜକୁ ଚିନ୍ତା କରିବାକୁ ପଡ଼ୁଛି । ଭୋଟପ୍ରଥାର ପ୍ରଚଳନ ଫଳରେ ପାଞ୍ଚବର୍ଷ ନିମନ୍ତେ ନାଗରିକକୁ ନିଜର ପ୍ରତିନିଧି ନିର୍ବାଚନ କରିବାକୁ ପଡ଼ୁଛି । ବ୍ୟାପାରଟି କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ପ୍ରତିନିଧି ନିର୍ବାଚନରେ କୌଣସି ତ୍ରୁଟି ହେଲେ ଶାସନଗତ ବିଶୃଙ୍ଖଳା ଦେଶକୁ ରସାତଳଗାମୀ କରିବ । ଯେଉଁ ଦାୟିତ୍ୱ ତାହା ହସ୍ତରେ ନ୍ୟସ୍ତ ହୋଇଛି, ତାହାର ଗୁରୁତ୍ୱ ବୁଝି ସାବଧାନ ଭାବରେ କାମ କରିବାକୁ ପଡ଼ିବ । କଥାରେ କହନ୍ତି—

"ଚଷା ମୁଣ୍ଡିଲେ ବରଷେ,
ମଣିଷ ଫୁଟିଲେ ସୁରୁଷେ ।"

ପାଞ୍ଚବର୍ଷ ମଧ୍ୟରେ ଯେଉଁ କ୍ଷତି ହେବ, ତାକୁ ସୁଧାରିବାକୁ ହୁଏତ ପରବର୍ତ୍ତୀ ଦଶବର୍ଷ ମଧ୍ୟ ପର୍ଯ୍ୟାପ୍ତ ହେବ ନାହିଁ । ସ୍ୱାଧୀନତା ଯେଉଁ ଦାୟିତ୍ୱ ନାଗରିକକୁ ଦେଇଛି, ତାହାକୁ ସୁସ୍ଥୁରୂପେ ପାଳନ କରିବାରେ ହିଁ ତାହାର ସାର୍ଥକତା । ସ୍ୱେଚ୍ଛାଚାରୀ ଭାବରେ ନିଜ ଇଚ୍ଛାଅନୁସାରେ କାର୍ଯ୍ୟକରିବା ସ୍ୱାଧୀନତାର ଅପବ୍ୟବହାର ବ୍ୟତୀତ ଅନ୍ୟ କିଛି ନୁହେଁ ।

'ଦେଶ ମୋର ଓ ମୁଁ ଦେଶର'—ଏହିଭଳି ଗୋଟିଏ ଭାବ ସର୍ବଦା ନାଗରିକର ଆଦର୍ଶ ରୂପେ ଗୃହୀତ ହେବା ଆବଶ୍ୟକ । ଏହି ଭାବଧାରା ହିଁ ତାକୁ ଏଭଳି କୌଣସି କାର୍ଯ୍ୟରେ ପ୍ରବୃତ୍ତ କରାଇବ ନାହିଁ, ଯାହାଦ୍ୱାରା ଦେଶର ଏବଂ ଜାତିର ଭାବମୂର୍ତ୍ତି ବାହାରେ କ୍ଷୁଣ୍ଣହେବ । ମାତୃଭୂମିର ସାହିତ୍ୟ ସଂସ୍କୃତି ନିମନ୍ତେ ସର୍ବଦା ଏକ ଅହଂକାର ତାହା ମନରେ ଜାଗରୂକ ରହିବା ଆବଶ୍ୟକ । ମାତୃଭୂମିର ଉନ୍ନତିରେ ହିଁ ତାହାର ଉନ୍ନତି । ମାତୃଭାଷାର ଗୌରବରେ ହିଁ ତାହାର ଗୌରବ—ଏ ବିଷୟଟି ତାହାକୁ ସର୍ବଦା ମନେରଖିବାକୁ ହେବ । କବି ଗଙ୍ଗାଧର ସେ କାଳରେ ଲେଖିଥିଲେ :

"ମାତୃଭୂମି ମାତୃଭାଷାରେ ମମତା
ଯା ହୃଦେ ଜନମି ନାହିଁ,
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ ।"

ଏହା ଯେ କେତେ ଅଭ୍ରାନ୍ତ, ତାହା ଆଜିର ସଭ୍ୟ ଏବଂ ଉନ୍ନତ ଦେଶମାନଙ୍କୁ ଦେଖିଲେ ଜଣାପଡ଼ିବ । ଦେଶର ସାର୍ବଭୌମତ୍ୱ ଯେତେବେଳେ ବିପନ୍ନ ହେବ, ସେତେବେଳେ ନାଗରିକର ଦାୟିତ୍ୱ ବଢ଼ିଯିବ । ଧନ ଦେଇ, ପ୍ରୟୋଜନ ପଡ଼ିଲେ ଜୀବନ ଦେଇ ମାତୃଭୂମିର ମର୍ଯ୍ୟାଦା ରକ୍ଷା କରିବାକୁ ପଡ଼ିବ ।

ସାମାଜିକ କ୍ଷେତ୍ରରେ ପ୍ରତ୍ୟେକଙ୍କର ହିତକାମନା ନାଗରିକର ଧ୍ୟେୟ ହେବା ଆବଶ୍ୟକ । ଶକ୍ତି ଅନୁସାରେ ଅପରକୁ ସାହାଯ୍ୟ କରିବା ଏକ ସତ୍‌ନାଗରିକର କର୍ତ୍ତବ୍ୟ । ଏହା ତାହାର ସେବା ମନୋବୃତ୍ତି । ଏଥିରେ ସ୍ୱାର୍ଥ ଗୌଣ ଏବଂ ସାଧାରଣ ହିତଚିନ୍ତା ପ୍ରାଧାନ୍ୟ ପାଇଥାଏ । କେହି କେହି କହିପାରନ୍ତି, "Charity begins at home ।" – ଅର୍ଥାତ୍ ପରିବାର ଯେହେତୁ ସମାଜର ଅଙ୍ଗ, ତେଣୁ ପ୍ରତ୍ୟେକେ ନିଜ ପରିବାରର ସର୍ବାଙ୍ଗୀଣ ହିତ ଚିନ୍ତାକଲେ ତଦ୍ଦ୍ୱାରା ସମାଜ ମଧ୍ୟ ଉନ୍ନତ ହୋଇଯିବ । ଏଥିରେ କିଛି ସତ୍ୟତା ଥାଇପାରେ । ମାତ୍ର ଭୁଲିଲେ ଚଳିବ ନାହିଁ ଯେ, ପରିବାର ପରିବାର ମଧ୍ୟରେ ଯେଉଁ ପାରସ୍ପରିକ ସମ୍ପର୍କ, ବ୍ୟକ୍ତିକେନ୍ଦ୍ରିକ ଚିନ୍ତାଧାରା ତାହାକୁ ଦୁର୍ବଳ କରିଦେବ । ଏପରି କ୍ଷେତ୍ରରେ ସମାଜର ଉନ୍ନତି ସୁଦୂରପରାହତ ହୋଇ ରହିବ ।

ସାମାଜିକ ଅନୁଶାସନର କଡ଼ାକଡ଼ି ପାଳନ, ଆଇନ୍‌କାନୁନ୍ ପ୍ରତି ସମ୍ମାନ ପ୍ରଦର୍ଶନ

ବିପନ୍ନର ଉଦ୍ଧାର, ସହନଶୀଳତା, ଉଦାରତା ପ୍ରଭୃତି ଗୁଣ ଯେକୌଣସି ସଚେତନ ନାଗରିକର ଭୂଷଣ ସ୍ୱରୂପ । ବ୍ୟକ୍ତି ଥରେ ଚରିତ୍ରର ଊର୍ଦ୍ଧ୍ୱକୁ ଉଠିଗଲେ, ସମଗ୍ର ସଂସାର ହିଁ ତା'ର ପରିବାର ହୋଇଉଠିବ; କାରଣ 'ଉଦାରଚରିତାନାଂ ତୁ ବସୁଧୈବ କୁଟୁମ୍ବକମ୍' ବୋଲି ଗୋଟିଏ ଶାସ୍ତ୍ରବାଣୀ ରହିଛି । ମନେରଖିବାକୁ ହେବ ଯେ, ଏହାଦ୍ୱାରା ନାଗରିକର ବ୍ୟକ୍ତିଗତ ଜୀବନର ତିଳେମାତ୍ର କ୍ଷତି ହେବନାହିଁ; ବରଂ ତାହାର ଭାବମୂର୍ତ୍ତି ଅନ୍ୟ ନିକଟରେ ଉଜ୍ଜ୍ୱଳ ହୋଇଉଠିବ ।

# ଛାତ୍ର ଓ ରାଜନୀତି

ଛାତ୍ର-ଜୀବନ ହେଉଛି ମନୁଷ୍ୟ ଜୀବନର ସବୁଠାରୁ ସୁଖମୟ ସମୟ । ଏହି ସମୟରେ ସଂସାରର ଜଟିଳତା ତାକୁ ସ୍ପର୍ଶ କରିନଥାଏ । ତାହା ଉପରେ ପରିବାରର କୌଣସି ଦାୟିତ୍ୱ ନଥାଏ । ସମାଜର ସେ ଭବିଷ୍ୟତର ଆଶା-ଭରସାର ଏକମାତ୍ର ସ୍ଥଳ ହୋଇଥିବାରୁ ତାହାଠାରୁ ସମାଜର ପ୍ରତ୍ୟାଶା ତ ଥାଏ, ତେବେ ତାହା କୌଣସି କଠିନ ଅନୁଶାସନବଦ୍ଧ ହୋଇନଥାଏ । ତେଣୁ ଏହି ସମୟରେ ଛାତ୍ର ମୁକ୍ତ ଆକାଶର ବିହଙ୍ଗଭଳି ଉଡ଼ିବୁଲେ, ଭବିଷ୍ୟତ ନିମନ୍ତେ ସ୍ୱପ୍ନ ଦେଖେ ଏବଂ ସଂସାରକ୍ଷେତ୍ରରୁ ଅଭିଜ୍ଞତା ସଂଗ୍ରହ କରେ । ଏହି ସମୟରେ ତାହାର ମନରେ ସ୍ଥିରତା ଆସିନଥାଏ; ମନ କିନ୍ତୁ ଥାଏ ଶରତ୍ ଆକାଶପରି ନିର୍ମଳ, ସ୍ୱଚ୍ଛ । ତେଣୁ ବାହାରର ଯେକୌଣସି ପ୍ରଭାବ ଖୁବ୍ ଶୀଘ୍ର ସେଥିରେ ପ୍ରତିବିମ୍ବିତ ହୋଇଯାଏ ।

ଅନ୍ୟକୁ ସିଢ଼ିରୂପରେ ବ୍ୟବହାର କରି ଉପରକୁ ଉଠିବା ନିମନ୍ତେ ଧୂର୍ତ୍ତ ରାଜନୀତିଜ୍ଞମାନେ ସର୍ବଦା ଜାଲ ବସାଇ ରଖିଥାନ୍ତି । ପ୍ରତ୍ୟେକ ଦଳ ଆପଣାର ରାଜନୈତିକ ସ୍ୱାର୍ଥ ହାସଲ କରିବା ନିମନ୍ତେ ଛାତ୍ରସମାଜକୁ ନିଜର ଆୟୁଧରୂପରେ ବ୍ୟବହାର କରନ୍ତି । ଭବିଷ୍ୟତର ନାନା ପ୍ରଲୋଭନୀୟ ଚିତ୍ର ସେମାନଙ୍କ ଆଖି ଆଗରେ ଆଙ୍କିଯାନ୍ତି । ତରଳମତି ଛାତ୍ର ଏହି ସମୟରେ ବିଚାରବୁଦ୍ଧିରେ ପକ୍ୱ ହୋଇନଥାଏ, ତା' ସହିତ ଥାଏ ପ୍ରଚୁର ଉଚ୍ଛ୍ୱାସପ୍ରବଣତା; ତେଣୁ ସହଜରେ ସେ ରାଜନୀତିଜ୍ଞମାନଙ୍କ ପାଲରେ ପଡ଼ିଯାଏ । ଚତୁର ଯାଦୁକର ନିରୀହ ଆଲ୍ଲାଦିନ୍‌କୁ କୁହୁକଦୀପ ଆଣିବା ନିମନ୍ତେ ପାତାଳକୁ ପଠାଇ ପଥ ମୁହଁରେ ପଥର ଲଦିଦେଲା ଭଳି ରାଜନୀତିଜ୍ଞମାନେ ନିଜ ସ୍ୱାର୍ଥସିଦ୍ଧି ନିମନ୍ତେ ନାନା ଅନିଷ୍ଟକାରୀ କାର୍ଯ୍ୟରେ ଛାତ୍ରମାନଙ୍କୁ ଲଗାଇଦେଇ ଆପେ ସୁନାପିଲା ହୋଇ ବସିଥାନ୍ତି ।

ଛାତ୍ରମାନେ ରାଜନୀତିରେ ଭାଗନେବା ଉଚିତ କି—ଏହି ପ୍ରଶ୍ନର ଉତ୍ତରରେ କୁହାଯାଇ-ପାରେ ଯେ ସେମାନେ ହେଉଛନ୍ତି ଦେଶର ଭବିଷ୍ୟତ୍ କର୍ଣ୍ଣଧାର । ଛାତ୍ରଜୀବନ ଶେଷକରି

ସେମାନଙ୍କ ମଧ୍ୟରୁ କେନ୍ଦ୍ର ମନ୍ତ୍ରୀ, କେନ୍ଦ୍ର ପ୍ରଶାସକ, କେନ୍ଦ୍ର ଡାକ୍ତର, ଇଞ୍ଜିନିୟର୍ ବା ଅଧ୍ୟାପକ ହେବେ । ପୂର୍ବରୁ ଦେଶର ହାଲଚାଲ୍ ଉତ୍ତମରୂପେ ବୁଝି ନଥିଲେ, ସେମାନେ କିପରି ଦେଶର କାର୍ଯ୍ୟ କରିପାରିବେ ? ଭବିଷ୍ୟତରେ ଯେଉଁ ଗୁରୁଦାୟିତ୍ୱ ସେମାନଙ୍କ ଉପରେ ନ୍ୟସ୍ତ ହେବ, ତାକୁ କିପରି ଉତ୍ତମରୂପେ ବହନ କରିପାରିବେ ? ତେଣୁ ଦେଶର ପ୍ରକୃତ ଅବସ୍ଥା, ରାଜନୈତିକ ଦଳ, ସେମାନଙ୍କର କାର୍ଯ୍ୟ ପ୍ରଣାଳୀ ଏବଂ ଉଦ୍ଦେଶ୍ୟ ସମ୍ପର୍କରେ ପ୍ରତ୍ୟେକ ଛାତ୍ରର ମୋଟାମୋଟି ଧାରଣା ରହିଥିବା ଆବଶ୍ୟକ । ତେବେ ଏହିସବୁ ବିଷୟକ ବ୍ୟାବହାରିକ ଜ୍ଞାନ ନିମନ୍ତେ ବିଦ୍ୟାଳୟ ଏବଂ ମହାବିଦ୍ୟାଳୟର ପରିସର ହିଁ ପର୍ଯ୍ୟାପ୍ତ ହେବ । ସେମାନେ ଦେଖିବେ, ପ୍ରତ୍ୟେକ ଦଳର କାର୍ଯ୍ୟକାରିତା ସମ୍ପର୍କରେ ଆଲୋଚନା କରିବେ ଏବଂ ଏହାହିଁ ସେମାନଙ୍କୁ ଭଲମନ୍ଦ ନିର୍ବାଚନ କରିବାର ଶକ୍ତି ଯୋଗାଇଦେବ । କେବଳ ଏତିକି ମଧ୍ୟରେ ଛାତ୍ରମାନଙ୍କର ରାଜନୈତିକ ଚେତନା ସୀମାବଦ୍ଧ ରହିଲେହିଁ ଦେଶପକ୍ଷରେ ମଙ୍ଗଳକର ହେବ ।

ରାଜନୀତି ହେଉଛି ଛାତ୍ରଜୀବନର ପ୍ରକୃଷ୍ଟ ବିକାଶର ଶତ୍ରୁ ସ୍ୱରୂପ । କାରଣ ଛାତ୍ରର ପ୍ରକୃତ କର୍ତ୍ତବ୍ୟ ହେଉଛି ଅଧ୍ୟୟନ । 'ଛାତ୍ରାଣାଂ ଅଧ୍ୟୟନଂ ତପଃ'—ବିଦ୍ୟାଧ୍ୟୟନ ଛାତ୍ରଜୀବନର ତପସ୍ୟା ସ୍ୱରୂପ । ଏହି ସମୟରେ ଯଦି ସେ ଅନ୍ୟଆଡ଼େ ମନଦିଏ, ତେବେ ତାହାର ଏକାଗ୍ରତା ନଷ୍ଟ ହୋଇଯାଏ; ସାଧନା ବିଘ୍ନିତ ହୁଏ, ଛାତ୍ର ଲକ୍ଷ୍ୟଭ୍ରଷ୍ଟ ହୋଇଯାଏ । ଥରେ ସେ ରାଜନୀତିର ଅନ୍ଧ ଗଳିରେ ପାଦ ଥୋଇଲେ, ସେଥିରୁ ତାକୁ ନିସ୍ତାର ମିଳେନାହିଁ । 'ବୁଡ଼ିଗଲା ଲୋକର ଗୋଡ଼ ତଳକୁ ତଳକୁ' ଗଲା ଭଳି ଛାତ୍ର କ୍ରମେ ରାଜନୀତି ସହିତ ବୁଡିଯାଏ ଏବଂ ପୁଣିଥରେ ଭାସିଉଠିବା ନିତାନ୍ତ ସହଜସାଧ୍ୟ ବ୍ୟାପାର ନୁହେଁ । ଅଧ୍ୟୟନ ତା'ପାଇଁ ଗୌଣ ହୋଇଯାଏ ।

ଆଜି ପୃଥିବୀରେ ଛାତ୍ରମାନଙ୍କର ଚିତ୍ତଚାଞ୍ଚଲ୍ୟ ଘଟାଇ ସେମାନଙ୍କୁ ସାଧନାଭ୍ରଷ୍ଟ କରିବା ନିମନ୍ତେ ବାହାରର ଆକର୍ଷଣ ବହୁତ । ହୁଏତ ସେଇଥିପାଇଁ ପ୍ରାଚୀନକାଳରେ ସମାଜ-ଜୀବନଠାରୁ ବହୁଦୂରରେ ଅରଣ୍ୟର ଶାନ୍ତ ପରିବେଶରେ ଛାତ୍ର ନିମନ୍ତେ ଦୀର୍ଘକାଳବ୍ୟାପୀ ବ୍ରହ୍ମଚର୍ଯ୍ୟାଶ୍ରମର ପରିକଳ୍ପନା କରାଯାଇଥିଲା । ପ୍ରଲୋଭନ ମଧ୍ୟରେ ରଖି ଛାତ୍ରର ଧୈର୍ଯ୍ୟ ପରୀକ୍ଷା କରିବା ଅପେକ୍ଷା ତାକୁ ପ୍ରଲୋଭନଠାରୁ ଦୂରରେ ରଖିବାକୁ ହିଁ ଉପଯୁକ୍ତ ମନେକରାଯାଉଥିଲା । ଯେ ପର୍ଯ୍ୟନ୍ତ ତା'ର ଶିକ୍ଷା ସମାପ୍ତ ନ ହୋଇଛି, ସେ ପର୍ଯ୍ୟନ୍ତ ଗୃହସ୍ଥାଶ୍ରମକୁ ଫେରିବା ନିମନ୍ତେ ତାକୁ ଅନୁମତି ଦିଆଯାଉନଥିଲା । ମାତ୍ର ବର୍ତ୍ତମାନ ଅବସ୍ଥା ସମ୍ପୂର୍ଣ୍ଣ ବଦଳିଯାଇଛି । ଆଶ୍ରମ ଜୀବନର ପରିକଳ୍ପନା ପୁଣି ବିଂଶଶତାବ୍ଦୀର ଏଇ ଦଶକରେ ନିତାନ୍ତ ହାସ୍ୟାସ୍ପଦ । ଆମକୁ ଉପାୟ ଚିନ୍ତା କରିବାକୁ ପଡ଼ିବ ଆମର ପରିବେଶ ପ୍ରତି ସତର୍କ ଦୃଷ୍ଟି ରଖି ।

ଛାତ୍ରପାଇଁ ରାଜନୀତି ସହିତ ସମ୍ପର୍କ ସ୍ଥାପନ କରିବାର ଏକ ନିର୍ଦ୍ଦିଷ୍ଟ କାଳ ରହିଛି । ବିଂଶଶତାବ୍ଦୀର ଦ୍ୱିତୀୟ ଦଶକରେ ଚୀନ୍‌ର ପେକିଂ ବିଶ୍ୱବିଦ୍ୟାଳୟର ଦଶହଜାର ଛାତ୍ର

ସେଠାକାର ଘୁଷଖୋର ଶାସକ ଗୋଷ୍ଠୀ ତଥା ଜାପାନର ସ୍ୱେଚ୍ଛାଚାର ବିରୁଦ୍ଧରେ ପ୍ରଥମ ଆନ୍ଦୋଳନ ଆରମ୍ଭ କରିଥିଲେ । ତାହା ପରେ ଜାତୀୟ ବିପ୍ଳବରେ ପରିଣତ ହୋଇଥିଲା ଏବଂ କମ୍ୟୁନିଷ୍ଟ ରାଷ୍ଟ୍ର ପ୍ରତିଷ୍ଠିତ ହେବା ପରେ ତାହା ମଉଳିଯାଇଥିଲା । ରାଷ୍ଟ୍ରଶକ୍ତି ଯେତେବେଳେ ଦାରିଦ୍ର୍ୟ, ଅଶିକ୍ଷା ଏବଂ ନେତୃତ୍ୱହୀନତାରେ କ୍ଳୀବ ହୋଇପଡ଼େ, ଶାସକ-ଗୋଷ୍ଠୀର ଅତ୍ୟାଚାର ଯେତେବେଳେ ସୀମା ଲଙ୍ଘନ କରେ, ପୁଣି ଯେତେବେଳେ ଦେଶର ରାଜନୈତିକ ବ୍ୟାପାରମାନଙ୍କରେ ଜନମତ ଜାଣିବାର ଉପାୟ ନଥାଏ, ସେତେବେଳେ ଦେଶର ଛାତ୍ରସମାଜ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରିପାରେ । ୟୁରୋପ ଓ ଏସିଆର ବିଭିନ୍ନ ଦେଶମାନଙ୍କରେ ଏହିଭଳି ପରିସ୍ଥିତିରେ ଛାତ୍ରମାନେ ରାଜନୀତି ମଧ୍ୟକୁ ଲମ୍ଫ ଦେଇଥିବାର ଦେଖିବାକୁ ମିଳିବ ।

ଭାରତବର୍ଷର ସ୍ୱାଧୀନତା ଯୁଦ୍ଧରେ ଏ ଦେଶର ଛାତ୍ରସମାଜ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସର୍ଦ୍ଦାର ଭଗତ୍ ସିଂ, ଜୟପ୍ରକାଶ ନାରାୟଣ, ଲାଲବାହାଦୁର ଶାସ୍ତ୍ରୀ, ହରେକୃଷ୍ଣ ମହତାବ ପ୍ରଭୃତି ଏ ଦେଶର କେତେ ଯେ ଛାତ୍ର ଅଧ୍ୟୟନ ତ୍ୟାଗକରି ସ୍ୱାଧୀନତା ଆନ୍ଦୋଳନ ମଧ୍ୟରେ ନିଜକୁ ସାମିଲ କରିଦେଇଥିଲେ, ତାହାର ଇୟତ୍ତା ନାହିଁ । ଏମାନଙ୍କର ତ୍ୟାଗ ଇତିହାସରେ ଲିପିବଦ୍ଧ ହୋଇ ରହିବ । ସ୍ୱାଧୀନତାର ଯଜ୍ଞବେଦୀରେ ଏମାନଙ୍କର ଆତ୍ମବଳି ହିଁ ସ୍ୱାଧୀନତାକୁ ତ୍ୱରାନ୍ୱିତ କରିଛି । ଉପସଂହାରରେ ଶେଷ କେବଳ ଏତିକି କୁହାଯାଇପାରେ ଯେ, ଯେଉଁ ମୁହୂର୍ତ୍ତରେ ଦେଶ କୌଣସି ଭୟଙ୍କର ବାହ୍ୟ ସଙ୍କଟର ସମ୍ମୁଖୀନ ହେବ, ସେହି ମୁହୂର୍ତ୍ତରେ ଛାତ୍ରକୁ ତା'ର ଅଧ୍ୟୟନ ତ୍ୟାଗକରି ସକ୍ରିୟ ରାଜନୀତି ମଧ୍ୟକୁ ଡେଇଁପଡ଼ିବାକୁ ହେବ । ଅନ୍ୟଥା 'ଅଧ୍ୟୟନ' ହିଁ ହେବ ତାହାର ଭବିଷ୍ୟତ ଜୀବନଗଠନର ଦୃଢ଼ ସୋପାନ ।

## ଭାରତର ଜାତିପ୍ରଥା

ଭାରତବର୍ଷ ଏକ ପ୍ରାଚୀନ ଦେଶ । ବହୁବର୍ଷ ପୂର୍ବେ ଆର୍ଯ୍ୟମାନେ ଏଠାରେ ବସତି ସ୍ଥାପନ କରିଥିଲେ । ମାତ୍ର ତାହା ପୂର୍ବରୁ କିଛି ଅନାର୍ଯ୍ୟ ଏବଂ ଦ୍ରାବିଡ଼ ଜାତି ଏଠାରେ ବସବାସ କରି ରହିଥିଲେ । ଆର୍ଯ୍ୟମାନେ ସେମାନଙ୍କୁ ଦକ୍ଷିଣକୁ ତଡ଼ିଦେଇ ବସତି ସ୍ଥାପନ କରିବାକୁ ଲାଗିଲେ । ଏହି ଅନାର୍ଯ୍ୟ ଏବଂ ଦ୍ରାବିଡ଼ ଜାତି କ୍ରମଶଃ ଆର୍ଯ୍ୟମାନଙ୍କର ସଂସ୍ପର୍ଶରେ ଆସି ସଭ୍ୟ ହେଲେ । କୁହାଯାଏ ଯେ ଦ୍ରାବିଡ଼ମାନଙ୍କର ସୁଦ୍ଧା ଆର୍ଯ୍ୟମାନଙ୍କଠାରୁ ଏକ ଉନ୍ନତ ସଭ୍ୟତା ରହିଥିଲା । ମହେଞ୍ଜୋଦାରୋ ଏବଂ ହରପ୍ପାଠାରେ ଯେଉଁ ଉନ୍ନତ

ସଭ୍ୟତାର ଧ୍ୱଂସାବଶେଷ ରହିଅଛି ତାହା ଦ୍ରାବିଡ଼ ସଭ୍ୟତାର ଶେଷ ଚିହ୍ନ ବୋଲି କୁହାଯାଏ ।

ଆର୍ଯ୍ୟମାନେ ଏକ ଭ୍ରମଣଶୀଳ ଜାତି ଥିଲେ । ବଂଶ ବୃଦ୍ଧି ଏବଂ ପଶୁଚାରଣରେ ଅସୁବିଧା ହେବାରୁ ସେମାନେ କ୍ରମଶଃ ଭାରତର ବିଭିନ୍ନ ପ୍ରାନ୍ତରେ ବସବାସ କରିବାକୁ ଲାଗିଲେ । ଏହି ସମୟରେ ସେମାନେ ସମସ୍ତେ ଗୋଟିଏ ଜାତିଥିଲେ । କ୍ରମଶଃ ସେମାନଙ୍କ ମଧ୍ୟରେ କର୍ମଭିତ୍ତିକ ଗୋଷ୍ଠୀର ସୃଷ୍ଟି ହେଲା । ଯେଉଁମାନେ ଗୋଷ୍ଠୀର ମଙ୍ଗଳ ନିମନ୍ତେ ଭଜନ-ପୂଜନ ଇତ୍ୟାଦିରେ ଲାଗିରହିଥିଲେ, ସେମାନେ ହେଲେ ବ୍ରାହ୍ମଣ । ଯୁଦ୍ଧ ଇତ୍ୟାଦିକୁ ଯେଉଁମାନେ ଗ୍ରହଣ କରିନେଲେ ସେମାନଙ୍କୁ କୁହାଗଲା କ୍ଷତ୍ରିୟ । ବାଣିଜ୍ୟ, ବ୍ୟବସାୟ ଇତ୍ୟାଦିଦ୍ୱାରା ଯେଉଁମାନେ ଧନସମ୍ପଦ ବୃଦ୍ଧି କରିବାରେ ନିଯୁକ୍ତ ହେଲେ, ସେମାନେ ହେଲେ ବୈଶ୍ୟ । ଏହି ତିନି ଜାତିର ସେବାରେ ଯେଉଁମାନେ ଲାଗିଲେ ସେମାନଙ୍କୁ ଶୂଦ୍ର କୁହାଗଲା ।

ଫଳରେ ଭାରତବର୍ଷରେ ଚାରୋଟି ଜାତିର ସୃଷ୍ଟି ହେଲା । ମାତ୍ର ଏହି ଜାତିପ୍ରଥା ସେତେବେଳେ ଆଦୌ ଜନ୍ମଭିତ୍ତିକ ନଥିଲା । ଉତ୍ତମ କର୍ମ କରି ଜଣେ ଶୂଦ୍ର ମଧ୍ୟ ବ୍ରାହ୍ମଣ ରୂପେ ସମ୍ମାନିତ ହୋଇପାରୁଥିଲା । ଅଜ୍ଞାତକୁଳଶୀଳ ସତ୍ୟକାମକୁ ମଧ୍ୟ ମହର୍ଷି ଜାବାଲ ନିଜର ଶିଷ୍ୟରୂପେ ଗ୍ରହଣ କରିନେଇଥିଲେ । ରାମାୟଣ-ଯୁଗରେ ଶୂଦ୍ର ଶମ୍ବୁକ ମଧ୍ୟ ତପସ୍ୟା କରିବାର ସୁଯୋଗ ପାଇଥିଲେ ।

କ୍ରମଶଃ ସୁବିଧାବାଦୀମାନଙ୍କର ଷଡ଼ଯନ୍ତ୍ରରେ ଏହି ଜାତିପ୍ରଥାକୁ ଜନ୍ମଭିତ୍ତିକ କରି-ଦିଆଗଲା ଏବଂ ଶୂଦ୍ରର ପୁଅ କେବଳ ଶୂଦ୍ର ହୋଇ ରହିଲା । ଏହି ପ୍ରଥା ଈଶ୍ୱରସୃଷ୍ଟ ବୋଲି ମଧ୍ୟ ପ୍ରଚାର କରିଦିଆଗଲା । ସ୍ୱୟଂ ଈଶ୍ୱରଙ୍କ ମୁଖନିଃସୃତ ବାଣୀ ରୂପେ 'ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣ କର୍ମ ବିଭାଗଶଃ' ବୋଲି ମାନ୍ୟତା ଦିଆଗଲା । କ୍ରମଶଃ ସ୍ପୃଶ୍ୟ ଏବଂ ଅସ୍ପୃଶ୍ୟ ବ୍ୟବସ୍ଥାର ସୃଷ୍ଟି ହେଲା । ଯେଉଁମାନେ ପୂର୍ବୋକ୍ତ ତିନିଜାତିର ସେବା କରି ସମୟ କଟାଇଲେ ସେମାନଙ୍କୁ ଅସ୍ପୃଶ୍ୟ ବୋଲି ପରିଚୟ ଦିଆଗଲା । ବ୍ରାହ୍ମଣ, କ୍ଷତ୍ରିୟ, ଏବଂ ବୈଶ୍ୟ ଏହି ତିନି ଜାତି ଅସ୍ପୃଶ୍ୟ ଶୂଦ୍ରଜାତି ଉପରେ ନାନା ଅତ୍ୟାଚାର କରି ସେମାନଙ୍କୁ ଦଳିତ କରି ରଖିଲେ ।

ସେମାନଙ୍କୁ ମର୍ଯ୍ୟାଦା ଦେବା ନିମନ୍ତେ ମଝିରେ ମଝିରେ ଯେ ଉଦ୍ୟମ ହେଉନଥିଲା, ଏପରି ନୁହେଁ; ମାତ୍ର ଏହି ସମସ୍ୟାର କୌଣସି ସ୍ଥାୟୀ ପ୍ରତିକାର ହୋଇପାରୁନଥିଲା । ଦଳିତ ଶୂଦ୍ରଜାତି ଅତି ଦୟନୀୟ ଅବସ୍ଥାରେ ରହିଥିଲେ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜାତିର ପିତା ମହାତ୍ମା ଗାନ୍ଧୀ ସାମାଜିକ ଜୀବନର ଏହି ବିଷାକ୍ତ ପ୍ରଥା ବିରୁଦ୍ଧରେ ଆନ୍ଦୋଳନ କରିବାକୁ ଅଗ୍ରସର ହେଲେ । ସେ ଏହି ଦଳିତମାନଙ୍କ ନିମନ୍ତେ ଏକ ନୂତନ ନାମ ପ୍ରଚଳନ କରାଇଲେ । ସେମାନଙ୍କୁ କୁହାଗଲା 'ହରିଜନ', ଅର୍ଥାତ୍ 'ଈଶ୍ୱରଙ୍କର ପ୍ରିୟତମ ସନ୍ତାନ' । ମହାତ୍ମା ଗାନ୍ଧୀ କହିଲେ ଯେ, ଜନ୍ମସୂତ୍ରରେ କେହି ସ୍ପୃଶ୍ୟ ବା ଅସ୍ପୃଶ୍ୟ ହୋଇ ନ ପାରନ୍ତି ।

'ଗୁଣ' ଏବଂ 'କର୍ମ' ଯେତେବେଳେ ପ୍ରାଚୀନ କାଳରେ ଜାତିପ୍ରଥାର ନିୟାମକ ଥିଲି ବୋଲି 'ଗୀତା'ରେ କୁହାଯାଇଛି, ସେତେବେଳେ ଉତ୍ତମ କର୍ମ କରୁଥିବା ଶୂଦ୍ରକୁ ବ୍ରାହ୍ମଣରୂପେ ଗ୍ରହଣ କରିନେବାରେ ସାମାଜିକ ବାଧା ନ ରହିବା ଉଚିତ ।

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଏମାନଙ୍କର ସାମାଜିକ ଅବସ୍ଥାର ଉନ୍ନତି କରିବା ନିମନ୍ତେ ଆନ୍ଦୋଳନ ଏବଂ ପଦକ୍ଷେପମାନ ନିଆଯିବାକୁ ଲାଗିଲା । ଶୂଦ୍ରମାନଙ୍କୁ ମନ୍ଦିର ପ୍ରବେଶ ନିଷିଦ୍ଧ ଥିଲା । କ୍ରମଶଃ ସେମାନେ ପୂଜା-ଉପାସନାର ସୁଯୋଗ ଲାଭ କରିବାକୁ ଲାଗିଲେ । ଶୂଦ୍ରମାନଙ୍କ ମଧ୍ୟରେ ଦୁଇଟି ଜାତି ରହିଥିଲା । ଯେଉଁମାନେ ବଣ-ପାହାଡ଼ରେ ରହି ଅସ୍ପୃଶ୍ୟ ଜୀବନ ଯାପନ କରୁଥିଲେ, ସେମାନେ ହେଲେ ଆଦିବାସୀ । ଯେଉଁମାନେ ସଭ୍ୟ ସମାଜରେ ରହି ଘୃଣ୍ୟ ଦଳିତ ଜୀବନ ଯାପନ କରୁଥିଲେ ସେମାନେ 'ହରିଜନ' ।

ବର୍ତ୍ତମାନ ସରକାରୀ ସ୍ତରରେ ଏହି ଦୁଇଜାତିର ସାମାଜିକ ମାନ ଉନ୍ନତ କରିବା ନିମନ୍ତେ ଉଦ୍ୟମ କରାଯାଉଛି । ସେମାନଙ୍କର ଶିକ୍ଷା-ଦୀକ୍ଷା ଏବଂ କର୍ମ ଯୋଗାଣ ନିମନ୍ତେ ସ୍ୱତନ୍ତ୍ର ବ୍ୟବସ୍ଥାମାନ କରାଯାଉଛି । ଶିକ୍ଷା ଏବଂ ନିଯୁକ୍ତି କ୍ଷେତ୍ରରେ ସେମାନଙ୍କ ନିମନ୍ତେ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ପ୍ରଚଳିତ ହୋଇଛି । ସ୍ୱାଧୀନତା ଲାଭ ପରେ ଏହି ଉଦ୍ୟମକୁ କଠୋର ଭାବରେ ପାଳନ କରାଯାଉଥିବାରୁ ଇତିମଧ୍ୟରେ ସେମାନଙ୍କର ଅବସ୍ଥାର ଅନେକ ଉନ୍ନତି ହେଲାଣି ।

ଆର୍ଯ୍ୟ-ସମାଜ ସେମାନଙ୍କର ଧର୍ମାନ୍ତର ଘଟାଇ ସେମାନଙ୍କୁ ଉଚ୍ଚ ବର୍ଗ ସହିତ ମିଳାଇଦେବା ନିମନ୍ତେ ଏକ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଅସ୍ପୃଶ୍ୟତା ଏକ ସାମାଜିକ ଅପରାଧ । ତେଣୁ ଏହା ବିପକ୍ଷରେ ବର୍ତ୍ତମାନ ସରକାରୀ ଆଇନ ମଧ୍ୟ ପ୍ରସ୍ତୁତ ହୋଇଛି । ଯେଉଁଠାରେ ସବର୍ଣ୍ଣମାନେ ତଥାପି ଏମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି, ସେଠାରେ ଆତ୍ମରକ୍ଷା ନିମନ୍ତେ ଏମାନଙ୍କୁ ସବୁପ୍ରକାର ସରକାରୀ ସାହାଯ୍ୟ ମିଳୁଛି ଏବଂ ଅସ୍ତ୍ରଶସ୍ତ୍ର ରଖିବା ନିମନ୍ତେ ଅନୁମତିପତ୍ର ମଧ୍ୟ ଦିଆଯାଉଛି ।

ତଥାପି ଏ କ୍ଷେତ୍ରରେ ବହୁତ କାର୍ଯ୍ୟ କରିବାକୁ ହେବ । ଯେ ପର୍ଯ୍ୟନ୍ତ ଏକ ସ୍ୱତନ୍ତ୍ର ଜାତି ରୂପରେ ସେମାନଙ୍କୁ ଚିହ୍ନିତ କରାଯାଉଥିବ, ସେ ପର୍ଯ୍ୟନ୍ତ ସେମାନଙ୍କ ପ୍ରତି ସାଧାରଣ ଜୀବନରେ ବୈମନସ୍ୟ ରହିଥିବ । ତେଣୁ 'ତଫସିଲଭୁକ୍ତ ଜାତି' ଏହି ଶବ୍ଦଟି ନିତାନ୍ତ ଅପମାନଜନକ ହୋଇଥିବାରୁ ଯେତେ ଶୀଘ୍ର ତାହାର ବିଲୋପସାଧନ କରାଯାଏ ତାହା ସେମାନଙ୍କ ପାଇଁ ସେତେ ମଙ୍ଗଳପ୍ରଦ ହେବ । ଯେଉଁମାନେ ଦଳିତ, ନିରକ୍ଷର ଏବଂ ଅନୁନ୍ନତ ଅବସ୍ଥାରେ ରହିଛନ୍ତି, ସେମାନେ ଯେଉଁ ଜାତିର ହୁଅନ୍ତୁ ନା କାହିଁକି, ସାମୂହିକ ଭାବରେ ସେମାନଙ୍କ ଅବସ୍ଥାର ପରିବର୍ତ୍ତନ ନିମନ୍ତେ ଉଦ୍ୟମ କରାଯିବା ଆବଶ୍ୟକ । ଯେଉଁମାନେ ତଥାପି ଏ ସଂକ୍ରାନ୍ତ ଆଇନ୍‌କାନୁନକୁ ଲଙ୍ଘନ କରି ନିଜର ରକ୍ଷଣଶୀଳ ମନୋଭାବ ବଜାୟ ରଖିବେ ଏବଂ ଅତ୍ୟାଚାର ଚଳାଇଯାଉଥିବେ, ସେମାନଙ୍କୁ କଠୋର ଦଣ୍ଡ ଦିଆଯିବା ଉଚିତ ।

ଭାରତ ଏକ ଗ୍ରାମବହୁଳ ଦେଶ । ଏହାର ଲୋକସଂଖ୍ୟାର ତିନି-ଚତୁର୍ଥାଂଶ ଏବେ ମଧ୍ୟ ଗ୍ରାମାଞ୍ଚଳରେ ବସବାସ କରି ରୋଗ, ଦାରିଦ୍ର୍ୟ ଓ ନିରକ୍ଷରତା ମଧ୍ୟରେ ଦୟନୀୟ ଜୀବନ କଟାଉଛନ୍ତି । ଅଜ୍ଞତା ସେମାନଙ୍କୁ ଏଭଳି ଅଥର୍ବ କରିଦେଇଛି ଯେ, ସେମାନେ ନିଜର ପ୍ରକୃତ ଅଧିକାର ସମ୍ପର୍କରେ ମଧ୍ୟ ସଚେତନ ନୁହନ୍ତି । ଏହି ଅବସ୍ଥାର ଆଶୁ ପରିବର୍ତ୍ତନ ନିମନ୍ତେ ଆମର ସମାଜସେବୀ ନେତାବୃନ୍ଦ ସକ୍ରିୟ ଉଦ୍ୟମ କରିବା ଆବଶ୍ୟକ । ସେମାନେ ଗ୍ରାମାଞ୍ଚଳକୁ ଯାଇ, ଦଳିତମାନଙ୍କର ପ୍ରକୃତ ସମସ୍ୟା ହୃଦୟଙ୍ଗମ କରି ତାହା ବିରୁଦ୍ଧରେ ପଦକ୍ଷେପମାନ ଗ୍ରହଣ କରିବା ଉଚିତ ।

ଆଇନ୍‌କାନୁନ୍ ମଣିଷ ମଧ୍ୟରେ ଅଧିକାରବୋଧ ପ୍ରତିଷ୍ଠା କରିବା ନିମନ୍ତେ ସହାୟତା କରିଥାଏ; ମାତ୍ର ଯେ ପର୍ଯ୍ୟନ୍ତ ଆମର ମାନସିକତାରେ ପରିବର୍ତ୍ତନ ନ ହୋଇଛି, ଘୃଣା ବଦଳରେ ସ୍ନେହ ଏବଂ ସହାନୁଭୂତି ଦେଇ ଆମେ ଏମାନଙ୍କୁ ଆପଣାର କରି ନନେଇଛୁଁ, ସେ ପର୍ଯ୍ୟନ୍ତ ଏ ଅବସ୍ଥାର ବାସ୍ତବ ପରିବର୍ତ୍ତନ ଘଟିବ ନାହିଁ ।

ଜାତିପ୍ରଥା ମନୁଷ୍ୟ ମନୁଷ୍ୟ ମଧ୍ୟରେ ଦୂରତ୍ୱ ବଢ଼ାଇଦିଏ । ପରସ୍ପର ପ୍ରତି ତୀବ୍ର ବିଦ୍ୱେଷ ଭାବ ସୃଷ୍ଟି କରେ । ଭାରତୀୟ ପରମ୍ପରାରେ ଏହା ନିତାନ୍ତ ନିନ୍ଦନୀୟ । 'ସକଳ ଘଟେ ନାରାୟଣ' ବୋଲି ଆମର ଉଦାରବାଦୀ ଶାସ୍ତ୍ର ପୁରାଣରେ ସ୍ପଷ୍ଟ ଘୋଷିତ ହୋଇଥିବା ସ୍ଥଳେ, କେବଳ ମାତ୍ର ସଂସ୍କାରଦ୍ୱାରା ଚାଳିତ ହୋଇ ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ ନିମନ୍ତେ ମଣିଷକୁ ତାହାର କାର୍ଯ୍ୟରେ ଅଧିକାର ନଦେବା ଏବଂ ସେମାନଙ୍କୁ ପଶୁତୁଲ୍ୟ ଆଚରଣ ପ୍ରଦର୍ଶନ କରିବା ନିତାନ୍ତ ହୀନମନ୍ୟତାର ପରିଚାୟକ । 'ମାନବମାନେ ଅମୃତର ସନ୍ତାନ' ଯେ ପର୍ଯ୍ୟନ୍ତ ଏହି ସାର୍ବଜନୀନ ଭାବନା ଆମ ମନରେ ଫୁଟି ନଉଠିଛି, ସେ ପର୍ଯ୍ୟନ୍ତ ଏ ଘୃଣ୍ୟ ପ୍ରଥାର ବିନାଶ ନାହିଁ । ଏହା ଯେତେ ଶୀଘ୍ର ଦୂର ହୁଏ, ମାନବଜାତି ନିମନ୍ତେ ତାହା ସେତେ ମଙ୍ଗଳପ୍ରଦ ବିବେଚିତ ହେବ ।

## ଖେଳ-କୁଦ

ମାନବମାନେ କ୍ରୀଡ଼ାପ୍ରିୟ । ଏହାକୁ ତାହାର ଏକ ସ୍ୱାଭାବିକ ପ୍ରବୃତ୍ତି ବୋଲି କୁହାଯାଇ-ପାରେ । ମାନବେତର ପ୍ରାଣୀ ସୁଦ୍ଧା ଏହି ପ୍ରବୃତ୍ତିର ଅଧୀନ । କ୍ରୀଡ଼ାପ୍ରବୃତ୍ତି ସାଧାରଣତଃ ବାଲ୍ୟକାଳରେ ହିଁ ଅଧିକ ଦେଖାଦେଇଥାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଯେତେବେଳେ ବିଭିନ୍ନ ଦାୟିତ୍ୱର ବୋଝ ମଣିଷ ଉପରକୁ ଆସେ, ସେତେବେଳେ କ୍ରମଶଃ ତା'ର ଖେଳୁଆଡ଼ ମନ ଦୂରେଇଯାଏ । ଏହାର ଅର୍ଥ ନୁହେଁ, ସେ କ୍ରୀଡ଼ାପ୍ରତି ସଂପୂର୍ଣ୍ଣ ବୀତସ୍ପୃହ ହୋଇଯାଏ । ସାଂସାରିକ ଦାୟିତ୍ୱ ସେଥିରେ ସାମାନ୍ୟ ଶିଥିଳତା ସୃଷ୍ଟି କରିଥାଏ ମାତ୍ର ।

ମାନବ ଶିଶୁ ବାଲ୍ୟକାଳରୁ ହସ୍ତପଦାଦି ସଞ୍ଚାଳନ କରି ଖେଳେ । ଆଉ ଟିକିଏ ବୟସ ବଢ଼ିଗଲେ ସେ ଡିଆଁଡେଇଁ ଦୌଡ଼ାଦୌଡ଼ି କରିବାକୁ ଆରମ୍ଭ କରିଦିଏ । କ୍ରମଶଃ ସେ ନାନା ପ୍ରକାର ନିୟମାନୁବଦ୍ଧ କ୍ରୀଡ଼ା ପ୍ରତି ଆସକ୍ତ ହୋଇଯାଏ । ବୟସ୍କମାନେ ପୂର୍ବ ପୂର୍ବ ଅଭ୍ୟାସବଶତଃ କିମ୍ବା ବ୍ୟାୟାମ ନିମନ୍ତେ ନାନାପ୍ରକାର କ୍ରୀଡ଼ାରେ ଯୋଗଦିଅନ୍ତି । ଏହିଭଳି ଭାବରେ ଖେଳକୁଦକୁ ମଣିଷର ଏକ ସାର୍ବଜନୀନ ପ୍ରବୃତ୍ତି କୁହ ଯାଇପାରେ ।

କ୍ରୀଡ଼ାକୁ ସାଧାରଣ ଦୃଷ୍ଟିରୁ ଦୁଇଭାଗରେ ବିଭକ୍ତ କରାଯାଇପାରେ—(୧) ଶାରୀରିକ ଓ (୨) ମାନସିକ । ଦୌଡ଼, କୁସ୍ତି, ହକି, କ୍ରିକେଟ୍, ଫୁଟ୍‌ବଲ୍, ଭଲିବଲ, କବାଡ଼ି ଇତ୍ୟାଦି ବିଭିନ୍ନ ଖେଳଦ୍ୱାରା ଅଙ୍ଗପ୍ରତ୍ୟଙ୍ଗର ଚାଳନା କରିବାକୁ ପଡ଼ୁଥିବାରୁ ଏହାକୁ ଶାରୀରିକ ବିଭାଗର ଅନ୍ତର୍ଭୁକ୍ତ କରାଯାଇଥାଏ । ତାସ୍, ପଶା, ଚେସ୍, କ୍ୟାରମ୍ , କ୍ରସ୍‌ବୋର୍ଡ଼ ଇତ୍ୟାଦି ଖେଳପାଇଁ ସାଧାରଣତଃ ବୁଦ୍ଧି ଉପରେ ନିର୍ଭର କରିବାକୁ ପଡ଼େ । ଏଗୁଡ଼ିକ ତେଣୁ ମାନସିକ ପର୍ଯ୍ୟାୟର ।

ଅଲମ୍ପିକ୍ କ୍ରୀଡ଼ା-ପ୍ରତିଯୋଗିତା ବର୍ତ୍ତମାନ ବିଶ୍ୱର ସବୁଠାରୁ ଅଧିକ ପ୍ରସିଦ୍ଧ ଏବଂ ଜନପ୍ରିୟ ପ୍ରତିଯୋଗିତା । ଅତୀତ କାଳରେ ଏହା ପ୍ରଥମେ ଗ୍ରୀସ୍‌ର ଅଲମ୍ପିଆ ନଗରୀରେ ଆରମ୍ଭ ହୋଇଥିଲା । ଗ୍ରୀକ୍‌ମାନଙ୍କର କ୍ରୀଡ଼ାସକ୍ତି ବିଶ୍ୱପ୍ରସିଦ୍ଧ । ସେ କାଳରେ ସେଠାରେ ଯେଉଁ ବିଭିନ୍ନ ପ୍ରକାରର କ୍ରୀଡ଼ା ପ୍ରଦର୍ଶିତ ହେଉଥିଲା, ସେଥିରେ ସୁଦ୍ଧା ଦୂରଦୂରାନ୍ତରୁ ପ୍ରତିଯୋଗୀମାନେ ଆସି ଯୋଗଦେଉଥିଲେ । ଆଜିର ଅଲମ୍ପିକ୍ ତା'ର ସ୍ମୃତି ବହନ କରୁଛି ମାତ୍ର । ଏହା ବ୍ୟତୀତ ବିଶ୍ୱର ବିଭିନ୍ନ ପ୍ରାନ୍ତରେ ଭିନ୍ନ ଭିନ୍ନ ପ୍ରତିଯୋଗିତାମାନ କରାଯାଉଅଛି । ଏସିଆ ମହାଦେଶର ବିଭିନ୍ନ ରାଷ୍ଟ୍ର କିଛିକାଳ ହେଲା ସମ୍ମିଳିତ ପ୍ରଚେଷ୍ଟାରେ 'ଏସିଆଡ୍' ନାମକ ପ୍ରତିଯୋଗିତାର ବ୍ୟବସ୍ଥା କରିଛନ୍ତି । ଏହା ପ୍ରଥମେ ଭାରତବର୍ଷରେ ହିଁ ଆରମ୍ଭ ହୋଇଥିଲା । ଚଳିତ ବର୍ଷ ଦିଲ୍ଲୀଠାରେ ଏହାର ନବମ ଉତ୍ସବ ମହାସମାରୋହରେ ଅନୁଷ୍ଠିତ ହୋଇଯାଇଛି ।

ଖେଳ-କୁଦ ଶରୀର ନିମନ୍ତେ ଏକାନ୍ତ ଆବଶ୍ୟକ । ଏହାଦ୍ୱାରା ଶରୀର ସୁସ୍ଥ ଓ କର୍ମକ୍ଷମ ରହେ । ଶରୀର ସୁସ୍ଥ ରହିଲେ ମନ ମଧ୍ୟ ପ୍ରଫୁଲ୍ଲ ରହେ । ତେଣୁ କବି କାଳିଦାସ ଲେଖିଛନ୍ତି, "ଶରୀରମାଦ୍ୟଂ ଖଳୁ ଧର୍ମ ସାଧନମ୍" । ଏଥିରେ ସନ୍ଦେହ ନାହିଁ ଯେ, ସମୟାନୁସାରୀ ମାତ୍ରାଧିକ କ୍ରୀଡ଼ା ବୃତ୍ତିର ବିକାଶ ତଥା ଶିକ୍ଷାର ଉନ୍ନତିରେ ସହାୟକ ହୋଇଥାଏ ।

ଖେଳ-କୁଦ ପ୍ରତି ମାତ୍ରାଧିକ ଆସକ୍ତି ଅନେକ କ୍ଷେତ୍ରରେ ଶିକ୍ଷାର ବାଧକ ହୋଇଥାଏ । ମାତ୍ର ଏହାକୁ ଯଦି ଶିକ୍ଷାର ଏକ ଅଙ୍ଗ ରୂପେ ଗ୍ରହଣ କରିନିଆଯାଇ ଏଥିପାଇଁ ସୀମିତ ସମୟ ମାତ୍ର ଦିଆଯାଏ, ତେବେ ଏହାଦ୍ୱାରା ଛାତ୍ରର ପ୍ରକୃତରେ ଉନ୍ନତି ହେବ; ଅବନତି ନୁହେଁ ।

ଖେଳର ଉପଯୋଗିତା ବହୁମୁଖୀ । ପ୍ରଥମତଃ, ଏହାଦ୍ୱାରା ସହଯୋଗ ମନୋବୃତ୍ତି ବୃଦ୍ଧିପାଏ । ଲକ୍ଷ୍ୟ ସ୍ଥିରକରି ଗୋଟିଏ ଆଡ଼କୁ ଚାଲିବାର ଶିକ୍ଷା ଏଇଥିରୁ ହିଁ ମିଳିଥାଏ ।

ଆନ୍ତର୍ଜାତୀୟ ସହଯୋଗ ଭାବନା ବିକଶିତ କରିଥାଏ । ଜୀବନକୁ ନିୟମାନୁବର୍ତ୍ତୀ କରି ଚଲାଇବାର ଶିକ୍ଷା ମଧ୍ୟ ଏହି କ୍ରୀଡ଼ାକ୍ଷେତ୍ରରୁ ହିଁ ସମ୍ଭବ ହୋଇଥାଏ । ଏହା ବ୍ୟତୀତ ଖେଳ-କୁଦଦ୍ୱାରା ଛାତ୍ରମାନଙ୍କର ଅନେକ ଅସାମାଜିକ ପ୍ରବୃତ୍ତି ଦୂର ହୋଇଯାଏ । ପ୍ରତ୍ୟେକ ଛାତ୍ରର ମନରେ ଆପଣାର ଶକ୍ତି ଓ ସାମର୍ଥ୍ୟର ପ୍ରଦର୍ଶନ ନିମନ୍ତେ ଆଗ୍ରହ ଥାଏ । ଯଦି ସେଥିନିମନ୍ତେ ତାହାକୁ ଉପଯୁକ୍ତ କ୍ଷେତ୍ର ନ ମିଳେ, ତେବେ ସେ ଭଙ୍ଗାରୁଜା ଇତ୍ୟାଦି ଧ୍ୱଂସକାରୀ କାର୍ଯ୍ୟରେ ଲାଗିଯାଇପାରେ । ଖେଳ ତାହାର ଏହି ବିନାଶଶୀଳ ପ୍ରବୃତ୍ତିକୁ ବିକାଶଶୀଳ ଭାବରେ ରୂପାନ୍ତରିତ କରିଦିଏ ।

କ୍ରୀଡ଼ା ମଣିଷର ସହନଶୀଳତା ବୃଦ୍ଧି କରାଇଥାଏ । ଜୟ ଏବଂ ପରାଜୟକୁ ଉଦାର ଭାବରେ ଗ୍ରହଣ କରିବାର ଯେଉଁ ଶକ୍ତି ତାକୁ ଖେଳପଡ଼ିଆରୁ ମିଳେ, ପରବର୍ତ୍ତୀ ଜୀବନରେ ତାହା ଅତ୍ୟନ୍ତ ସହାୟକ ହୋଇଥାଏ । ଜୀବନମୁଦ୍ଧରେ ଲଢ଼ିବାର ପ୍ରେରଣା ଏବଂ ତୀବ୍ରରୁ ତୀବ୍ରତର ସଙ୍କଟର ସମ୍ମୁଖୀନ ହେବାର ଶକ୍ତି ମଧ୍ୟ ସେ ଖେଳପଡ଼ିଆରୁହିଁ ସଂଗ୍ରହ କରେ । ଜଣେ ପ୍ରକୃତ ଖେଳାଳି ସଂସାରର ସମସ୍ତ ପ୍ରତିବନ୍ଧକକୁ ମଧ୍ୟ ଖେଳୁଆଡ଼ି ମନୋବୃତ୍ତିରେ ଗ୍ରହଣ କରିନେଇ ତାକୁ ଅତିକ୍ରମ କରିଯିବାକୁ ଉଦ୍ୟମ କରିଥାଏ । ଶେଷ ପର୍ଯ୍ୟନ୍ତ ତା'ର ସାହସ ଅତୁଟ ଥାଏ ।

କ୍ରୀଡ଼ା ନେତୃତ୍ୱ ଚେତନାର ସ୍ରଷ୍ଟା । ନିଜ ଜୀବନକାଳରେ ପ୍ରତ୍ୟେକ ଖେଳାଳିକୁ କେତେବେଳେ ନିଜ ପାଇଁ କେତେବେଳେ ଅବା ଅପର କାହା ପାଇଁ ମାର୍ଗ ପ୍ରସ୍ତୁତ କରିବାକୁ ହୋଇଥାଏ । ନେତା ହେବାର ପ୍ରତ୍ୟେକ ଯୋଗ୍ୟତା ତେଣୁ ଖେଳପଡ଼ିଆରୁ ସଂଗ୍ରହ କରାଯାଇପାରେ । ଗଣତନ୍ତ୍ର ଶାସନରେ ସାର୍ଥକ ନେତୃତ୍ୱର ପ୍ରୟୋଜନ ଖୁବ୍ ବେଶି ଏବଂ ଏଥିପାଇଁ ଖେଳ-କୁଦର ଭୂମିକାକୁ ଅସ୍ୱୀକାର କରିହେବ ନାହିଁ ।

କ୍ରୀଡ଼ା ମନୋରଞ୍ଜନର ଏକ ପ୍ରଧାନ ସାଧନ । ଏହା ବ୍ୟତୀତ ଖେଳ-କୁଦ ମଣିଷର ସମସ୍ତ ପ୍ରକାର ମାନସିକ ଅବସାଦ ଦୂରକରି ନୂତନ ଉତ୍ସାହ ଏବଂ ପ୍ରେରଣା ସୃଷ୍ଟିକରେ । କ୍ରୀଡ଼ା ଅବସରରେ ପାରସ୍ପରିକ ପରିଚୟର ଏକ ଚମତ୍କାର ସୁଯୋଗ ସୃଷ୍ଟି ହୁଏ । ଖେଳାଳିମାନେ ପରସ୍ପରକୁ ଜାଣନ୍ତି, ମତ ବିନିମୟ କରନ୍ତି । ଆନ୍ତର୍ଜାତୀୟ କ୍ରୀଡ଼ା ପ୍ରତିଯୋଗିତା ଦେଶ ଦେଶ ମଧ୍ୟରେ ଉତ୍ତମ ବୁଝାମଣା ସୃଷ୍ଟି କରିଥାଏ । ଏହାଦ୍ୱାରା ପାରସ୍ପରିକ ମନୋମାଳିନ୍ୟ ଅନେକ କ୍ଷେତ୍ରରେ ଦୂର ହୋଇଯିବାର ସମ୍ଭାବନା ଥାଏ ।

କେବଳମାତ୍ର ସେହି ସବୁ ଖେଳ ପ୍ରତି ମନୋଯୋଗୀ ହେବା ବାଞ୍ଛନୀୟ, ଯାହା ଆମର ଶରୀର ଓ ମନ ଉଭୟର ବିକାଶରେ ସହାୟକ ହେବ । କ୍ରୀଡ଼ାକୁ ଏକ ବ୍ୟସନରୂପରେ କଦାପି ଗ୍ରହଣ କରିବା ଉଚିତ ନୁହେଁ । ତାସ, ଚେସ୍, ପଶା ଇତ୍ୟାଦି ଖେଳରେ ମାନସିକ ବ୍ୟାୟାମ ଅବଶ୍ୟ ହୁଏ; ମାତ୍ର ଅନେକ ସମୟରେ ଏହା ବ୍ୟସନ ରୂପରେ ଧନ, ସମୟ, ଏବଂ ସ୍ୱାସ୍ଥ୍ୟ ପକ୍ଷରେ ହାନିକାରକ ହୋଇଥାଏ । ଏଥିପ୍ରତି ସାବଧାନ ରହିବାକୁ ହେବ ।

ଖେଳାଳିକୁ କ୍ରୋଧ ତ୍ୟାଗ କରିବାକୁ ପଡ଼ିବ । ଜୟ-ପରାଜୟକୁ ସମାନଭାବରେ ଗ୍ରହଣ

କରନେବା ତା' ପକ୍ଷରେ ଏକାନ୍ତ କର୍ତ୍ତବ୍ୟ । ଜୟଲାଭ ନିମନ୍ତେ ମିଥ୍ୟାଭାଷଣ, ବଳପ୍ରୟୋଗ, ଭଙ୍ଗାରୁଜା ଇତ୍ୟାଦି ଆଦୌ ଖେଳାଳିସୁଲଭ ଗୁଣ ନୁହେଁ । କେବଳ ମାତ୍ର ଖେଳଭାବରେ ଯେଉଁ ଖେଳ ଖେଳାଯାଏ, ତାହାଦ୍ୱାରା ସ୍ୱାସ୍ଥ୍ୟ, ଜ୍ଞାନ, ବୁଦ୍ଧି, ସହଯୋଗ ଏବଂ ସହନଶୀଳତା ପ୍ରଭୃତି ବୃଦ୍ଧି ପାଇଥାଏ । ଖେଳର ସ୍ୱରୂପ ସର୍ବଦା ତେଣୁ ଏଇଭଳି ହେବା ଉଚିତ ।

# ସଂଯୁକ୍ତ ରାଷ୍ଟ୍ରସଂଘ

ରାଷ୍ଟ୍ରସଂଘ ବିଶ୍ୱର ସମସ୍ତ ଦେଶମାନଙ୍କର ପ୍ରତିନିଧି ସଭା । ଏହାହିଁ ହେଉଛି ଏକମାତ୍ର ମଞ୍ଚ, ଯେଉଁଠି ପ୍ରତ୍ୟେକ ଦେଶର ପ୍ରତିନିଧି ପରସ୍ପର ସହିତ ମିଳିତହୋଇ ନିଜନିଜର ମତପାର୍ଥକ୍ୟ ଦୂରକରିପାରନ୍ତି, ପରସ୍ପରକୁ ସାହାଯ୍ୟ ସହଯୋଗ କରିପାରନ୍ତି, ବିଶ୍ୱର ମଙ୍ଗଳ ନିମନ୍ତେ ସମ୍ମିଳିତ ପଦକ୍ଷେପ ଗ୍ରହଣ କରିପାରନ୍ତି କିମ୍ବା ଦେଶ ଦେଶ ମଧ୍ୟରେ ବଢ଼ିଉଠୁଥିବା ମତପାର୍ଥକ୍ୟକୁ ଦୂରକରିପାରନ୍ତି ।

ବିଂଶ ଶତାବ୍ଦୀରେ ଦୁଇଦୁଇଟି ବିଶ୍ୱଯୁଦ୍ଧ ଘଟିଯାଇଛି । ପ୍ରଥମଟି ଆରମ୍ଭ ହୋଇଥିଲା ୧୯୧୪ ମସିହାରେ ଏବଂ ଦ୍ୱିତୀୟଟିର ଆରମ୍ଭ ୧୯୩୯ ମସିହାରେ । ଏହାର ନୃଶଂସତା, ମାନବଜାତିର ସାମୂହିକ ଦୁର୍ଦ୍ଦଶା ବିଶ୍ୱର ଚିନ୍ତାଶୀଳ ନାଗରିକମାନଙ୍କ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟିକଲା, ସେଥିରେ ସମସ୍ତେ ଏକମତ ହେଲେ ଯେ, ସମସ୍ତ ଦେଶପାଇଁ ଏକ ସାଧାରଣ ମଞ୍ଚ ସ୍ଥିର କରାଯିବା ଏକାନ୍ତ ଆବଶ୍ୟକ, ଯେଉଁଠି ମିଳିତ ହୋଇ ପାରସ୍ପରିକ ମତପାର୍ଥକ୍ୟ, ଭୁଲ୍ ବୁଝାମଣା ଇତ୍ୟାଦି ଦୂର କରିବା ନିମନ୍ତେ ଉଦ୍ୟମ କରାଯାଇ ବିଶ୍ୱରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା କରାଯାଇପାରିବ । ଏଥିନିମନ୍ତେ ସର୍ବପ୍ରଥମେ ୧୯୧୯ ମସିହାରେ ଚେଷ୍ଟା କରାଯାଇଥିଲା । ରାଷ୍ଟ୍ରସଂଘ ବା League of Nations ଏହି ପ୍ରଚେଷ୍ଟାର ଆଦ୍ୟ ଫଳ । ଆମେରିକାର ତତ୍କାଳୀନ ରାଷ୍ଟ୍ରପତି ୱିଲସନଙ୍କ ସଭାପତିତ୍ୱରେ ଏଥିରେ ଯେଉଁ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା, ସେଥିରେ ପରାଜିତ ଜର୍ମାନୀ ରାଷ୍ଟ୍ରକୁ ନ୍ୟୂନ ପ୍ରତିପନ୍ନ କରିବା ନିମନ୍ତେ ଏଭଳି ବ୍ୟବସ୍ଥା ରହିଥିଲା ଯେ, ହିଟ୍‌ଲରଙ୍କ ନେତୃତ୍ୱରେ ଜର୍ମାନୀ ଏହା ବିରୁଦ୍ଧରେ ପ୍ରତିବାଦ ଜଣାଇଲା । ଜର୍ମାନୀର ବିଦ୍ରୋହର ସମ୍ମୁଖୀନ ହେବା ନିମନ୍ତେ ରାଷ୍ଟ୍ରସଂଘ ନିକଟରେ କୌଣସି ସୈନ୍ୟବାହିନୀ କିମ୍ବା ସାମର୍ଥ୍ୟ ନଥିଲା । ଜର୍ମାନୀ ଯୁଦ୍ଧ ଘୋଷଣା କରି ଅନେକ ଦେଶ ଅଧିକାର କରିବସିଲା ।

ଏହି ଯୁଦ୍ଧରେ ଇଂଲଣ୍ଡ, ଫ୍ରାନ୍‌ସ, ପୋଲାଣ୍ଡ ଏବଂ ଆମେରିକା ଇତ୍ୟାଦି ମିତ୍ରରାଷ୍ଟ୍ର ଗୋଟିଏ ପକ୍ଷରେ ତଥା ଜର୍ମାନୀ, ଇଟାଲୀ ଏବଂ ଜାପାନ୍ ଆଦି ଅନ୍ୟପକ୍ଷରେ ରହି ଲଢୁଥିଲେ । ସେ

ସମୟରେ ଭାରତବର୍ଷ ଇଂରେଜ ଶାସନାଧୀନ ରହିଥିଲା । ଏହି ଭୟଙ୍କର ଯୁଦ୍ଧରେ ଲକ୍ଷ ଲକ୍ଷ ଲୋକ ପ୍ରାଣ ହରାଇଲେ । ଆମେରିକା ଜାପାନର ଦୁଇଟି ସମୃଦ୍ଧ ନଗରୀ ହିରୋସିମା ତଥା ନାଗାସାକି ଉପରେ ପରମାଣୁବୋମା ପକାଇ ଲକ୍ଷ ଲକ୍ଷ ନାଗରିକଙ୍କୁ ହତ୍ୟାକଲା । ଲକ୍ଷ ଲକ୍ଷ ଲୋକ ସାରା ଜୀବନ ପାଇଁ ପଙ୍ଗୁ ହୋଇଗଲେ । ଏହାପରେ ଦ୍ୱିତୀୟ ମହାଯୁଦ୍ଧ ସମାପ୍ତ ହେଲା ।

ପୁନର୍ବାର ଏହିଭଳି ଭୟଙ୍କର ବିଶ୍ୱଯୁଦ୍ଧ ନହେଉ, ଏହି କାମନାରେ ମିତ୍ରପକ୍ଷ 'ଆଟଲାଣ୍ଟିକ୍ ଘୋଷଣାପତ୍ର' ପ୍ରସ୍ତୁତ କଲେ । ସମସ୍ତ ମାନବଜାତିର ଧର୍ମ ଏବଂ ବ୍ୟକ୍ତିଗତ ସ୍ୱାଧୀନତା ରକ୍ଷା ତଥା ଆଶ୍ୱାସନା ପ୍ରଦାନ ହିଁ ଏହାର ଲକ୍ଷ୍ୟ ଥିଲା । ଏହି ଉଦ୍ଦେଶ୍ୟର ସଫଳତା ନିମନ୍ତେ ପ୍ରଥମେ ଆମେରିକାର ସାନଫ୍ରାନ୍‌ସିସ୍‌କୋ ନଗରରେ ଏକ ବିଶାଳ ସମ୍ମେଳନ ଅନୁଷ୍ଠିତ ହେଲା । ଅନେକ ଦେଶ ଏଥିରେ ଅଂଶ ଗ୍ରହଣ କଲେ । ସେହିଠାରେ ହିଁ ସମ୍ମିଳିତ ରାଷ୍ଟ୍ରସଂଘ (U. N. O.) ର ଜନ୍ମହେଲା । ସେଥିରେ ନିମ୍ନଲିଖିତ ପ୍ରସ୍ତାବ ଗ୍ରହଣ କରାଯାଇଥିଲା; ଯଥା—

(୧) ଯୁଦ୍ଧ ଏକ ପାଶବିକ ପ୍ରବୃତ୍ତି, କୌଣସିମତେ ଏହାକୁ ଉତ୍ସାହିତ କରାଯିବା ଉଚିତ ନୁହେଁ ।

(୨) ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ଦେଶର ନାଗରିକ ସମାନ ।

(୩) ପ୍ରତ୍ୟେକ ଦେଶର ଆଭ୍ୟନ୍ତରୀଣ ସମସ୍ୟା ଉପରେ ବାହାରର କୌଣସି ଦେଶ ହସ୍ତକ୍ଷେପ କରିପାରିବେ ନାହିଁ ।

(୪) ଗଣତନ୍ତ୍ର ଶାସନ-ବ୍ୟବସ୍ଥା ହିଁ ସର୍ବଶ୍ରେଷ୍ଠ ।

ଆଜି ସମ୍ମିଳିତ ରାଷ୍ଟ୍ରସଂଘ ବା ଜାତିସଂଘ ଏକ ଶକ୍ତିଶାଳୀ, ସୁସଂଗଠିତ କଲ୍ୟାଣକାମୀ ବିଶ୍ୱସଂସ୍ଥା । ଏହାର ସଭ୍ୟସଂଖ୍ୟା ବର୍ତ୍ତମାନ ଶହେ ଏଗାରରୁ ଅଧିକ । ଏହି ସଂସ୍ଥାର କେତେକ ବିଭାଗ ରହିଛି; ସେଗୁଡ଼ିକ ହେଲା :

(କ) ସାଧାରଣ ବ୍ୟବସ୍ଥା ସଭା—ଯେକୌଣସି ସମସ୍ୟା ଉପରେ ଏହାର ନିଷ୍ପତ୍ତିକୁ ଚୂଡ଼ାନ୍ତ ବୋଲି ମାନ୍ୟକରାଯାଏ । ବର୍ଷକୁ ଥରେମାତ୍ର ଏହାର ଅଧିବେଶନ ବସିଥାଏ ।

(ଖ) ସୁରକ୍ଷାପରିଷଦ—ବିଶ୍ୱରେ ଶାନ୍ତିସ୍ଥାପନ ଏହାର ଲକ୍ଷ୍ୟ । ପ୍ରୟୋଜନବୋଧରେ ଏହି ସଂସ୍ଥା ଅତ୍ୟାଚାରିତ ଦେଶକୁ ସାହାଯ୍ୟ କରିଥାଏ ଏବଂ ଯୁଦ୍ଧ ନିରୋଧର ଉପାୟ ଗ୍ରହଣ କରିଥାଏ ।

(ଗ) ବିଶ୍ୱ-ବ୍ୟାଙ୍କ—ପ୍ରୟୋଜନ ପଡ଼ିଲେ ଏହି ସଂସ୍ଥା ବିକାଶଶୀଳ ଦେଶମାନଙ୍କୁ ଋଣ ଦାନ କରିଥାଏ ।

(ଘ) ବିଶ୍ୱସ୍ୱାସ୍ଥ୍ୟ ସଂଗଠନ—ବିଶ୍ୱର ବିଭିନ୍ନ ଅଞ୍ଚଳରେ ପ୍ରସାରିତ ହେଉଥିବା ରୋଗ ବିରୁଦ୍ଧରେ ସ୍ଥାୟୀ ବ୍ୟବସ୍ଥା ଗ୍ରହଣ କରି ସମଗ୍ର ବିଶ୍ୱଜନତାର ସୁସ୍ୱାସ୍ଥ୍ୟ ପ୍ରତି ଲକ୍ଷ୍ୟରଖିବା ଏହି ସଂସ୍ଥାର ଦାୟିତ୍ୱ ।

(ଙ) ଖାଦ୍ୟ ଏବଂ କୃଷି ସଂଗଠନ—ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳକୁ ସାହାଯ୍ୟ ପ୍ରେରଣ କରି କୃଷିର ବିକାଶ ନିମନ୍ତେ ନିରବଚ୍ଛିନ୍ନ ଉଦ୍ୟମ ହେଉଛି ଏହି ସଂସ୍ଥାର ଲକ୍ଷ୍ୟ ।

(ଚ) ଅର୍ଥନୈତିକ, ସାମାଜିକ ଏବଂ ସାଂସ୍କୃତିକ ସଂଗଠନ—ଏହାର ସହଯୋଗରେ ଦେଶ ଦେଶ ମଧ୍ୟରେ ଆର୍ଥିକ ସହାୟତା, ସାମାଜିକ ବିଚାରଧାରାର ବିନିମୟ ତଥା ସାଂସ୍କୃତିକ ମତର ଆଦାନ-ପ୍ରଦାନ ହୋଇଥାଏ ।

ଏହିଭଳି ଏହାର ଆହୁରି ଅନେକ ଶାଖାମାନ ରହିଛି, ଯାହାଦ୍ୱାରା ଦେଶ ଦେଶ ମଧ୍ୟରେ ସଦ୍‌ଭାବ, ମୈତ୍ରୀ ଏବଂ ସହଯୋଗ ବୃଦ୍ଧି କରାଇ ପାରସ୍ପରିକ ବୈମନସ୍ୟ ଦୂରକରିବା ନିମନ୍ତେ ନିରବଚ୍ଛିନ୍ନ ଉଦ୍ୟମ ଚାଲୁରହିଛି । ଇତିମଧ୍ୟରେ ଏହା କେତୋଟି ଗୁରୁତ୍ୱପୂର୍ଣ୍ଣ ସମସ୍ୟାର ସମାଧାନ ମଧ୍ୟ କରିପାରିଛି । ଉତ୍ତର ଏବଂ ଦକ୍ଷିଣ କୋରିଆ ମଧ୍ୟରେ ସ୍ୱାତନ୍ତ୍ର୍ୟରକ୍ଷା, ଭାରତ-ପାକିସ୍ଥାନ ଯୁଦ୍ଧ, ଆରବଦେଶ ଯୁଦ୍ଧ ଏବଂ ଚୀନ୍-ଭିଏତ୍‌ନାମ ଯୁଦ୍ଧ ପ୍ରଭୃତିରେ ଏହାର ଉଲ୍ଲେଖଯୋଗ୍ୟ ଭୂମିକା ରହିଛି । ଯୁଦ୍ଧର ପ୍ରସାର ବନ୍ଦ କରିବାରେ ଏହାର ଭୂମିକା ଅନସ୍ୱୀକାର୍ଯ୍ୟ । ଆଫ୍ରିକାର ବିଭିନ୍ନ ଅଞ୍ଚଳକୁ ବିଦେଶୀ ଶାସନକବଳରୁ ସ୍ୱାଧୀନ କରାଇବାରେ ମଧ୍ୟ ଏହାର ଭୂମିକା ରହିଛି । ବିଶ୍ୱର କୃଷି, ଅର୍ଥନୀତି, ସ୍ୱାସ୍ଥ୍ୟ, ଶିକ୍ଷା ଏବଂ ସଂସ୍କୃତିର ବିକାଶରେ ଏହାର କାର୍ଯ୍ୟ ପ୍ରଶଂସନୀୟ । ବିଶେଷକରି ଅନଗ୍ରସର ଦେଶଗୁଡ଼ିକର ସାମୂହିକ ବିକାଶ ନିମନ୍ତେ ଏହା ଯେଉଁଭଳି କାର୍ଯ୍ୟ କରୁଛି, ତାହା ବାସ୍ତବିକ ଅଭିନନ୍ଦନୀୟ ।

ଜାତିସଂଘରେ ପ୍ରତିନିଧି-ଗ୍ରହଣ ଜନସଂଖ୍ୟାଭିତ୍ତିକ ନହୋଇ ଦେଶର ସ୍ଥିତିଭିତ୍ତିକ ହୋଇଥାଏ । ସମସ୍ତ ଦେଶର ପ୍ରତିନିଧି ଏକତ୍ର ହୋଇ ବିଚାର-ବିନିମୟ କରନ୍ତି । ଏହି ସଂଘର ମୁଖ୍ୟ ପାଳି ଅନୁସାରେ ଭିନ୍ନ ଭିନ୍ନ ଦେଶରୁ ନିର୍ବାଚିତ ହୁଅନ୍ତି । ଆମର ପୂର୍ବତନ ନେତ୍ରୀ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ଅତୀତରେ ଏହାର ମୁଖ୍ୟ ହୋଇଥିଲେ । ନିର୍ବାଚନଦ୍ୱାରା ହିଁ ପ୍ରତ୍ୟେକ କ୍ଷେତ୍ରରେ କାର୍ଯ୍ୟନିର୍ବାହକ ବଚ୍ଛାଯାଏ । ଆମେରିକା ଓ ରୁଷ୍ ସମେତ ପାଞ୍ଚଟି ଦେଶର 'ବିଶେଷ ମତ' (ଭିଟୋ) ପ୍ରଦାନ କରିବାର ଅଧିକାର ରହିଛି । ଏହା ନିଶ୍ଚିତ ଭାବରେ ଏକ ନିନ୍ଦିତ ପ୍ରଥା । ଜାତିସଂଘ ଆଜି ପୁଞ୍ଜିପତି ଏବଂ ସାମ୍ୟବାଦୀ—ଏଇ ଦୁଇ ଗୋଷ୍ଠୀରେ ବିଭକ୍ତ । ଏମାନଙ୍କ ମଧ୍ୟରେ ତିକ୍ତତା ପ୍ରାୟ ବୃଦ୍ଧିପାଉଛି ।

ଏପର୍ଯ୍ୟନ୍ତ ଯୁଦ୍ଧ-ନିରୋଧ ବ୍ୟାପାରରେ ଜାତିସଂଘ ବେଶ୍ ସଫଳ ହୋଇଛି । ମାତ୍ର କେତେକ କ୍ଷେତ୍ରରେ ଏହା କୌଣସି ନିଷ୍ପତ୍ତି ଗ୍ରହଣ କରିପାରିନାହିଁ । କାଶ୍ମୀର ସମସ୍ୟାର

ଏପର୍ଯ୍ୟନ୍ତ କୌଣସି ସନ୍ତୋଷଜନକ ସମାଧାନ ହୋଇନାହିଁ । ବଙ୍ଗଳା ଦେଶରେ ପାକିସ୍ତାନୀ ସୈନ୍ୟ ଯେତେବେଳେ ନାରକୀୟ ଲୀଳା ଚଳାଇଥିଲେ, ସେତେବେଳେ ଜାତିସଂଘ ନୀରବଦ୍ରଷ୍ଟା ରହିଥିଲା । ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତା ଏହାଦ୍ୱାରା ବନ୍ଦ କରାଯାଇ ପାରିନାହିଁ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, କେତେକ ରାଷ୍ଟ୍ରର ଅତ୍ୟଧିକ ଚାପ ଏହାକୁ ସ୍ୱାଧୀନ ପଦକ୍ଷେପ ଗ୍ରହଣରୁ ବିରତ କରୁଛି । ତଥାପି ଏହାହିଁ ହେଉଛି ବିଶ୍ୱଶାନ୍ତି ପ୍ରତିଷ୍ଠାର ଶେଷ ଆଶ୍ରୟସ୍ଥଳ । ଏହା ଯଦି ସର୍ବପ୍ରଭାବମୁକ୍ତ ହୋଇପାରନ୍ତା, ତେବେ ବିଶ୍ୱରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠାର ବାଟ ଖୋଲିଯାଆନ୍ତା ।

## ଭାରତରେ ଗଣତନ୍ତ୍ରର ଭବିଷ୍ୟତ୍

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତବର୍ଷ ଦୀର୍ଘକାଳର ଇଂରେଜଶାସନରୁ ମୁକ୍ତ ହୋଇ ଏକ ସ୍ୱାଧୀନ ରାଷ୍ଟ୍ର ରୂପରେ ଆତ୍ମପ୍ରକାଶ କଲା । ୧୯୫୦ ମସିହା ଜାନୁୟାରୀ ୨୬ ତାରିଖ ଦିନ ଏହାକୁ ଏକ ସାଧାରଣତନ୍ତ୍ର ରାଷ୍ଟ୍ର ଘୋଷଣା କରାଗଲା । ଭାରତର ତତ୍କାଳୀନ ନେତୃବୃନ୍ଦ ଭାରତ ନିମନ୍ତେ ଗଣତାନ୍ତ୍ରିକ ଶାସନ-ବ୍ୟବସ୍ଥାର ପ୍ରଚଳନ କରାଇଲେ । ଆମେରିକାର ପୂର୍ବତନ ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ୍ ଡିମୋକ୍ରେସି ବା ଗଣତନ୍ତ୍ରର ବ୍ୟାଖ୍ୟାକରି କହିଥିଲେ, "Democracy is Government of the people, for the people and by the people." ଅର୍ଥାତ୍ ଗଣତନ୍ତ୍ର ହେଉଛି ଜନସାଧାରଣଙ୍କର, ଜନସାଧାରଣଙ୍କପାଇଁ, ଜନସାଧାରଣଙ୍କଦ୍ୱାରା ପ୍ରଚଳିତ ଶାସନ-ବ୍ୟବସ୍ଥା । ଏହାହିଁ ଆଜିପର୍ଯ୍ୟନ୍ତ ଗଣତନ୍ତ୍ରର ସର୍ବଶ୍ରେଷ୍ଠ ବ୍ୟାଖ୍ୟା ହୋଇ ରହିଛି ।

ଏହି ବ୍ୟବସ୍ଥା ଅନୁସାରେ ୧୯୫୧ ମସିହାରେ ଭାରତରେ ପ୍ରଥମ ଥର ପାଇଁ ସାଧାରଣ ନିର୍ବାଚନ ହେଲା । ଭୋଟ-ବ୍ୟବସ୍ଥା ଦ୍ୱାରା ଲୋକମାନେ ନିଜନିଜର ପ୍ରତିନିଧି ନିର୍ବାଚନ କଲେ ଏବଂ ସଂଖ୍ୟାଗରିଷ୍ଠ ଦଳରୂପରେ ତତ୍କାଳୀନ ଜନପ୍ରିୟ ରାଜନୈତିକ ଦଳ ଜାତୀୟ କଂଗ୍ରେସ ଭାରତର ଶାସନ-ବ୍ୟବସ୍ଥା ଗ୍ରହଣକଲା । ଦଳର ନେତାରୂପରେ ଜବାହରଲାଲ ନେହରୁ ହେଲେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ । ଏହି ସମୟରେ ଭାରତ ନିମନ୍ତେ ଦ୍ୱୈତ-ଶାସନ ବ୍ୟବସ୍ଥା ପ୍ରଚଳନ କରାଯାଇଥିଲା; ଅର୍ଥାତ୍ ରାଜ୍ୟଗୁଡ଼ିକର ଶାସନ ରାଜ୍ୟର ବ୍ୟବସ୍ଥାପକସଭାଦ୍ୱାରା ତଥା କେନ୍ଦ୍ରଶାସନ କେନ୍ଦ୍ରରେ ଥିବା ଲୋକସଭା ଏବଂ ରାଜ୍ୟସଭା ଦ୍ୱାରା କରାଗଲା । ରାଜ୍ୟ ବିଧାନ ସଭାରେ ସଂଖ୍ୟାଗରିଷ୍ଠ ଦଳ ମନ୍ତ୍ରିମଣ୍ଡଳ ଗଢ଼ିଲେ ଏବଂ ସେହି ଦଳର ନେତା ହେଲେ ମୁଖ୍ୟମନ୍ତ୍ରୀ । ରାଜ୍ୟଗୁଡ଼ିକ କେନ୍ଦ୍ରର

ଅଧୀନରେ ରହିଲେ । କେନ୍ଦ୍ରରେ ପ୍ରଧାନମନ୍ତ୍ରୀଙ୍କୁ ଛାଡ଼ିଦେଲେ ଜଣେ ରାଷ୍ଟ୍ରପତି ରହିଲେ ।

ଗଣତନ୍ତ୍ର ଶାସନ-ବ୍ୟବସ୍ଥାରେ ଯେହେତୁ ଜନସାଧାରଣ ଶାସନ ସହିତ ସିଧାସଳଖ ସମ୍ପୃକ୍ତ, ତେଣୁ ଏହାକୁ ଏକ ପ୍ରଜାମଙ୍ଗଳକାରୀ ଶାସନରୂପେ ଗ୍ରହଣ କରିନିଆଯାଇପାରେ; ମାତ୍ର ଏହାର ନିର୍ବାଚନ ପ୍ରଣାଳୀ ଭାରତ ନିମନ୍ତେ ନିତାନ୍ତ ଶୁଭଙ୍କର ପ୍ରାମାଣିତ ହୋଇନାହିଁ । ଭୋଟ ସାହାଯ୍ୟରେ ନିଜର ଉପଯୁକ୍ତ ପ୍ରତିନିଧି ବାଛିବାର ସ୍ୱାଧୀନତା ପ୍ରତ୍ୟେକ ନାଗରିକଙ୍କର ରହିଛି । ଏଥିପାଇଁ ଯେଉଁ ବିଚାରବୁଦ୍ଧିର ସାବଧାନୀ ପ୍ରୟୋଗ ଏକାନ୍ତ ଆବଶ୍ୟକ ହୋଇଥାଏ, ତାହା ଏପର୍ଯ୍ୟନ୍ତ ସୁଦ୍ଧା ଭାରତୀୟମାନେ ଅର୍ଜନ କରିପାରିନାହାନ୍ତି । ଶିକ୍ଷା-ବ୍ୟବସ୍ଥା ସ୍ୱାଧୀନ ଚିନ୍ତାର ଜନ୍ମଦିଏ । ବ୍ରିଟିଶ୍ ଶାସନ-ବ୍ୟବସ୍ଥାରେ ଭାରତର ଶିକ୍ଷା ଅତ୍ୟନ୍ତ ଧୂମାଚ୍ଛନ୍ନ ଅବସ୍ଥାରେ ରହିଥିଲା । ଆଜି ସ୍ୱାଧୀନତା ଲାଭର ୩୫ ବର୍ଷ ପରେ ସୁଦ୍ଧା ଶିକ୍ଷିତ-ମାନଙ୍କର ହାର ଯେ ଆଶାନୁରୂପ ହୋଇପାରିଛି ତାହା କୁହାଯାଇ ପାରିବନାହିଁ । ଭାରତର ଗ୍ରାମାଞ୍ଚଳରେ ଏବେ ମଧ୍ୟ ଅର୍ଦ୍ଧାଧିକ ଜନତାଙ୍କର ଅକ୍ଷର-ପରିଚୟ ସୁଦ୍ଧା ନାହିଁ । ଏହାର କାରଣ ହେଉଛି ଦାରିଦ୍ର୍ୟ । ଦାରିଦ୍ର୍ୟର ସୀମାରେଖାତଳେ ରହି, ଉଦରପୂର୍ତ୍ତି ନିମନ୍ତେ ସଂଗ୍ରାମ କରୁଥିବା ଜନତା ଶିକ୍ଷା ନିମନ୍ତେ ସୁବିଧା-ସୁଯୋଗ ପାଉନାହାନ୍ତି, ଯେତିକ ବା ମିଳୁଛି ତାକୁ ଉପଯୋଗ କରିବା ନିମନ୍ତେ ଆଗ୍ରହୀ ନୁହନ୍ତି । ଏହିଭଳି ଭାବରେ ଅଶିକ୍ଷା ଏବଂ ଦାରିଦ୍ର୍ୟ ଜନତା ମଧ୍ୟରେ ଉପଯୁକ୍ତ ବିଚାରବୋଧ ସୃଷ୍ଟିକରିପାରୁନାହିଁ; ଫଳରେ ନିର୍ବାଚନ ନିମନ୍ତେ ଯେଉଁ ଦାୟିତ୍ୱ ସେମାନଙ୍କ ଉପରେ ନ୍ୟସ୍ତ କରାଯାଇଛି, ତାହାର ଗୁରୁତ୍ୱ ସେମାନେ ଭଲଭାବରେ ହୃଦୟଙ୍ଗମ କରି-ପାରୁନାହାନ୍ତି । ନାନା ପ୍ରଲୋଭନ ସେମାନଙ୍କ ବିଚାର କ୍ଷମତାକୁ ଦୁର୍ବଳ କରି ପକାଉଛି । ପରିଣାମରେ ଦେଖାଯାଉଛି ଯେ, ଅନେକ କ୍ଷେତ୍ରରେ ବହୁ ଅସାଧୁ ବ୍ୟକ୍ତି ନିର୍ବାଚିତ ହୋଇ ଆସୁଛନ୍ତି ଏବଂ ପ୍ରକୃତ ସାଧୁ ସଚ୍ଚରିତ୍ର ଦେଶସେବକ ଦଯନୀୟ ଭାବରେ ପରାଜିତ ହେଉଛନ୍ତି । ଅସାଧୁ ବ୍ୟକ୍ତିଙ୍କ ହାତରେ ଶାସନ ଦାୟିତ୍ୱ ପଡ଼ିବା ପରେ ଦେଶରେ ପ୍ରିୟା-ପ୍ରୀତି-ତୋଷଣ, ଲାଞ୍ଚ, ମିଛ, ଘୁଷ୍‌ଖୋରି, ବ୍ୟକ୍ତିଗତ ସୁବିଧା ସୁଯୋଗ ଇତ୍ୟାଦି ଗ୍ରହଣ ବିଶେଷଭାବରେ ବୃଦ୍ଧିପାଇଛି । ପାଞ୍ଚବର୍ଷ ପାଇଁ କ୍ଷମତାରେ ରହି ଲୋକେ ପାଞ୍ଚପୁରୁଷପାଇଁ ଧନସମ୍ପତ୍ତି ଠୁଳ କରିଦେଉଛନ୍ତି । ରାଜନୀତି ତେଣୁ ଏକାଳରେ ଦେଶସେବାର ପବିତ୍ର କର୍ତ୍ତବ୍ୟ ତୁଲାଇବା ବଦଳରେ ଆତ୍ମସେବା ନିମନ୍ତେ ଏକ ସୁନ୍ଦର ବ୍ୟବସାୟରେ ପରିଣତ ହୋଇଛି । 'ନୋଟ୍ ନିଅ—ଭୋଟ୍ ଦିଅ' ନାମକ ଏକ ନୂତନ ସ୍ଲୋଗାନ୍ କିଛି ବର୍ଷ ହେଲା ସମଗ୍ର ଦେଶରେ ଶୁଣାଯାଉଛି । ଅର୍ଥର ପ୍ରଲୋଭନରେ ସରଳଚିତ୍ତ ସାଧାରଣ ଭୋଟଦାତାବୃନ୍ଦ ଅସାଧୁ ପ୍ରାର୍ଥୀଙ୍କର ନାନା ମିଥ୍ୟା ପ୍ରତିଶ୍ରୁତିରେ ଭୁଲିଯାଇ ସେମାନଙ୍କର ମୂଲ୍ୟବାନ୍ ଭୋଟ ଟିକ୍ରିକ ତାଙ୍କୁ ଦେଇଦେଉଛନ୍ତି ଏବଂ ପାଞ୍ଚବର୍ଷ ପର୍ଯ୍ୟନ୍ତ ଏହାର ପରିଣାମ ଭୋଗକରୁଛନ୍ତି । ଭଲଭାବରେ ଚିନ୍ତା କଲାବେଳକୁ

କେତେଗୁଡ଼ିକ କାହାଣୀକୁ ବୋହିଯାଉଛି । ଦୁର୍ନୀତିଗ୍ରସ୍ତ ବ୍ୟକ୍ତିମାନଙ୍କ ନିମନ୍ତେ କମିଶନ୍‌ମାନ ବସୁଛି; ଅନୁସନ୍ଧାନ କରାଯାଉଛି । ଜନସାଧାରଣଙ୍କ ଝାଳବୁହା ଧନର ଅପବ୍ୟୟ ହେଉଛି ସିନା, ପ୍ରତିକାର କିଛି ହେଉନାହିଁ । ଗଣତନ୍ତ୍ରର ସମସ୍ତ ଶୁଭ ଉଦ୍ଦେଶ୍ୟ ପଣ୍ଡ ହୋଇଛି ।

ଗଣତନ୍ତ୍ର ଶାସନ-ବ୍ୟବସ୍ଥାରେ ବିରୋଧୀଦଳର ଭୂମିକା ହେଉଛି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ଶାସନରେ ଏକାଧିକ ଦଳ ଗଢ଼ିବାର ପୂର୍ଣ୍ଣ ସ୍ୱାଧୀନତା ରହିଥିବାରୁ ବର୍ତ୍ତମାନ ଦେଶରେ ବହୁ ଦଳ ଗଢ଼ିଉଠିଛି । ଦୁଃଖର ବିଷୟ, ଏହି ଦଳଗୁଡ଼ିକ କୌଣସି ସାର୍ବଜନୀନ ମହତ୍ ଆଦର୍ଶ ଉପରେ ପ୍ରତିଷ୍ଠିତ ନହୋଇ ଅଧିକାଂଶ କ୍ଷେତ୍ରରେ ବ୍ୟକ୍ତିଗତ ଖିଆଲ୍ ଖୁସିର ଖେଳଣା ହୋଇ ମୁଣ୍ଡଟେକୁଛନ୍ତି; ଫଳରେ ଏମାନଙ୍କ ମଧ୍ୟରେ ନିୟତ ପ୍ରତିଦ୍ୱନ୍ଦ୍ୱିତା ଲାଗିରହିଛି । କୌଣସି ବୃହତ୍ତର କାରଣ ନିମନ୍ତେ ଏମାନେ ଏକତ୍ର ହୋଇ ଶାସକଗୋଷ୍ଠୀ ସହିତ ଲଢ଼ିପାରୁନାହାନ୍ତି । ଶାସକଗୋଷ୍ଠୀ ମଧ୍ୟ ଏହାର ପୂର୍ଣ୍ଣ ସୁଯୋଗ ଗ୍ରହଣ କରି ଯଥେଚ୍ଛା ବ୍ୟବହାର କରିଯାଉଛନ୍ତି କିମ୍ବା ଅନେକ କ୍ଷେତ୍ରରେ ଏଭଳି ମଧ୍ୟ ହୋଇଛି ଯେ, ବିରୋଧୀ ଦଳର ବିଶେଷ ପ୍ରତିପତ୍ତିଶାଳୀ ସଭ୍ୟମାନଙ୍କୁ ବିଭିନ୍ନ ଉପାୟରେ ଭିନ୍ନ ଭିନ୍ନ ବ୍ୟକ୍ତିଗତ ସୁବିଧା ଓ ସୁଯୋଗର ପ୍ରଲୋଭନ ଦେଖାଯାଇ, ସେମାନଙ୍କ ମୁହଁ ବନ୍ଦକରିଦିଆଯାଉଛି । ପରିଣାମରେ ମୂଳ ଉଦ୍ଦେଶ୍ୟ ବ୍ୟର୍ଥ ହୋଇଯାଉଛି ।

ଦ୍ୱିତୀୟ କଥା ହେଉଛି, ଦୀର୍ଘକାଳଧରି ଗୋଟିଏ ଦଳ ଶାସନକ୍ଷମତାରେ ରହିବା ଫଳରେ ସେମାନଙ୍କ ମନରେ ଅହଂକାର ଆସିଯାଉଛି । ସେବା-ମନୋବୃତ୍ତି କ୍ରମଶଃ ଲୋପ-ପାଇଯାଉଛି । ନିଜର ଯୋଗ୍ୟତା ପ୍ରମାଣ କରିବା ନିମନ୍ତେ ସେମାନଙ୍କ ମଧ୍ୟରେ ଆଉ କୌଣସି ଉତ୍ସାହ ରହୁନାହିଁ । ଯୋଗ୍ୟତାବଳରେ ନିଜର ସ୍ଥିତି ଦୃଢ଼ କରିବା ବଦଳରେ ସେମାନେ ଯେଉଁମାନଙ୍କ ଦ୍ୱାରା ନିଜର ସ୍ୱାର୍ଥ ସିଦ୍ଧ ହୋଇପାରିବ, ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ନିଜର କର୍ତ୍ତବ୍ୟ ରୂପେ ଗ୍ରହଣ କରିନେଇଛନ୍ତି । ପରିଣାମ ତ ଆମେ ଦେଖିଛୁଁ ।

ବର୍ତ୍ତମାନ ଅବସ୍ଥାରୁ ଆମେ ନିଶ୍ଚିତ ଭାବରେ ଜାଣିପାରୁଛୁ ଯେ, ଏ ଦେଶରେ ଗଣତନ୍ତ୍ରର ସ୍ଥିତି ଅତ୍ୟନ୍ତ ବିପନ୍ନ ହୋଇଛି । ଯେଉଁ ସ୍ୱାଧୀନତା ଆମ୍ଭମାନଙ୍କୁ ଦିଆଯାଇଥିଲା, ନିଜର ଅଯୋଗ୍ୟପଣିଆରୁ ଆମେ ତାହାର ଉପଯୁକ୍ତ ବିନିଯୋଗ କରିପାରିନାହୁଁ; ବରଂ ଅପବ୍ୟବହାର କରିଛୁଁ । ତେଣୁ ବେଳେବେଳେ ମନେହେଉଛି, ଗଣତନ୍ତ୍ର ଶାସନ ବ୍ୟବସ୍ଥା ହୁଏତ ଏ ଦେଶ ପାଇଁ ଆଦୌ ଉପଯୁକ୍ତ ନୁହେଁ । ଯେଉଁ ଶାସନ-ବ୍ୟବସ୍ଥା ଦରିଦ୍ରକୁ ଦରିଦ୍ରତର କରୁଛି, ଦେଶର ବାୟୁମଣ୍ଡଳକୁ ଅତ୍ୟାଚାରିତଙ୍କ କରୁଣ ଚିତ୍କାରରେ ପୂର୍ଣ୍ଣ କରାଉଛି, ଧନୀ କ୍ରମଶଃ ଅଧିକ ଧନୀ ହେବାରେ ଲାଗିଛନ୍ତି, ଯେଉଁମାନେ ଚୋରି, ଡକାୟତି, ଗୁଣ୍ଡାମି, ଠକାମି ଇତ୍ୟାଦି କରୁଛନ୍ତି, ସେମାନେ ବିନାଦ୍ୱିଧାରେ ସ୍ପଷ୍ଟ ଦିବାଲୋକରେ ଛାତିଫୁଲେଇ ଘୂରିବୁଲୁଛନ୍ତି, ସେଭଳି ଶାସନ-ବ୍ୟବସ୍ଥା ଯେ ନିଶ୍ଚିତ ଭାବରେ ଜନତାଙ୍କ ପାଇଁ ନୁହେଁ, ଏହା ଚିନ୍ତା କରିବା ନିମନ୍ତେ ସୁଯୋଗ ସୃଷ୍ଟି କରୁଛି ।

ବର୍ତ୍ତମାନ ଏହାର ପ୍ରତିକାର କରିବାର ଅବସର ଆସିଯାଇଛି । ଶାସନ-ବ୍ୟବସ୍ଥାକୁ କେବଳ ନିନ୍ଦା ଓ ସମାଲୋଚନା ନକରି, ଆମେ ଯଦି ଏହାର ତ୍ରୁଟିଗୁଡ଼ିକ ଚିହ୍ନି ସେସବୁକୁ ଦୂର କରିବା ନିମନ୍ତେ ସାମୂହିକ ଉଦ୍ୟମ କରିବା, ତେବେ ଏହି ଶାସନ-ବ୍ୟବସ୍ଥାହିଁ ଆମ ପାଇଁ ଅତ୍ୟନ୍ତ ଉପାଦେୟ ହେବ । ଦାୟିତ୍ୱପୂର୍ଣ୍ଣ ରୂପରେ, ଆମର ନେତୃବର୍ଗଙ୍କର ସାବଧାନୀ ପ୍ରୟୋଗ, ପ୍ରଲୋଭନ ପରିତ୍ୟାଗ, ଉପଯୁକ୍ତ ପ୍ରତିନିଧି ନିର୍ବାଚନରେ ଆମକୁ ସାହାଯ୍ୟ କରିବ । ଲୋକପ୍ରତିନିଧି ଯଦି ସାଧୁ, ସଚ୍ଚୋଟ ହୁଅନ୍ତି, ତେବେ ସେମାନେ ନିଜସ୍ୱ ବ୍ୟକ୍ତିସ୍ୱାର୍ଥ ବଦଳରେ ଜନସ୍ୱାର୍ଥକୁହିଁ ଅଧିକ ଗୁରୁତ୍ୱ ଦେବେ । ତାହାହେଲେ ଯେଉଁ ସାଧୁ ଉଦ୍ଦେଶ୍ୟକୁ ମନରେ ରଖି, ଭାରତ ନିମନ୍ତେ ଏହି ଧରଣର ଶାସନ-ବ୍ୟବସ୍ଥା ପ୍ରଚଳନ କରାଯାଇଥିଲା, ତାହା ସଫଳ ହେବ । ଉପଯୁକ୍ତ ଶିକ୍ଷାହିଁ ଏହି ବ୍ୟବସ୍ଥାର ପରିବର୍ତ୍ତନ କରାଇପାରିବ ।

## ସମ୍ବାଦପତ୍ରର ଭୂମିକା

ବର୍ତ୍ତମାନ ସମ୍ବାଦପତ୍ର ଜୀବନଯାତ୍ରାର ଏକ ଅତି ପ୍ରୟୋଜନୀୟ ବସ୍ତୁ ହୋଇପଡ଼ିଛି । ସକାଳୁ ଉଠି ସମ୍ବାଦପତ୍ର ଖଣ୍ଡିଏ ପାଠକରିବାର ସୁଯୋଗ ନ ମିଳିଲେ, ଗୋଟାଏ ବଡ଼ କାମ ବାକି ରହିଗଲା ଭଳି ଲାଗୁଛି । ଦେଶ-ବିଦେଶର ନାନା ସମ୍ବାଦ ସମ୍ପର୍କୀୟ ଧାରଣା ଆଧୁନିକ ଜୀବନ ନିମନ୍ତେ ଏକାନ୍ତ ଆବଶ୍ୟକ । ସମ୍ବାଦପତ୍ର ବ୍ୟତୀତ ଏ ସବୁ କେଉଁଠୁ ସଂଗ୍ରହ କରିହେବ ? ଭିନ୍ନ ଭିନ୍ନ ପାଠକଙ୍କର ରୁଚିଗତ ପାର୍ଥକ୍ୟ ନିମନ୍ତେ ଏଥିରେ ରାଜନୈତିକ, ଆଧ୍ୟାତ୍ମିକ, ସାମାଜିକ, ବ୍ୟାବସାୟିକ ଏବଂ ସାଂସ୍କୃତିକ ସମ୍ବାଦମାନ ପରିବେଷଣ କରାଯାଇଥାଏ । ବିଜ୍ଞାନଜଗତରେ ଯେଉଁ ନବ ନବ ପରିବର୍ତ୍ତନମାନ ହେଉଛି, ସମ୍ବାଦପତ୍ର-ପୃଷ୍ଠାରୁ ତାହା ଜଣାଯାଇଥାଏ । ବିଜ୍ଞାପନ ସମ୍ବାଦପତ୍ରର ଏକ ବିଶେଷ ଆକର୍ଷଣୀୟ ବିଷୟ । ଏଥିରେ କର୍ମ-ନିଯୁକ୍ତି, ବଜାରଦର, ବିକ୍ରି-ଖର୍ଦ୍ଦି, ବେତାର ଓ ଦୂରଦର୍ଶନ କାର୍ଯ୍ୟକ୍ରମ, ଖେଳଖବର, ଚଳଚ୍ଚିତ୍ରସମ୍ବାଦ ଇତ୍ୟାଦି ବିସ୍ତୃତ ରୂପରେ ଆଧୁନିକ ଜୀବନ ସହିତ ତାଳଦେଇ ଚାଲିବାପାଇଁ ସମ୍ବାଦପତ୍ର ଆମ ଜୀବନରେ ଏକ ବିଶେଷ ସ୍ଥାନ ଅଧିକାର କରି ବସିଛି ।

ସମ୍ବାଦପତ୍ର ଜିଜ୍ଞାସୁ ମଣିଷ ମନର ଏକ ପ୍ରୟୋଜନୀୟ ସୃଷ୍ଟି । ଆଖପାଖର ସମ୍ବାଦ ଜାଣିବାର ପ୍ରବୃତ୍ତି ତାହାର ଆଦିକାଳରୁ ରହିଆସିଛି । ପ୍ରାଚୀନ କାଳରେ ରାଜା,

ମହାରାଜା ଓ ସାମନ୍ତବୃନ୍ଦ ଏଥିନିମନ୍ତେ ଏକ ସ୍ୱତନ୍ତ୍ର କର୍ମଚାରୀଗୋଷ୍ଠୀ ନିଯୁକ୍ତ କରୁଥିଲେ । ସେମାନଙ୍କୁ ଦୂତ କୁହାଯାଉଥିଲା । ଦୂତମାନେ ଇତସ୍ତତଃ ଭ୍ରମଣ କରି ସମ୍ବାଦ ସଂଗ୍ରହ କରୁଥିଲେ । ଏହି ସମ୍ବାଦ ଲିଖିତ ରୂପରେ ବିଭିନ୍ନ ସ୍ଥାନକୁ ପଠାଇ ଦିଆଯାଉଥିଲା । ଏହି କାର୍ଯ୍ୟ ନିମନ୍ତେ ମନୁଷ୍ୟ ସହିତ ଘୋଡ଼ା, କୁକୁର, ପାରା ଇତ୍ୟାଦିଙ୍କର ସହାୟତା ଗ୍ରହଣ କରାଯାଉଥିଲା । ମାତ୍ର ଏହି ଧରଣର ସମ୍ବାଦର ବ୍ୟାପକତା ନଥିଲା । ଏଗୁଡ଼ିକ ଥିଲା ଏକାନ୍ତ ବ୍ୟକ୍ତିଗତ । ଏହାକୁ ତେଣୁ 'ଚିଠିପତ୍ର' ବୋଲି କୁହାଯାଇପାରେ ।

ସର୍ବପ୍ରଥମେ ସମ୍ବାଦପତ୍ରର ଜନ୍ମ କେଉଁ ଦେଶରେ, କେଉଁ ପରିସ୍ଥିତିରେ ଏବଂ କେଉଁ ସମୟରେ ହେଲା, ତାହା ଠିକ୍‌ଭାବେ କହିହେବନାହିଁ । କାହାରି କାହାରି ମତରେ ଚୀନ୍ ଦେଶ ହେଉଛି ସମ୍ବାଦପତ୍ରର ଆଦିଜନ୍ମଭୂମି । ଆଉ କେହି କେହି ଏହାକୁ ଅସ୍ୱୀକାର କରି ଇଟାଲୀରୁ ପ୍ରଥମେ ସମ୍ବାଦପତ୍ରର ସୃଷ୍ଟି ହୋଇଥିଲା ବୋଲି କହନ୍ତି । ଷୋଡ଼ଶ ଶତକରେ ଇଟାଲୀରୁ ହିଁ ପ୍ରଥମ ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା ବୋଲି ସେମାନଙ୍କର ମତ । ଇଂଲଣ୍ଡରେ ତାହାର ପ୍ରାୟ ଶହେବର୍ଷ ପରେ ଅର୍ଥାତ୍ ସପ୍ତଦଶ ଶତକରେ ସମ୍ବାଦପତ୍ର ପ୍ରକାଶିତ ହେଲା । ଇଂରେଜମାନେ ଭାରତବର୍ଷରେ ସ୍ଥାୟୀଭାବରେ ବସବାସ କରି ରହିବା ପରେ ଏଠାରେ ସମ୍ବାଦପତ୍ର ପ୍ରକାଶନର ଆସ୍ୟମାରମ୍ଭ ହେଲା । ଭାରତରେ ସର୍ବପ୍ରଥମେ 'ଇଣ୍ଡିଆ ଗେଜେଟ୍' ନାମକ ସମ୍ବାଦପତ୍ର ଏବଂ 'ସମାଚାର ଦର୍ପଣ' ନାମକ ଅନ୍ୟ ଏକ ସମ୍ବାଦପତ୍ର ଇଂରେଜ ତଥା ପାଦ୍ରୀମାନଙ୍କ ଉଦ୍ୟମରେ କ୍ରମଶଃ ପ୍ରକାଶିତ ହୋଇଥିଲା । କ୍ରମଶଃ ଭାରତୀୟମାନଙ୍କ ମଧ୍ୟରେ ସମ୍ବାଦପତ୍ର ପ୍ରକାଶ ନିମନ୍ତେ ଆଗ୍ରହ ଦେଖାଦେଲା । ବ୍ରାହ୍ମଧର୍ମର ପ୍ରତିଷ୍ଠାତା ରାଜା ରାମମୋହନ ରାୟ 'କୌମୁଦୀ' ନାମକ ଖଣ୍ଡିଏ ତଥା ଈଶ୍ୱରଚନ୍ଦ୍ର ବିଦ୍ୟାସାଗର 'ପ୍ରଭାକର' ନାମକ ଖଣ୍ଡିଏ ସମ୍ବାଦପତ୍ର ପ୍ରକାଶ କଲେ । ଊନବିଂଶ ଶତାବ୍ଦୀର ମଧ୍ୟଭାଗକୁ ହିନ୍ଦୀରେ ଭାରତେନ୍ଦୁ ହରିଶ୍ଚନ୍ଦ୍ର 'ମେରେ ସ୍ୱରୂପ' ନାମଧେୟ ଜାତୀୟତାବାଦୀ ସମ୍ବାଦପତ୍ର ପ୍ରକାଶ କଲେ । ଓଡ଼ିଶାରେ ପାଦ୍ରୀମାନଙ୍କ ଉଦ୍ୟମରେ ହିଁ 'ଜ୍ଞାନାରୁଣ' ନାମକ ସମ୍ବାଦପତ୍ର ପ୍ରଥମେ ପ୍ରକାଶିତ ହୋଇଥିଲା । କୁଜିବର ମଠର ସାଧୁ ସୁନ୍ଦର ଦାସ ବାବାଜୀ 'କୁଜିବର ପତ୍ର' ନାମକ ହସ୍ତଲିଖିତ ଯେଉଁ ପତ୍ର ଖଣ୍ଡିକ ବାହାର କରୁଥିଲେ, ତାହାହିଁ ଓଡ଼ିଆ ସମ୍ବାଦପତ୍ର ସମ୍ପର୍କୀୟ ପ୍ରଥମ ଉଦ୍ୟମ ବୋଲି କେହି କେହି କହିଥାଆନ୍ତି ।

ବର୍ତ୍ତମାନ ପୃଥିବୀର ପ୍ରାୟ ସମସ୍ତ ପ୍ରଧାନ ଭାଷାରେ ସମ୍ବାଦପତ୍ରର ପ୍ରକାଶନ ଚାଲିଛି । ଏଗୁଡ଼ିକ ପୁଣି ଦୈନିକ, ସାପ୍ତାହିକ, ମାସିକ, ତ୍ରୈମାସିକ, ଅର୍ଦ୍ଧବାର୍ଷିକ ଭେଦରେ ବିଭିନ୍ନ ପ୍ରକାରର । ଏବେ ପ୍ରାୟ ସମସ୍ତ ରାଜନୈତିକ ଦଳ ନିଜନିଜ ଦଳର ପ୍ରଚାରକାର୍ଯ୍ୟ ନିମନ୍ତେ ସମ୍ବାଦପତ୍ରକୁ ବ୍ୟବହାର କରୁଛନ୍ତି । ଏହା ବ୍ୟତୀତ ଧର୍ମ, ଶିକ୍ଷା, ଚିକିତ୍ସା ବିଜ୍ଞାନ, ଅର୍ଥନୀତି, ସିନେମାପ୍ରଭୃତିର ପ୍ରଚାର ନିମନ୍ତେ ମଧ୍ୟ ବିଶେଷ ବିଶେଷ ସମ୍ବାଦପତ୍ର ପ୍ରକାଶିତ ହେଉଛି ।

ଏକ ସମ୍ବାଦପତ୍ରର ପ୍ରକାଶନ କାର୍ଯ୍ୟ ଖୁବ୍ ସହଜ ନୁହେଁ । ଏଥିନିମନ୍ତେ ଅନେକ ବ୍ୟକ୍ତିଙ୍କର ସହଯୋଗ ଆବଶ୍ୟକ ହୋଇଥାଏ । ପ୍ରଥମେ ଏଭଳି ଜଣେ ବ୍ୟକ୍ତି ଆବଶ୍ୟକ, ଯେ କି ସମ୍ବାଦପତ୍ର ପ୍ରକାଶନ ନିମନ୍ତେ ଅର୍ଥ ବ୍ୟୟ କରିବେ । ତାଙ୍କ ପରେ ଆସିବେ ସମ୍ପାଦକମଣ୍ଡଳୀ, ବିଭିନ୍ନ ସମ୍ବାଦ ସଂଗ୍ରହ କରି ସୁବ୍ୟବସ୍ଥିତ ରୂପରେ ତାକୁ ପ୍ରକାଶ କରିବା ଯେଉଁମାନଙ୍କର ମୁଖ୍ୟ ଦାୟିତ୍ୱ ହେବ । ଏମାନଙ୍କ ମଧ୍ୟରେ ଜଣେ ହେବେ ମୁଖ୍ୟ ସମ୍ପାଦକ । ସମ୍ବାଦପତ୍ରର ନୀତି-ନିୟମ ନିର୍ଦ୍ଧାରଣ କରି କେଉଁ ଧରଣର ସମ୍ବାଦ, ଠିକ୍ କେଉଁ ସ୍ଥାନରେ ମୁଦ୍ରିତ ହେବ, ଏସବୁ ବ୍ୟାପାର ସେ ନିର୍ଣ୍ଣୟ କରିବେ । ସମ୍ବାଦ ସଂଗ୍ରହ ଏବଂ ନିର୍ବାଚନ ଖୁବ୍ ଏକ ସହଜ କାର୍ଯ୍ୟ ନୁହେଁ । କୁକୁର ମଣିଷକୁ କାମୁଡ଼ିଲେ ତାହା ସମ୍ବାଦ ହୁଏ ନାହିଁ; ବରଂ ଯେଉଁଠି ମଣିଷ କୁକୁରକୁ କାମୁଡ଼ିପକାଏ, ତାହା ହୁଏ ସବୁଠାରୁ ଆକର୍ଷଣୀୟ ସମ୍ବାଦ । ଏଭଳି ଘଟଣା ତ ନିତିପ୍ରତି ଘଟେ ନାହିଁ, କିମ୍ବା ଯେଉଁଠି ଘଟେ ସେଠି ହୁଏତ ସମସ୍ତେ ଏହା ଜାଣିପାରନ୍ତି ନାହିଁ । ମାତ୍ର ଏହି ଧରଣର ସମ୍ବାଦ ନିମନ୍ତେହିଁ ସର୍ବସାଧାରଣ ପାଠକମାନଙ୍କର ଆଗ୍ରହ ବେଶି । ତେଣୁ ଏହିଭଳି ସମ୍ବାଦ ସଂଗ୍ରହ କରିବା ନିମନ୍ତେ ଥାଆନ୍ତି ଅଭିଜ୍ଞ ସାମ୍ବାଦିକଦଳ । ଏମାନେ ଭିନ୍ନ ଭିନ୍ନ ସ୍ଥାନରୁ ତଥା ସମାଚାର ଏଜେନ୍ସିରୁ ସମ୍ବାଦ ସଂଗ୍ରହ କରି ସେଗୁଡ଼ିକ ସମ୍ବାଦପତ୍ର କାର୍ଯ୍ୟାଳୟରେ ନେଇ ପହଞ୍ଚାଇଦିଅନ୍ତି । ସମ୍ପାଦକ ଏହି ସବୁ ସମ୍ବାଦ ଦେଖନ୍ତି; ଯାହାକୁ ଛାପିବାର କଥା, ଯେଉଁଭଳି ଛପାଯିବାର କଥା ସେ ସବୁ ନିର୍ଣ୍ଣୟ କରନ୍ତି ଏବଂ ତାଙ୍କ ଅନୁମତି ଲଭ ପରେ ତାହା ମୁଦ୍ରଣ ଯନ୍ତ୍ରକୁ ଚାଲିଯାଏ । ମୁଦ୍ରଣ ଯନ୍ତ୍ରର ମୁଖ୍ୟ ପରିଚାଳକଙ୍କୁ ମୁଦ୍ରାକର କୁହାଯାଏ । ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ଥାଆନ୍ତି କିଛି କମ୍ପୋଜିଟର୍, ଯେଉଁମାନେ ସମ୍ବାଦ ଅନୁଯାୟୀ ଅକ୍ଷର ସଜାଡ଼ିଦିଅନ୍ତି । ଅକ୍ଷର ସଜଡ଼ା ହୋଇଗଲା ପରେ ଭୁଲ୍ ତ୍ରୁଟି ଥିଲେ ତାହା ସଂଶୋଧନ କରାଯାଏ । ଏହାକୁ କୁହାଯାଏ ପ୍ରୁଫ୍ ରିଡ଼ିଂ । ଏ କାର୍ଯ୍ୟ ଶେଷ ହୋଇଯିବା ପରେ ଖବରକାଗଜ ଶେଷ ଥର ପାଇଁ ପୁଣି ଛପାଯାଏ ଏବଂ ଏହାହିଁ ହୁଏ ଅସଲ ଖବରକାଗଜ ।

ଏହାପରେ ସେଗୁଡ଼ିକ ବିଡ଼ା ବନ୍ଧାଯାଇ ଗାଡ଼ି, ମଟର, ଉଡ଼ାଜାହାଜ ଦ୍ୱାରା ଗ୍ରାମ, ନଗରକୁ ପଠାଇଦିଆଯାଏ ଏବଂ ଖବରକାଗଜ-ବିକାଳିମାନେ ତାହାକୁ ଘର ଘର ବୁଲି ପାଠକମାନଙ୍କ ନିକଟରେ ପହଞ୍ଚାଇଦିଅନ୍ତି ।

ସମ୍ବାଦପତ୍ର ହେଉଛି ପ୍ରଚାରର ସର୍ବଶ୍ରେଷ୍ଠ ମାଧ୍ୟମ । ଏହାର ଉପଯୁକ୍ତ ବିନିଯୋଗ କରାଯାଇପାରିଲେ, ସାଧାରଣ ଜନତାର ହିତକାର୍ଯ୍ୟରେ ଏହାର ବ୍ୟବହାର କରାଗଲେ, ଭାରତଭଳି ଗଣତାନ୍ତ୍ରିକ ଦେଶରେ ଏହାଦ୍ୱାରା ଅନେକ ସମସ୍ୟାର ସମାଧାନ କରାଯାଇ ପାରିବ । ଅନ୍ୟାୟର ପ୍ରତିକାର ଏହାର ଦ୍ୱାରାହିଁ ସବୁଠାରୁ ଅଧିକ ଭଲ ଭାବରେ କରାଯାଇପାରିବ । ସମ୍ବାଦପତ୍ରର ନୀତି ତେଣୁ ସର୍ବଦା ନିରପେକ୍ଷ ରହିବା ଏକାନ୍ତ

ଆବଶ୍ୟକ । ସରକାରୀ ପ୍ରଲୋଭନରେ ଏହା ଯଦି କେବଳ ଶାସକଦଳର ନିର୍ଦ୍ଦେଶରେ ନିଜକୁ ପରିଚାଳିତ କରେ, ତେବେ ଏହାର ମୂଳ ଉଦ୍ଦେଶ୍ୟ ବ୍ୟର୍ଥ ହୋଇଯିବ । କେବଳ ମାତ୍ର ଏହି କାରଣରୁହିଁ ସମ୍ବାଦପତ୍ରର ନିରଙ୍କୁଶ ସ୍ୱାଧୀନତା ଉପରେ ହସ୍ତକ୍ଷେପ କରାଯିବା ଉଚିତ ନୁହେଁ । ତେବେ ଏହାଦ୍ୱାରା ସମ୍ପାଦକଙ୍କର ଦାୟିତ୍ୱ ବଢ଼ିଯାଏ । ଅନେକ ରାଜନୈତିକ ଦଳ ତଥା ବ୍ୟକ୍ତିବିଶେଷ ସ୍ୱପକ୍ଷ ସମର୍ଥନ ନିମନ୍ତେ ଅନେକ ସମ୍ବାଦକୁ ବିକୃତକରି ତିକ୍ତତା ବଢ଼ାଇବା ଇଚ୍ଛାରେ ପ୍ରକାଶ କରିବାକୁ ଦିଅନ୍ତି । ସମ୍ପାଦକ ଏହି ସମୟରେ ହିଁ ନିଜର ବିଚାରବୁଦ୍ଧି ପ୍ରୟୋଗ କରିବା ଆବଶ୍ୟକ ହୋଇପଡ଼େ । ଭୁଲ୍ ଠିକ୍ ଅନୁସନ୍ଧାନଦ୍ୱାରା ଜାଣି, ସେ ସମ୍ପର୍କରେ ପଦକ୍ଷେପ ଗ୍ରହଣ କରିବା ତାଙ୍କର ଦାୟିତ୍ୱ ।

ରାଷ୍ଟ୍ର ଏବଂ ଜାତିର ମଙ୍ଗଳ ନିମନ୍ତେ ସମ୍ବାଦପତ୍ରକୁ ବ୍ୟବହାର କରାଯିବା ଆବଶ୍ୟକ । ଜନକଲ୍ୟାଣ ନିମନ୍ତେ ଏହି ଶକ୍ତିଶାଳୀ ମାଧ୍ୟମର ପ୍ରୟୋଗ ଅତ୍ୟନ୍ତ ଉପାଦେୟ ହୋଇଥାଏ । ଅନ୍ୟଥା ଯଦି ଅହିତକର କାର୍ଯ୍ୟରେ ଏହାକୁ ପ୍ରୟୋଗ କରାଯାଏ, ତେବେ ଭସ୍ମାସୁର ଭଳି ଏହାର ସମସ୍ତଙ୍କୁ ଧ୍ୱଂସ କରିଦେବାର ଶକ୍ତି ରହିଛି । ଏହି ବିଷୟ ପ୍ରତି ସଚେତନ ହୋଇ ସମ୍ବାଦପତ୍ରର ବ୍ୟବହାର କରାଗଲେ, ତଦ୍ୱାରା ଦେଶ ଓ ଦଶର ମଙ୍ଗଳ ହେବ ।

## ଓଡ଼ିଶାର ପ୍ରାକୃତିକ ବିପର୍ଯ୍ୟୟ

ଉତ୍କଳ ପ୍ରକୃତିଦେବୀଙ୍କର ନିତ୍ୟ ଲୀଳାକ୍ଷେତ୍ର । ଗଗନଚୁମ୍ବୀ ତୁଙ୍ଗ ପର୍ବତମାଳା, କଳନାଦିନୀ ବନ-ଝରଣା, ଚିରପ୍ରବହମାନା ସ୍ରୋତସ୍ୱିନୀ, ଝିଲ୍ଲୀଝଙ୍କାରିତ ଘଞ୍ଚ ବନାନୀ, ଦିଗନ୍ତବିସ୍ତାରୀ ଊର୍ମିମୁଖର ସାଗର—ଏ ସମସ୍ତ ଉତ୍କଳକୁ ଅପୂର୍ବ ପ୍ରାକୃତିକ ଶୋଭାର ଗନ୍ତାଘର କରି ରଖିଛି । କେତେ ଯେ ସମ୍ପଦ ପ୍ରକୃତିଦେବୀ ତା'ର ପ୍ରିୟ ସନ୍ତାନମାନଙ୍କ ନିମନ୍ତେ ଲୁଚାଇ ରଖିଛି ତା'ର ଇୟତ୍ତା ନାହିଁ । ଉତ୍କଳୀୟମାନଙ୍କର ସମୃଦ୍ଧି ଏଇ କଲ୍ୟାଣମୟୀ ପ୍ରକୃତିର ଅକୃପଣ ହସ୍ତର ଦାନରେ—ଏହା ସ୍ୱୀକାର କରିବାକୁ ହେବ । ଏହାର ନାତିଶୀତୋଷ୍ଣ ଜଳବାୟୁ ଉତ୍କଳୀୟମାନଙ୍କର ସ୍ୱାସ୍ଥ୍ୟ-ସମ୍ପଦର ଏକ ପ୍ରଧାନ କାରଣ ।

ପ୍ରକୃତି ଚିର ରହସ୍ୟମୟୀ । କେତେବେଳେ ଯେ ଏହା କେଉଁ ରୂପ ଧରେ ତାହା ନିର୍ଣ୍ଣୟ କରିବା ଅତି କଠିନ । ତେଣୁ ଆମର ପୂର୍ବପୁରୁଷ ପ୍ରକୃତିକୁ ଦେବତାଜ୍ଞାନରେ

ପୂଜା-ଆରାଧନା କରୁଥିଲେ; ତା'ର ସନ୍ତୋଷବିଧାନ ନିମନ୍ତେ ନାନା ଉପଚାର ବାଢ଼ି-ଦେଉଥିଲେ । ଅଜ୍ଞେୟ ସତ୍ତାକୁ ଭୟ କରିବା ମନୁଷ୍ୟର ଏକ ଚିରନ୍ତନ ପ୍ରବୃତ୍ତି । ହୁଏତ ଏହି କାରଣରୁ ପ୍ରକୃତି-ଉପାସନା ଏତେ ବ୍ୟାପକତା ଲାଭକରିଥିଲା ।

ବେଳେବେଳେ ଏହି ପ୍ରକୃତି ଅତ୍ୟନ୍ତ ନିର୍ଦ୍ଦୟ ହୋଇଉଠେ । ସେତେବେଳେ ତା'ର କଲ୍ୟାଣମୟୀ ରୂପ ତୀବ୍ର ଆକ୍ରୋଶରେ ଫୁଲିଉଠି ସଂହାରମୟୀ ରୁଦ୍ର ରୂପରେ ପରିବର୍ତ୍ତିତ ହୁଏ । ବିଶ୍ୱସଂସାର ଜାଳିପୋଡ଼ି ଧ୍ୱଂସ କରିଦେବାକୁ ଯେତେ ଯୋଜନା ପରି କରି ସେ ତାଣ୍ଡବଲୀଳା ସୃଷ୍ଟି କରେ । ଅସହାୟ ମାନବ ତା'ର ରୋଷର ଶିକାର ହୋଇ ସର୍ବସ୍ୱାନ୍ତ ହୋଇଯାଏ । ବନ୍ୟା, ବାତ୍ୟା, ମରୁଡ଼ି ଏ ତିନୋଟି ରୂପରେ ପ୍ରଧାନତଃ ପ୍ରକୃତିର କ୍ରୋଧ ପ୍ରକଟିତ ହୁଏ ।

ବନ୍ୟା ଉତ୍କଳର ଅଗ୍ରଗତିର ପ୍ରଧାନ ଅନ୍ତରାୟ ସ୍ୱରୂପ । ଓଡ଼ିଶା ଏକ ନଦୀବହୁଳ ରାଜ୍ୟ ହୋଇଥିବାରୁ ଏବଂ ଏଠାରେ ମହାନଦୀ, ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ, ବ୍ରାହ୍ମଣୀ, ବୈତରଣୀ ପ୍ରଭୃତି ବଡ଼ ବଡ଼ ନଦୀମାନ ପ୍ରବାହିତ ହେଉଥିବାରୁ ଅଗଷ୍ଟ-ସେପ୍ଟେମ୍ବର ମାସବେଳକୁ ନଦୀମାନଙ୍କରେ ବନ୍ୟା ଆସିଯାଏ । ନଦୀମାନଙ୍କର ବନ୍ୟାଜଳ ଉପନଦୀ ଏବଂ ଶାଖା ନଦୀମାନଙ୍କ ସାହାଯ୍ୟରେ ଓଡ଼ିଶାର କୋଣେ କୋଣେ ବ୍ୟାପିଯାଏ । ଯେଉଁ ବର୍ଷ ବର୍ଷାର ଆଧିକ୍ୟ ହୁଏ, ସେ ବର୍ଷ ବନ୍ଧବାଡ଼ ଭାଙ୍ଗେ । ବିଲବାଡ଼ି ବାଲିଚର ହୋଇଯାଏ । ଘରଦ୍ୱାର ବନ୍ୟା-ସ୍ରୋତରେ କାହିଁ କୁଆଡ଼େ ଭାସିଯାଏ । ରାସ୍ତାଘାଟ ଭାଙ୍ଗି ଯୋଗାଯୋଗ ବିଚ୍ଛିନ୍ନ ହୁଏ । ମନୁଷ୍ୟ, ପଶୁପକ୍ଷୀ ନିରାଶ୍ରୟ ଅବସ୍ଥାରେ ମୃତ୍ୟୁବରଣ କରନ୍ତି । ଲୋକାଳୟ ଶ୍ମଶାନ ହୋଇଯାଏ । ବନ୍ୟା ଗ୍ରୁଡ଼ିଗଲା ପରେ ବି ଦୁର୍ଦ୍ଦଶାର ଅନ୍ତ ହୁଏନାହିଁ । ଅଖାଦ୍ୟ ଖାଇ କିମ୍ବା ଉପବାସ ରହି, ଖୋଲା ଆକାଶତଳେ ନିରାଶ୍ରୟ ଜୀବନ କଟାଇ ଲୋକମାନେ ରୋଗଗ୍ରସ୍ତ ହୋଇପଡ଼ନ୍ତି । ଏହି ସମୟରେ ମୁଖ୍ୟତଃ ଦୁଇଟି ରୋଗ ପ୍ରବଳ ଆକାର ଧାରଣ କରି ଆତ୍ମପ୍ରକାଶ କରେ—ଗୋଟିଏ ହେଉଛି ହଇଜା ଏବଂ ଅପରଟି ହେଉଛି ଜ୍ୱର । ସମୟ ସମୟରେ ଉଭୟ ରୋଗ ମହାମାରୀ ଆକାର ଧାରଣ କରି ଜନସଂହାର କରନ୍ତି । ପୂର୍ବକାଳରେ କେବଳ ଏହାର ଦ୍ୱାରା ଗ୍ରାମର ଗ୍ରାମ ପୁଞ୍ଛା ଲୋପପାଇଯାଉଥିଲା । ବର୍ତ୍ତମାନ ଅବଶ୍ୟ ଏହି ଅବସ୍ଥାର ଅନେକ ଉନ୍ନତି ହୋଇଛି ।

ବନ୍ୟା-ସମସ୍ୟାର ସ୍ଥାୟୀ ପ୍ରତିକାର ନିମନ୍ତେ ଜଳଭଣ୍ଡାରମାନ ନିର୍ମିତ ହୋଇ ଉଦ୍‌ବୃତ୍ତ ଜଳକୁ ଭବିଷ୍ୟତ ନିମନ୍ତେ ସଞ୍ଚୟ କରି ରଖାଯାଉଛି । ବନ୍ଧବାଡ଼ ଇତ୍ୟାଦିକୁ ଦୃଢ଼ କରାଯାଉଛି । ଜଳଶକ୍ତିକୁ କାର୍ଯ୍ୟରେ ଲଗାଇ ସେଥିରୁ ବିଦ୍ୟୁତ୍‌ଶକ୍ତି ସଂଗ୍ରହ ନିମନ୍ତେ ଉଦ୍ୟମ ହେଉଛି; ତଥାପି ବନ୍ୟାରୁ ରକ୍ଷା ମିଳୁନାହିଁ । ବନ୍ୟା ସମୟରେ ଅବଶ୍ୟ ଦୁର୍ଗତ-ମାନଙ୍କର ତ୍ରାଣ ନିମନ୍ତେ ଦୃଢ଼ ବ୍ୟବସ୍ଥାମାନ ଗ୍ରହଣ କରାଯାଉଛି । ନୌକା ସାହାଯ୍ୟରେ ବିପନ୍ନମାନଙ୍କୁ ଉଦ୍ଧାର କରାଯାଇ ସେମାନଙ୍କୁ ନିରାପଦ ସ୍ଥାନରେ ରଖାଯାଇ କିଛିଦିନ

ଖାଦ୍ୟ-ପଦାର୍ଥମାନ ଯୋଗାଇ ଦିଆଯାଉଛି । ଦୁର୍ଗମ ଅଞ୍ଚଳମାନଙ୍କରେ ଆକାଶମାର୍ଗରୁ ସାହାଯ୍ୟ ପହଞ୍ଚାଇ ଦିଆଯାଉଛି । ବନ୍ୟା ପରେ ପୁଣି ବିଭିନ୍ନ ଉପାୟରେ କ୍ଷତିଗ୍ରସ୍ତମାନଙ୍କୁ ସହାୟତା ପ୍ରଦାନ କରିବାର ବ୍ୟବସ୍ଥା କରାଯାଉଛି । ତଥାପି ଆର୍ଥିକ କ୍ଷତି ବିଷୟ ହୁଏତ ମନୁଷ୍ୟ କୌଣସି ଉପାୟରେ ଭୁଲିଯାଏ—ମାତ୍ର ଜୀବନ-କ୍ଷତିର ପୂର୍ତ୍ତି କିଏବା କେଉଁ ଉପାୟରେ କରିପାରିବ ? ଯାହା ଗଲା ତାହା ସବୁଦିନ ପାଇଁ ଗଲା ।

ବନ୍ୟା ଭଳି ବାତ୍ୟା ମଧ୍ୟ ପ୍ରକୃତିଦେବୀଙ୍କର ରୁଦ୍ର-ରୋଷର ଅନ୍ୟ ଏକ ରୂପ । ଏପ୍ରିଲ୍-ମେ ମାସବେଳକୁ ଥରେ ଏବଂ କେବେ କେବେ ନଭେମ୍ବର-ଡିସେମ୍ବର ମାସ ବେଳକୁ ଜନବସତି ଉପର ଦେଇ ପ୍ରଚଣ୍ଡ ବାତ୍ୟା ବହିଯାଏ । ବାସଗୃହ, ମନୁଷ୍ୟ, ପଶୁପକ୍ଷୀ ତ ସାଧାରଣ କଥା—ବିଶାଳକାୟ ବୃକ୍ଷମାନ ମଧ୍ୟ ତୃଣଭଳି ଦୂରକୁ ନିକ୍ଷିପ୍ତ ହୁଅନ୍ତି । ବାସଗୃହ ଧୂଳିସାତ୍ ହୁଏ । ଜୀବନଯାକର ସଞ୍ଚୟ ତା' ସହିତ ମାଟିରେ ମିଶିଯାଏ । କ୍ଷେତର ଫସଲ ମଧ୍ୟ ଏହାର ପ୍ରକୋପରୁ ରକ୍ଷା ପାଏନାହିଁ । ବାତ୍ୟା ସମୟରେ ତ ଯାହା ମଣିଷ ମରିଥାନ୍ତି, ତା'ପରେ ରୋଗଗ୍ରସ୍ତ ହୋଇ ଅଧିକ ମରନ୍ତି । ବାତ୍ୟାର ପ୍ରକୋପରେ ସମୁଦ୍ର ମାଡ଼ିଆସେ । ପାଚିଲା ଫସଲ ଲୁଣିପାଣିର ପ୍ରଚଣ୍ଡ ଜୁଆର ତଳେ ବୁଡ଼ିଯାଏ । ପାଳିତ ପଶୁ କମ୍ବା ପକ୍ଷୀ ମଧ୍ୟ ଏଥିରୁ ଆତ୍ମରକ୍ଷା କରିପାରନ୍ତି ନାହିଁ । ଏଇ ତ ସେଦିନ, କେନ୍ଦୁଝର ଅଞ୍ଚଳର ବନ୍ଧଗୁଡ଼ା ଗ୍ରାମ ଏକ ଅଗ୍ନିଜ ବାତ୍ୟାର ପ୍ରକୋପରେ କିପରି ସମ୍ପୂର୍ଣ୍ଣ ଭାବରେ ନିଶ୍ଚିହ୍ନ ହୋଇଯାଇଥିଲା, ତାହା ଆଜି ମଧ୍ୟ ବିସ୍ମୃତ ହୋଇଯାଇନାହିଁ ।

ବିଜ୍ଞାନ ସାହାଯ୍ୟରେ ଗ୍ରହମାନଯନ୍ତ୍ର ପ୍ରଭୃତି ଦ୍ୱାରା ଅବଶ୍ୟ ବାତ୍ୟା ଇତ୍ୟାଦିର ସମ୍ବାଦ ଅନେକ ସ୍ଥଳରେ ପୂର୍ବରୁ ସଂଗ୍ରହ କରାଯାଇପାରୁଛି । ତେବେ ଏହା ଯେ ପ୍ରତ୍ୟେକ କ୍ଷେତ୍ରରେ ନିର୍ଭୁଲ ଭାବରେ କରାଯାଇପାରୁଛି, ତାହା ନୁହେଁ । ତେବେ ଏହାଦ୍ୱାରା କ୍ଷୟକ୍ଷତିର ପରିମାଣ ସାମାନ୍ୟ କମାଯାଇପାରୁଛି ମାତ୍ର । ପୂର୍ବଭଳି ଏ କ୍ଷେତ୍ରରେ ମଧ୍ୟ ବିପନ୍ନମାନଙ୍କୁ ସରକାରୀ ଓ ବେସରକାରୀ ଦିଗରୁ ସାହାଯ୍ୟ ଯୋଗାଇ ଦିଆଯାଇ, ସେମାନଙ୍କୁ ଜୀବନକ୍ଷେତ୍ରରେ ପୁନଃପ୍ରତିଷ୍ଠିତ ହେବାର ସୁଯୋଗ ଦିଆଯାଉଛି, ଏତିକି ମାତ୍ର ଯାହା ସାନ୍ତ୍ୱନା ।

ମରୁଡ଼ି ହେଉଛି ପ୍ରାକୃତିକ ବିପର୍ଯ୍ୟୟର ଅନ୍ୟ ଏକ ମୁଖ୍ୟ ଉଦାହରଣ । ଅତିବୃଷ୍ଟି ଯେଉଁଭଳି ବନ୍ୟାର କାରଣ ହୋଇଥାଏ, ଅନାବୃଷ୍ଟି ମଧ୍ୟ ସେଇଭଳି ଶସ୍ୟ ସମ୍ପଦର ସମ୍ପୂର୍ଣ୍ଣ ବିନାଶ ଘଟାଇ ଲୋକମାନଙ୍କୁ ପଥର ଭିକାରି କରିଦିଏ । ଓଡ଼ିଶା ଏକ କୃଷିପ୍ରଧାନ ରାଜ୍ୟ । ଏହାର ଶତକଡ଼ା ନବେ ଭାଗ ଲୋକ ଏବେ ମଧ୍ୟ କୃଷି ଉପରେ ନିର୍ଭରଶୀଳ । ଜଳସେଚନର ବ୍ୟାପକ ବ୍ୟବସ୍ଥା ଏପର୍ଯ୍ୟନ୍ତ ହୋଇପାରି ନଥିବାରୁ କୃଷି ନିମନ୍ତେ ଏମାନଙ୍କୁ ମୁଖ୍ୟତଃ ପ୍ରକୃତିର ଦୟା ଉପରେ ନିର୍ଭର କରିବାକୁ ପଡ଼ିଥାଏ । କୌଣସି କାରଣରୁ ଯଦି ଠିକ୍ ସମୟରେ ବର୍ଷା ନହେଲା, ତେବେ କ୍ଷେତର ଫସଲ ଶୁଖିଯାଏ ।

ଲୋକମାନଙ୍କର ଅବସ୍ଥା ଏପରି ଯେ, ସେମାନଙ୍କର ସଞ୍ଚୟ ବୋଲି କିଛି ନଥାଏ—ଦାଣ୍ଡରୁ ଆଣିଲେ ହାଣ୍ଡିରେ ପଡ଼ିବା ବ୍ୟବସ୍ଥା । ଏଭଳି କ୍ଷେତ୍ରରେ ଅବସ୍ଥା ଯାହା ହେବାର ହୁଏ । କିଛିଦିନ ଲୋକେ ସ୍ଥାବର ଅସ୍ଥାବର ସମ୍ପତ୍ତି ବିକିଭାଙ୍ଗି ଚଳନ୍ତି । ତା'ପରେ ଦାଣ୍ଡ ଆଶ୍ରା । ଖାଇବାକୁ ମିଳିବା ତ ଦୂରର କଥା—ଗୋଟିଏ ଗୋଟିଏ ଅଞ୍ଚଳରେ ଏହି ସମୟରେ ପାନୀୟ ଜଳର ଉତ୍କଟ ଅଭାବ ସୃଷ୍ଟି ଦେଖାଦିଏ । ସାହାଯ୍ୟ ଅବଶ୍ୟ ମିଳେ—ତେବେ ସେତେବେଳକୁ କ୍ଷତି ଯାହା ହେବାର ହୋଇସାରିଥାଏ ।

ଚନ୍ଦ୍ରପୃଷ୍ଠରେ ବିଜୟବାନା ଉଡ଼ାଇସାରି ସୁଦ୍ଧା ମନୁଷ୍ୟ ଯେ ଆଜି ପ୍ରକୃତିକୁ ସମ୍ପୂର୍ଣ୍ଣ ରୂପେ ଜୟକରିପାରିନାହିଁ, ଏହା ହେଉଛି ଆମର ସବୁଠାରୁ ଅଧିକ ଦୁଃଖର କାରଣ । ହୁଏତ ଅଦୂର ଭବିଷ୍ୟତରେ ମଣିଷ ଏ ସବୁ ଦୂର କରିବା ନିମନ୍ତେ ସମର୍ଥ ହେବ । ସେତେବେଳେ ଆଉ ପ୍ରକୃତିର ରୁଦ୍ର-ରୋଷକୁ ଭୟ କରିବାର କୌଣସି କାରଣ ନଥିବ । ସେତେଦିନ ପର୍ଯ୍ୟନ୍ତ ଆମକୁ ଏହିଭଳି ପ୍ରକୃତିର କରୁଣାର ଭିକାରି ହେବାକୁ ପଡ଼ୁଥିବ । ଅସହାୟତା ମଣିଷକୁ ଭାଗ୍ୟବାଦୀ କରି ଗଢ଼େ । ଯେ ପର୍ଯ୍ୟନ୍ତ ଏସବୁ ପ୍ରାକୃତିକ ବିପର୍ଯ୍ୟୟ ନିମନ୍ତେ କୌଣସି ସ୍ଥାୟୀ ପ୍ରତିକାର ନହୋଇଛି, ସେ ପର୍ଯ୍ୟନ୍ତ ଓଡ଼ିଆମାନେ ଭାଗ୍ୟ ଉପରେହିଁ ନିର୍ଭର କରି ଜୀବନ କଟାଉଥିବେ ।

## ପର୍ବପର୍ବାଣି ଓ ଜୀବନରେ ତାହାର ଭୂମିକା

କର୍ମମୟ ମଣିଷ ଜୀବନରେ ବୈଚିତ୍ର୍ୟ ସୃଷ୍ଟି କରି ତାହାର ଅବସାଦ ଓ କ୍ଲାନ୍ତି ଦୂର କରିବା ନିମନ୍ତେ ହୁଏତ ପର୍ବପର୍ବାଣିର ସୃଷ୍ଟି । ଅବସ୍ଥା ନିର୍ବିଶେଷରେ ଧନୀ ଦରିଦ୍ର ସମସ୍ତେ ଯେଉଁଭଳି ଏଥିନିମନ୍ତେ ବ୍ୟଗ୍ର ଭାବରେ ଦିନ ଗଣୁଥାଆନ୍ତି, ସେଥିରୁ ଏହା ଅନୁମାନ କରାଯାଇପାରେ ଯେ, ସାମୟିକ ଭାବରେ ହେଉନା କାହିଁକି, କିଛି କ୍ଷଣ ପାଇଁ ଆନନ୍ଦ-ଉଲ୍ଲାସକର ପରିବେଶ ମଧ୍ୟରେ ନିଜକୁ ହଜାଇଦେବାର ଲୋଭ କାହାରି ପକ୍ଷରେ ସମ୍ବରଣ କରିବା ସମ୍ଭବପର ନୁହେଁ । ହିନ୍ଦୁଧର୍ମରେ ତ ବାରମାସରେ ତେର ପର୍ବର ବ୍ୟବସ୍ଥା ରହିଛି । ଦୋଳ, ଦଶହରା, ଦୀପାବଳୀ, ରଜ, ରାମନବମୀ ପରି ମୁସଲମାନମାନଙ୍କର ଇଦ୍, ମହରମ୍, ତଥା ଖ୍ରୀଷ୍ଟିୟାନ୍‌ମାନଙ୍କର ବଡ଼ଦିନ, ନବବର୍ଷ ଇତ୍ୟାଦି ପର୍ବ ଭାରତବର୍ଷରେ ପାଳିତ ହୋଇଥାଏ ।

ସଂଘର୍ଷମୟ ଜୀବନରେ ଏକାଧରଣର କାମ କରି କରି ମଣିଷ ବିରକ୍ତ ହୋଇଯାଏ । ଜୀବନ ମନେହୁଏ ଅତି କ୍ଷୁଦ୍ର ଓ ସୀମିତ ପରିଧି ମଧ୍ୟରେ ଆବଦ୍ଧ । ନିତ୍ୟନୂତନତାର କାମନା

ଏବଂ ତନ୍ମଧ୍ୟରୁ ଆନନ୍ଦ ଓ ଉତ୍ତେଜନାର ଖୋରାକ ସଂଗ୍ରହ ନିମନ୍ତେ ଉଦ୍ୟମ—ଏହା ହେଉଛି ମଣିଷର ସ୍ୱାଭାବିକ ପ୍ରବୃତ୍ତି । ଆଜୀବନ ସୀମା ମଧ୍ୟରେ ଆବଦ୍ଧରହି ମନ ତା'ର ସୀମା ଡେଇଁ ମୁକ୍ତ ଆକାଶର ବିହଙ୍ଗ ଭଳି ଉଡ଼ିଯିବା ନିମନ୍ତେ ସତତ ବ୍ୟଗ୍ର ହୋଇଥାଏ । ( ଆହା ! ସୀମା ଡେଇଁଥିବାରୁହିଁ ସୀତାଙ୍କର ଯାବତୀୟ ବିପତ୍ତି ! ) ବିଶାଳ ଏ ସୃଷ୍ଟିରେ, ଅଗଣିତ ଜନ-ସମୁଦ୍ର ଭିତରେ ନିଜକୁ ହଜାଇଦେବାକୁ, ନିଜର ସତ୍ତାକୁ ସମସ୍ତଙ୍କ ମଧ୍ୟରେ ବାଣ୍ଟି-ଦେବାକୁ ଉତ୍ସୁକ ହୋଇଉଠେ । ପର୍ବପର୍ବାଣି ତ୍ୱ.କୁ ଏହି 'ଏକରୁ ଅନେକ' ହେବା କ୍ରିୟାରେ ସାହାଯ୍ୟ କରିଥାଏ ।

ଏଭଳି ଅନେକ ପର୍ବ ରହିଛି ଯାହା ବିଶେଷ କୌଣସି ଐତିହାସିକ ଘଟଣା ସହିତ ସଂପୃକ୍ତ । ଏଥିରୁ ପ୍ରେରଣା ସଂଗ୍ରହ କରି ତଦନୁସାରେ ଜୀବନ ଗଠନ କରିବା ନିମନ୍ତେ ହିଁ ଏତ ଏଗୁଡ଼ିକ ଉଦ୍ଦିଷ୍ଟ । ଦୋଳ, ଦଶହରା, ଜନ୍ମାଷ୍ଟମୀ, ରାମନବମୀ ପ୍ରଭୃତି ପର୍ବ ହିଁ ଏତ ଏହି ଉଦ୍ଦେଶ୍ୟରୁ ପରିକଳ୍ପିତ । ଇଦ୍ ଏବଂ ବଡ଼ଦିନର ଉଦ୍ଦେଶ୍ୟ ମଧ୍ୟ ତାହାହିଁ ହୋଇ-ପାରେ । ଏହି ଅବସରରେ ଆମେ ମହାପୁରୁଷମାନଙ୍କ ଜୀବନୀ ଆଲୋଚନା କରିବା ନିମନ୍ତେ ସୁଯୋଗ ଲାଭକରିଥାଉଁ । ସେମାନଙ୍କର ଆଦର୍ଶରୁ କିଛି ଶିକ୍ଷା ଲାଭ କରି ଆମ ଜୀବନକୁ ସେଇ ଭାବରେ ଗଢ଼ିବାକୁ ଉଦ୍ୟମ କରିପାରୁଁ । ଅନ୍ତତଃ ସାମୟିକ ଭାବରେ ହେଲେ ମଧ୍ୟ ଏହି ସମୟରେହିଁ ଆମେ ଆମ ଜୀବନର ଜ୍ୱାଳାଯନ୍ତ୍ରଣାକୁ ଭୁଲିଯାଉଁ । ଅନୁଶାସିତ ଏବଂ ଶୃଙ୍ଖଳ ବଦ୍ଧ ଏକ ନୂତନ ଜୀବନର ପ୍ରେରଣା ମଧ୍ୟ ସମୟ-ସମୟରେ ଏଥିରୁ ମିଳିଯାଏ ।

କୃଷିପ୍ରଧାନ ଭାରତୀୟ ସମାଜର ଅଧିକାଂଶ ପର୍ବପର୍ବାଣି ସହିତ ଋତୁ-ଚକ୍ରର ତଥା କୃଷିକର୍ମର ନିବିଡ଼ ଯୋଗାଯୋଗ ରହିଛି । ଏଗୁଡ଼ିକ ମଧ୍ୟରେ ବସନ୍ତ-ପଞ୍ଚମୀ, ଦୋଳ, କୁମାରପୂର୍ଣ୍ଣିମା, ରାସପୂର୍ଣ୍ଣିମା, ଦୀପାବଳି, ନବାନ୍ନ ଭକ୍ଷଣ, ଚିତାଲାଗି ଅମାବାସ୍ୟା, ଅକ୍ଷୟ-ତୃତୀୟା, ଶାମ୍ବ ଦଶମୀ ଇତ୍ୟାଦି ବହୁ ପର୍ବର ନାମ ଗ୍ରହଣ କରାଯାଇପାରେ । ଏହି ସବୁ ପର୍ବ ଋତୁବିଶେଷରେ ଦିନଚର୍ଯ୍ୟା ତଥା ଖାଦ୍ୟପେୟ ବସନଭୂଷଣ ଇତ୍ୟାଦିର ବିଶେଷ ବ୍ୟବସ୍ଥା କରିବା ନିମନ୍ତେ ଆମକୁ ସୂଚାଇଥାଏ । ନିଜେ ଖାଇ ଅପରକୁ ଖୁଆଇବାର ଯେଉଁ ଉଦାର ନୀତି ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ, ତାହାର ମୂଳାଧାର ହେଉଛି ଏହି ସବୁ ଗ୍ରାମ୍ୟ ପର୍ବଗୁଡ଼ିକ ।

ରାଷ୍ଟ୍ରୀୟ ସ୍ତରରେ ପାଳିତ ହେଉଥିବା ଉତ୍ସବଗୁଡ଼ିକ, ଯଥା—ସ୍ୱାଧୀନତା ଦିବସ, ଗଣତନ୍ତ୍ର ଦିବସ, ଗାନ୍ଧୀ-ଜନ୍ମଦିବସ-ଏଗୁଡ଼ିକ ଦେଶପ୍ରତି ଆମର ଦାୟିତ୍ୱ ସମ୍ପର୍କରେ ଆମକୁ ସୂଚାଇ-ଦିଏ । ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଏହି ସବୁ ଉତ୍ସବ ପାଳିତ ହେଉଥିବାରୁ ଏଥିରୁ ଏକତାର ପ୍ରସାର ଘଟେ ।

ପର୍ବପର୍ବାଣିର ପାଳନ ଅବସରରେ ମନର ସମସ୍ତ ଗ୍ଳାନି କଟିଯାଇ, ଆନନ୍ଦ ଆଉ ଉଲ୍ଲାସରେ ମନ ପୂର୍ଣ୍ଣ ହୁଏ । ତା' ଛଡ଼ା ଏହା ସାମାଜିକ କ୍ଷେତ୍ରରେ ମିଳାମିଶାର ଅପୂର୍ବ

ସୁଯୋଗ ସୃଷ୍ଟି କରି ବ୍ୟକ୍ତିଗତ ମନୋମାଳିନ୍ୟ ଇତ୍ୟାଦି ଦୂର କରିବାରେ ସହାୟକ ହୋଇଥାଏ । ପର୍ବପର୍ବାଣି ଅବସରରେ ବନ୍ଧୁବାନ୍ଧବ, ଚଳ୍ଳା-ପରିଚୟ ସମସ୍ତଙ୍କର ସୁଖ-ସମୃଦ୍ଧି କାମନା କରିବା ଏକ ସାଧାରଣ ବ୍ୟାପାର; ମାତ୍ର ଏହି ସାଧାରଣହିଁ ସମସ୍ତ-ସମୟରେ ଅସାଧାରଣର ସୃଷ୍ଟି କରିଥାଏ ।

ପର୍ବପର୍ବାଣିଶୂନ୍ୟ ଜୀବନ ନିତାନ୍ତ ଶୁଷ୍କ, ନିରସ ଏବଂ ତେଣୁ କ୍ଲାନ୍ତିଦାୟକ ମନେ-ହେବ; ଜୀବନ ଯନ୍ତ୍ରଣାପୂର୍ଣ୍ଣ ହୋଇପଡ଼ିବ । ପାରସ୍ପରିକ ସମ୍ପର୍କ ବିଘ୍ନିତ ହେବ । ସମସ୍ତେ ନିଜନିଜର ସଙ୍କୀର୍ଣ୍ଣ ପରିଧି ମଧ୍ୟରେ ଆବଦ୍ଧ ରହିବେ । ସାମାଜିକତା ନିମନ୍ତେ ଏହି ପର୍ବପର୍ବାଣି ଏକ ଚମତ୍କାର ଅବସର ସୃଷ୍ଟି କରୁଥିବାରୁ ତା'ର ଅଭାବରେ ସେ ସବୁ ଶୁଷ୍କ ହୋଇଯିବ । ସ୍ମରଣୀୟ ବ୍ୟକ୍ତିତ୍ୱର ସଂସ୍ମରଣ, ସେମାନଙ୍କର ପବିତ୍ର ଚରିତ୍ର ସମ୍ପର୍କୀୟ ଆଲୋଚନାରୁ ଜନସାଧାରଣ ଯେଉଁ ସାମାନ୍ୟ ପ୍ରେରଣା ପାଇଥାନ୍ତି, ତାହା ମଧ୍ୟ ବନ୍ଦ ହୋଇଯିବ । ଜୀବନ ବିକାଶହୀନ ହୋଇପଡ଼ିବ । ସବୁଠାରୁ ବଡ଼ କଥା, ଆମର ପୂର୍ବଜମାନେ ସୁସ୍ୱାସ୍ଥ୍ୟ ନିମନ୍ତେ ଋତୁଚକ୍ରର ପରିବର୍ତ୍ତନ ସହିତ ଆମର ଖାଦ୍ୟରୁଚି ତଥା ଦିନଚର୍ଯ୍ୟାର ଯେଉଁ ବ୍ୟବସ୍ଥା କରିଦେଇଯାଇଛନ୍ତି, ଏବଂ ବିଭିନ୍ନ ପର୍ବପର୍ବାଣି ସହିତ ତ ହାକୁ ଯେପରି କ୍ଷୀର-ନୀର ନ୍ୟାୟରେ ମିଶାଇଦେଇଯାଇଛନ୍ତି, ତାହାର ବୈଜ୍ଞାନିକ ପ୍ରଭାବକୁ ଆମ୍ଭେମାନେ ଆଦୌ ଅସ୍ୱୀକାର କରିପାରିବା ନାହିଁ । ଯଦି ଆମେ ତାହା ପାଳନକରୁ, ତେବେ ନାନା ରୋଗ-ବ୍ୟାଧି ଯେ ସହଜରେ ଆମକୁ କାବୁକରିପକାଇବ, ଏହା ଏକ ନିଶ୍ଚିତ ସତ୍ୟ । ଏହାଛଡ଼ା ପର୍ବ ଉପଲକ୍ଷରେ ଘରଦ୍ୱାର ସଫାସୁତୁରା ସଜଡ଼ାସଜଡ଼ି କରିବାର ଏକ ପରମ୍ପରା ମଧ୍ୟ ଆମର ରହିଛି । ନିୟମିତ ଝାଡ଼ାପୋଛା ଫଳରେ ନାନାପ୍ରକାର ରୋଗର ଜୀବାଣୁ, ମୂଷା, ମଶା, ପୋକଜୋକ ଇତ୍ୟାଦିଙ୍କ ଉତ୍ପାତରୁ ରକ୍ଷାମିଳେ । ସାମାଜିକ ଆନନ୍ଦ ଉଲ୍ଲାସ ବ୍ୟତୀତ ଏ ଦିଗଟିକୁ ଭୁଲିଗଲେ ଚଳିବ ନାହିଁ ।

ଉପସଂହାରରେ ତେଣୁ କୁହାଯାଇପାରେ ଯେ, ମଣିଷ ଜୀବନରେ ପର୍ବପର୍ବାଣିର ସ୍ଥାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହା ଆନନ୍ଦ ଆଣେ, ବ୍ୟକ୍ତିମାନସରେ ସାମାଜିକତାର ଭୂମ୍ବୋବିକାଶ ଘଟାଏ, କର୍ତ୍ତବ୍ୟବୋଧ ଜାଗ୍ରତ କରେ । ଜୀବନର ଅବସାଦ ତଥା କ୍ଲାନ୍ତିକୁ ଦୂର କରି ନୂତନ ସମ୍ଭାବନାରେ, ନୂତନ ପ୍ରେରଣାରେ ଜୀବନଯାତ୍ରାରେ ଆଗେଇଯିବାର ପ୍ରବୃତ୍ତି ଏହି ସବୁ ପର୍ବପର୍ବାଣିରୁହିଁ ଆମେ ପାଇଥାଉଁ ।

# ଚଳଚ୍ଚିତ୍ରର ପ୍ରଭାବ

ଆଧୁନିକ ସମାଜ-ଜୀବନ ସହିତ ଚଳଚ୍ଚିତ୍ରର ସମ୍ପର୍କ ଏତେ ନିବିଡ଼ ହୋଇ-ପଡ଼ିଲାଣି ଯେ, ଆଜି ଆମେ ଚଳଚ୍ଚିତ୍ର ବ୍ୟତୀତ ଆମ ସ୍ଥିତିର କଳ୍ପନାକୁ ଅସମ୍ଭବ ମନେକରୁଛୁଁ । ଦୈନନ୍ଦିନ ଜୀବନରେ ସୁଦ୍ଧା ଚଳଚ୍ଚିତ୍ରର ପ୍ରଭାବକୁ ଅସ୍ୱୀକାର କରି ପାରୁନାହୁଁ । ଧନୀ-ଦରିଦ୍ର-ନିର୍ବିଶେଷରେ ସମସ୍ତେ ଏହି ଚଳଚ୍ଚିତ୍ରର ଆକର୍ଷଣରେ ମଗ୍ନ । ଚଳଚ୍ଚିତ୍ରର ଆଦର୍ଶହିଁ ଜୀବନର ଆଦର୍ଶରେ ପରିଣତ ହେଉଛି । ଏଥିରୁ ମୁକ୍ତି ପାଇବାର ଆଉ କୌଣସି ବାଟ ନାହିଁ । ସମାଜଜୀବନରେ ଏହାର ପ୍ରଭାବରେ ନାନା ବିଶୃଙ୍ଖଳା ସୃଷ୍ଟି ହେଉଛି ।

ଚଳଚ୍ଚିତ୍ର ଆଧୁନିକ ଲଳିତକଳାର ଶ୍ରେଷ୍ଠତମ ରୂପ । କଳାର ସାଧାରଣତଃ ପାଞ୍ଚଟି ରୂପ ରହିଛି; ଯଥା—ସ୍ଥାପତ୍ୟକଳା, ମୂର୍ତ୍ତିନିର୍ମାଣକଳା, ଚିତ୍ରକଳା, ସଙ୍ଗୀତକଳା ଏବଂ କାବ୍ୟକଳା । ଏହି ପାଞ୍ଚଟି କଳାର ସମନ୍ୱୟ ନାଟ୍ୟକଳାରେ ହୋଇଥାଏ । ନାଟକ ପ୍ରଦର୍ଶନ ନିମନ୍ତେ ଗୋଟିଏ ମଞ୍ଚ ପ୍ରସ୍ତୁତ ହୁଏ । ଏହାକୁ ନାନାବିଧ ଚିତ୍ର ଏବଂ ମୂର୍ତ୍ତି ଦ୍ୱାରା ସୁସଜ୍ଜିତ କରାଯାଏ । ସଙ୍ଗୀତ ଦ୍ୱାରା ଦର୍ଶକଙ୍କୁ ମୁଗ୍ଧ କରାଇବାର ବ୍ୟବସ୍ଥା ଏଥିରେ ଥାଏ । ଯେକୌଣସି ଗୋଟିଏ କାବ୍ୟକୁ ଅଭିନେତା-ଅଭିନେତ୍ରୀଙ୍କ ସାହାଯ୍ୟରେ ରୂପ ଦିଆଯାଏ । ଏହିଭଳି ପଞ୍ଚକଳାର ସମନ୍ୱୟ ନାଟ୍ୟକଳାକୁ କଳାର ଏକ ଉତ୍କୃଷ୍ଟତମ ରୂପ ଭାବରେ ଉପସ୍ଥାପିତ କରେ ।

ଚଳଚ୍ଚିତ୍ର ଏହି ନାଟ୍ୟକଳାର ଅଂଶବିଶେଷ । ଏହାକୁ ଆଧୁନିକ ବିଜ୍ଞାନର ଏକ ଚମତ୍କାର ଅବଦାନ ରୂପରେ ଗ୍ରହଣ କରି ନିଆଯାଇପାରେ । ଏଥିରେ ଛବିଗୁଡ଼ିକ ଯେଉଁଭଳି ଭାବରେ ଚଳାବୁଲା କରନ୍ତି, ସଂଳାପ ଉଚ୍ଚାରଣ କରନ୍ତି, ଗୀତନୃତ୍ୟ ଇତ୍ୟାଦି ପ୍ରଦର୍ଶନ କରନ୍ତି, ସେ ସବୁ ଦେଖିଲେ ବିସ୍ମିତ ହେବାକୁ ହୁଏ । ଫଟୋଗ୍ରାଫି ଏବଂ ରେକର୍ଡିଂ କୌଶଳର ଏହା ଏକ ସୁନ୍ଦର ପ୍ରଦର୍ଶନୀ । ଫଟୋଗ୍ରାଫି ସାହାଯ୍ୟରେ ଅଭିନେତାମାନଙ୍କର ପ୍ରତି ମୁହୂର୍ତ୍ତରେ ଅଙ୍ଗଚାଳନା, ହାବ-ଭାବ ଇତ୍ୟାଦିକୁ ଫଟୋ ଫିଲ୍ମ ଉପରେ ରେକର୍ଡ଼ କରି ରଖାଯାଉଛି ଏବଂ ତାଙ୍କ ମୁହଁରୁ ଉଚ୍ଚାରିତ ସଂଳାପକୁ ରେକର୍ଡ଼ର ସାହାଯ୍ୟରେ ରେକର୍ଡ଼ କରି ରଖାଯାଉଛି । ତାହାପରେ ବିଦ୍ୟୁତ୍-ପ୍ରକାଶରେ ଯନ୍ତ୍ରସାହାଯ୍ୟରେ ଯେତେବେଳେ ଏହି ସବୁ ଫିଲ୍ମ ଗତିଶୀଳ ହୋଇଉଠୁଛି, ସେତେବେଳେ ମନେହେଉଛି—ଏହି ସବୁ ଚିତ୍ର ହିଁ ଅଭିନୟ କରୁଛନ୍ତି, ଗୀତ ଗାଉଛନ୍ତି, ସଂଳାପ

କରୁଛନ୍ତି ଏବଂ ନୃତ୍ୟବାଦ୍ୟ ଇତ୍ୟାଦି ପ୍ରଦର୍ଶନ କରୁଛନ୍ତି । ସାଧାରଣ ଦର୍ଶକ ଏହାର ବୈଜ୍ଞାନିକ କୌଶଳଟିକୁ ସହଜରେ ଧରିପାରୁନାହିଁ ।

ଯେହେତୁ ଚଳଚ୍ଚିତ୍ର ନାଟକର ଏକ ରୂପମାତ୍ର, ତେଣୁ ନାଟ୍ୟରସପିପାସୁ ଦର୍ଶକ ଏହାପ୍ରତି ଆକୃଷ୍ଟ ହେଉଛନ୍ତି । ମନୋରଞ୍ଜନ ମତରେ ଯେଉଁ କାର୍ଯ୍ୟରେ ଜ୍ଞାନେନ୍ଦ୍ରିୟ ଯେତେ ଅଧିକ ସକ୍ରିୟ ହୁଏ, ତା'ପ୍ରତି ମନର ସଂଯୋଗ ସେତିକି ଅଧିକ ତୀବ୍ର ହୁଏ । ମନ ଆକର୍ଷଣ କରିବା ନିମନ୍ତେ ଗତିଶୀଳତା ଏକ ଅପରିହାର୍ଯ୍ୟ ବିଷୟ । ଏହି ଗତିବେଗ ଚଳଚ୍ଚିତ୍ରରେ ଅତ୍ୟନ୍ତ କ୍ଷିପ୍ର ହୋଇଥିବାରୁ ଏହା ସହଜରେ ଦର୍ଶକମାନଙ୍କର ମନ ଏବଂ ପ୍ରାଣକୁ ନିଜ ଆଡ଼କୁ ଆକୃଷ୍ଟ କରିନେଇପାରୁଛି । ମାନବ-ଜୀବନର ସୁଖଦୁଃଖର ସାଧାରଣ ପ୍ରଦର୍ଶନ ଏହାର ଆକର୍ଷଣକୁ ଆହୁରି ବଢ଼ାଇଦେଉଛି । କେବଳ ଏହି କାରଣରୁହିଁ ଚଳଚ୍ଚିତ୍ର ଆମ ଜୀବନର ଏକ ଅବିଚ୍ଛିନ୍ନ ଅଙ୍ଗ ଭାବରେ ସ୍ୱୀକୃତ ହୋଇଯାଇଛି । ଏହି କାରଣରୁହିଁ ବେତାର କିମ୍ବା ଦୂରଦର୍ଶନ ପୂର୍ବା ଆମ୍ଭମାନଙ୍କୁ ସହଜରେ ଆକୃଷ୍ଟ କରୁଛି । ଚଳଚ୍ଚିତ୍ରର ଦୁର୍ବାର ଆକର୍ଷଣ ଆମର ସମାଜଜୀବନକୁ ନିଶାଗ୍ରସ୍ତ କରିପକାଇଲଣି । ପ୍ରଦର୍ଶନଗୃହ ସମ୍ମୁଖରେ ଖରାବର୍ଷା ଶୀତକାକରକୁ ଉପେକ୍ଷା କରି ଦର୍ଶକସମାଜ ଯେଉଁଭଳି ଘଣ୍ଟା ଘଣ୍ଟା ଧରି ଟିକେଟ୍ ଖଣ୍ଡେ ପାଇବା ନିମନ୍ତେ ତପସ୍ୟା କରୁଛନ୍ତି, ସେଥିରୁ ଏହାହିଁ ପ୍ରତିପାଦିତ ହେଉଛି ।

ରଞ୍ଜନର ଏହି ଚମତ୍କାର ରୂପଟି ଦୂରକୁ ନିକଟ କରିବାର, ଅଜ୍ଞାତକୁ ଜାଣିବାର, ଅପରିଚିତକୁ ପରିଚିତ କରାଇବାର ଏକ ସୁନ୍ଦର ଦାୟିତ୍ୱ ପାଳନକରୁଛି । ଦେଶ ବାହାର କଥା ତ ଦୂର, ଆମ ନିଜ ଦେଶର ବନ ପର୍ବତ, ନଦୀ ଝରଣା, ପଶୁ ପକ୍ଷୀ, ନରନାରୀ ଏମାନଙ୍କୁ ପୂର୍ବା ଭଲଭାବରେ ଜାଣିବାର କିମ୍ବା ଦେଖିବାର ସୁଯୋଗ ଆମ ଜୀବନରେ ଖୁବ୍ କମ୍ ଆସୁଛି । ମାତ୍ର ଚଳଚ୍ଚିତ୍ର ସାହାଯ୍ୟରେ ଏହି କାର୍ଯ୍ୟଟି ଖୁବ୍ ସୁନ୍ଦର ଭାବରେ କରାଯାଇପାରୁଛି । ଦେଶ-ବିଦେଶକୁ ଜାଣିବାର, ସେଠାକାର ଜୀବନଧାରା ସହିତ ନିଜର ପାର୍ଥକ୍ୟ ବିଚାର କରିବାର ଏଭଳି ଚମତ୍କାର ସୁଯୋଗ ଆଉ ଅନ୍ୟ କାହାରି ଦ୍ୱାରା ସୃଷ୍ଟି କରାଯାଇ ପାରିନାହିଁ । ବାହାର ଜୀବନର ରୀତିନୀତି, ଚାଲିଚଳନ, ପୋଷାକ ପରିଚ୍ଛଦ, ଖାଦ୍ୟପେୟ ଇତ୍ୟାଦି ସହିତ ପରିଚିତ ହେବାର ଏହା ହେଉଛି ଏକ ଚମତ୍କାର ମାଧ୍ୟମ । ମହାପୁରୁଷ ମଧ୍ୟରେ ଆମେ ଦରିଆପାରିର ଜୀବନକୁ ପ୍ରତ୍ୟକ୍ଷ କରିବାର ସୁଯୋଗ ପାଇପାରୁଛୁ । ଯେଉଁ ଦୃଶ୍ୟ ହୁଏତ ଆମେ ଆମର ଜୀବନକାଳ ମଧ୍ୟରେ ଥରେ ମାତ୍ର ଦେଖିବାର ସୁଯୋଗ ପାଉନଥାନ୍ତୁ, ତାଙ୍କ ସହିତ ଅନାୟାସରେ ପରିଚିତ ହୋଇପାରୁଛୁ । ବିଭିନ୍ନ ଉପାୟରେ ତେଣୁ ଚଳଚ୍ଚିତ୍ର ଜ୍ଞାନରାଜ୍ୟର ସୀମାକୁ ବିସ୍ତୃତ କରିବାରେ ପ୍ରଧାନ ଭୂମିକା ଗ୍ରହଣ କରିଛି ବୋଲି

କୁହାଯାଇପାରେ । ଭାରତବର୍ଷରେ ଆଜି ହିନ୍ଦୀଭାଷାର ଯେଉଁ ସାର୍ବଜନୀନତା ଦେଖା-ଦେଇଛି, ଏହା ପଛରେ ଚଳଚ୍ଚିତ୍ରର ଅବଦାନକୁ ବିସ୍ମୃତ ହେଲେ ଚଳିବନାହିଁ ।

ଆଜି ବିଜ୍ଞାନ, ଶିକ୍ଷା, ଚିକିତ୍ସା, କୃଷି, ପଶୁପାଳନ ବ୍ୟାବହାରିକ ଜ୍ଞାନର ପରିଧିକୁ ବିସ୍ତୃତ କରିବାରେ ଚଳଚ୍ଚିତ୍ର ଯେଉଁ ଭୂମିକା ଗ୍ରହଣ କରିଛି, ତାକୁ ଅସ୍ୱୀକାର କରିବାର ଉପାୟ ନାହିଁ । ଦୂରଦର୍ଶନ ସାହାଯ୍ୟରେ ପ୍ରବୀଣ ଏବଂ ଅଭିଜ୍ଞ ଅଧ୍ୟାପକବୃନ୍ଦ ଜ୍ଞାନବିଜ୍ଞାନର ଗୂଢ଼ତତ୍ତ୍ୱକୁ ମୁହୂର୍ତ୍ତିକମଧ୍ୟରେ ସମଗ୍ର ବିଶ୍ୱରେ ପ୍ରସାରିତ କରିଦେଇ ପାରୁଛନ୍ତି । ଅବଶ୍ୟ ଏହାଦ୍ୱାରା ପ୍ରଶ୍ନୋତ୍ତର ମାଧ୍ୟମରେ ସନ୍ଦେହ ଦୂର କରିବାର ବ୍ୟବସ୍ଥା ଗ୍ରହଣ କରାଯାଇପାରୁନାହିଁ । ତଥାପି ଯେଉଁ ଉପକାର ହେଉଛି, ତାହା ଖୁବ୍ ସାମାନ୍ୟ ନୁହେଁ । ମନୋରଞ୍ଜନ ସହିତ ଶିକ୍ଷାଦାନର ଏ ଯେଉଁ ଆକର୍ଷଣୀୟ ବ୍ୟବସ୍ଥା କରାଯାଇ ପାରିଛି, ଏହାର ଚମତ୍କାରିତା ନିକଟରେ ତେଣୁ କୃତଜ୍ଞ ରହିବାକୁ ଆମେ ବାଧ୍ୟ ।

ମାତ୍ର ଏହାର ଏକ ଧ୍ୱଂସମୁଖୀ ଦିଗ ରହିଛି । ବିଜ୍ଞାନ ଯେତିକି ଉପକାରୀ ବନ୍ଧୁ, ତତୋଽଧିକ ଭୟଙ୍କର ଶତ୍ରୁ । ଉପଯୁକ୍ତ ବିନିଯୋଗ ଦ୍ୱାରା ହିଁ ଆମେ ଏହାଦ୍ୱାରା ଉପକୃତ ହୋଇଥାଉଁ ।

ଚଳଚ୍ଚିତ୍ର କ୍ଷେତ୍ରରେ ଠିକ୍ ଏହାହିଁ ପ୍ରମାଣିତ ହୋଇଛି । ବିଜ୍ଞାନର ଏହି ଅନ୍ୟତମ ଶ୍ରେଷ୍ଠ ଦାନକୁ ଉପଯୁକ୍ତ ଭାବରେ ବ୍ୟବହାର କରିପାରିଥିଲେ, ଆମେ ଏଥିରୁ ଯେଉଁ ଉପକାର ପାଇପାରିଥାନ୍ତୁ, ଆଜି ମଣିଷର ସ୍ୱାର୍ଥଲିପ୍ସା ତାହାକୁ ସମ୍ପୂର୍ଣ୍ଣ ବ୍ୟର୍ଥ କରିଦେବାକୁ ବସିଲାଣି । ସମାଜଗଠନରେ ଏହାକୁ ପ୍ରୟୋଗ ନକରି ବର୍ତ୍ତମାନ ଏହାଦ୍ୱାରା ଅର୍ଥ ସଂଗ୍ରହ କରିବାର ଏକ ସ୍ୱାର୍ଥପର ଉଦ୍ୟମ ଜୋର୍‌ସୋର୍‌ରେ କରାଯାଉଛି । ସାଧାରଣ ଲୋକଙ୍କର କୁପ୍ରବୃତ୍ତିଗୁଡ଼ିକୁ ଉତ୍ତେଜିତ କରାଇ ଏହାକୁ ଲୁଲ୍‌ବାଟରେ ପରିଚାଳନା କରାଯାଉଛି । ଫଳରେ ଏଥିରେ ସ୍ଥାନ ପାଉଛି ଚୋରି, ଡକାୟିତି, ଧର୍ଷଣ, ଆତ୍ମହତ୍ୟା, ବ୍ୟାଭିଚାର, ଖୁନ୍ ଏବଂ ବହୁବିଧ ସାମାଜିକ କୁରୀତି । ଏସବୁ ସାଧାରଣ ଅଶିକ୍ଷିତ ଜନତାଙ୍କୁ ସହଜରେ ଆକୃଷ୍ଟ କରୁଛି ଏବଂ ଆମର ସମାଜଜୀବନରେ ମଧ୍ୟ ତାହାର କଦର୍ଯ୍ୟ ପ୍ରଭାବ ଦେଖିବାକୁ ମିଳୁଛି ।

ଚଳଚ୍ଚିତ୍ର ପ୍ରସ୍ତୁତକାରୀ ସଂସ୍ଥା, ସେମାନଙ୍କ ଉପରେ ଯେଉଁ ଗୁରୁଦାୟିତ୍ୱଟି ରହିଛି ତାକୁ ବୁଝିବାକୁ ପ୍ରସ୍ତୁତ ନୁହନ୍ତି । ଫଳରେ ଯେଉଁ ମାଧ୍ୟମଟି ଜନକଲ୍ୟାଣର ସର୍ବଶ୍ରେଷ୍ଠ ସାଧନ ରୂପରେ ବ୍ୟବହୃତ ହୋଇପାରନ୍ତା, ଆଜି ତାହା ଜନସମାଜର ଭୟାନକ ଯନ୍ତ୍ରରେ ଲିପ୍ତ । ଶିକ୍ଷାର ପ୍ରସାର, ଜ୍ଞାନର ବିସ୍ତୃତି, କୃଷିର ଉନ୍ନତି, ସ୍ୱଦେଶପ୍ରେମର ପ୍ରଚାର, ପାରସ୍ପରିକ ବୁଝାମଣା ଇତ୍ୟାଦି ନିମନ୍ତେ ଏହାକୁ ବ୍ୟବହାର କରାଯାଇପାରିଲେହିଁ ଏଥିରୁ ମାନବଜାତିର ପ୍ରଚୁର ଉପକାର ହେବ ।

# ସମୟାନୁବର୍ତ୍ତିତା

ମଣିଷ ସୀମିତ ସମୟ ନିମନ୍ତେ ପୃଥିବୀକୁ ଆସି, ଏଠାରେ ନିଜର ଅଭିନୟ ପ୍ରଦର୍ଶନ କରି ମୃତ୍ୟୁ ବରଣ କରେ । ଜୀବନ ସ୍ଥାୟୀ ନୁହେଁ । ଜୀବନରୁ ଯାହା ମିଳେ, ଯାହା ଅର୍ଜନ କରାଯାଏ, ତାହାହିଁ ସ୍ଥାୟୀ ହୋଇପାରେ । କର୍ମର ମହତ୍ତ୍ୱହିଁ ମଣିଷକୁ ଯୁଗଯୁଗାନ୍ତର ବଞ୍ଚାଇ ରଖେ । କବି ଗୋପବନ୍ଧୁ ତେଣୁ ମଣିଷ-ଜୀବନକୁ କେବଳ ମାତ୍ର ବର୍ଷ, ମାସ, ଦିନ, ଦଣ୍ଡ ମଧ୍ୟରେ ସୀମିତ ନରଖି ଏହାକୁ କର୍ମର ମହତ୍ତ୍ୱରେ ପରିଗଣିତ କରିବା ନିମନ୍ତେ ଉପଦେଶ ଦେଇଛନ୍ତି । ବହୁତଗୁଡ଼ାଏ ଦିନ ବଞ୍ଚିଗଲେ ଯେ ମଣିଷ ଶାଶ୍ୱତ କୀର୍ତ୍ତି କିମ୍ବା ଯଶ ସ୍ଥାପନ କରିପାରେ; ଏହା ମଧ୍ୟ ନୁହେଁ । ଏସବୁ ନିମନ୍ତେ ସ୍ୱଳ୍ପ ଜୀବନକାଳ ସୁଦ୍ଧା ପର୍ଯ୍ୟାପ୍ତ ହୋଇପାରେ । ଅନ୍ତତଃ କେତେକ ମହାପୁରୁଷଙ୍କ ଜୀବନୀରୁ ଏହାହିଁ ପ୍ରମାଣିତ ହୋଇଥାଏ । ଜୀବନ ଯେହେତୁ ସ୍ୱଳ୍ପ ଏବଂ କାର୍ଯ୍ୟ ବହୁତ, ତେଣୁ ସମୟର ଗୁରୁତ୍ୱ ସମ୍ପର୍କରେ ପ୍ରଥମରୁ ହିଁ ସଚେତନ ହେବା ଏକାନ୍ତ ଆବଶ୍ୟକ ।

ସ୍ୱାମୀ ବିବେକାନନ୍ଦ ବାରମ୍ବାର କହୁଥିଲେ, "ସଂସାରକୁ ଆସିଛ; ପଦଚିହ୍ନ ଛାଡ଼ିଯାଅ । ତୁମପରି କେତେ ଆସିବେ, କେତେ ଯିବେ । ଭୋଗବିଳାସ, ସମ୍ପତ୍ତି ବିତ୍ତ, ମାନ ଅଭିମାନ ସବୁ ଦିନେ ବିସ୍ମୃତିଗର୍ଭରେ ଲୀନ ହୋଇଯିବ । ପାଣିରେ ପାଦଚିହ୍ନ ମୁହୂର୍ତ୍ତେ, ବାଲି ଉପରେ ପାଦଚିହ୍ନ ମଧ୍ୟ କେତେ ଦଣ୍ଡ; କିନ୍ତୁ ଶିଳାରେ ଚିହ୍ନିତ ପଦଚିହ୍ନହିଁ ରହିବ କାଳ କାଳ···।" ନିଜର ସ୍ଥାୟୀ ପଦଚିହ୍ନ ପଛରେ ଛାଡ଼ିଯିବାରେହିଁ ମଣିଷ ଜୀବନର ସାର୍ଥକତା । ଏହା କିନ୍ତୁ ଆଦୌ ସହଜସାଧ୍ୟ ନୁହେଁ । ଏଥିପାଇଁ ଆଜୀବନ ସଚେଷ୍ଟ ସାବଧାନୀ ଉଦ୍ୟମର ଏକାନ୍ତ ଆବଶ୍ୟକ ହୋଇଥାଏ । ସମୟକୁ ନିଜ ହାତରେ ରଖି ଯେଉଁମାନେ ଏ ଦିଗରେ ବ୍ରତୀ ହୁଅନ୍ତି, ସଫଳତା କେବଳ ସେଇମାନଙ୍କୁ ମିଳେ ।

ଜୀବନଗଠନରେ ସମୟର ଏକ ଅପରିହାର୍ଯ୍ୟ ଭୂମିକା ରହିଛି । ଯଦି ଗଭୀର ଭାବରେ ଚିନ୍ତା କରାଯାଏ, ତାହାହେଲେ ଦେଖାଯିବ ଯେ, ଜୀବନର ତିନି-ଚତୁର୍ଥାଂଶ ସମୟ କେବଳ ବାଜେ ଚିନ୍ତା ଏବଂ କାର୍ଯ୍ୟରେ ନଷ୍ଟ ହୋଇଯାଉଛି । ଦିନକୁ ଯଦି ଜଣେ ଆଠଘଣ୍ଟା ଶୁଏ, ତେବେ ଗୋଟିଏ ବର୍ଷ ମଧ୍ୟରେ ସେ କେବଳ ଚାରିମାସ କାଳ ଶୋଇ ରହୁଛି । ଏହିପରି ତା'ର ନିତ୍ୟକର୍ମ, ଗପସପ, ବୁଲାବୁଲି ନିମନ୍ତେ ନିଶ୍ଚୟ ସେ ଏହିଭଳି ସମୟ ବ୍ୟୟ କରୁଥିବ । ତାହାହେଲେ, ଏଥିରୁ ଦେଖାଯାଇପାରେ, ଅନ୍ୟ ପାଇଁ ଚିନ୍ତା କରିବା ନିମନ୍ତେ ପ୍ରକୃତରେ ତା' ପାଖରେ କେତେ ସମୟ ରହୁଛି ।

ଅନେକେ କହିଥାଆନ୍ତି, "କ'ଣ କରିବି ? ଅମୁକ କାର୍ଯ୍ୟଟି କରିବା ନିମନ୍ତେ ମୋର ବହୁତ ଇଚ୍ଛା; ମାତ୍ର ମୋତେ ତ ମୋଟେ ସମୟ ହେଉନାହିଁ ।" ଏହି ଉକ୍ତି କେବଳ ମାତ୍ର ଆତ୍ମପ୍ରବଞ୍ଚନା ବ୍ୟତୀତ ଅନ୍ୟ କିଛି ନୁହେଁ । ଯେକୌଣସି କାର୍ଯ୍ୟ କରିବା ନିମନ୍ତେ

କଦାପି ସମୟର ଅଭାବ ହୋଇନପାରେ—ମନ ଦୃଢ଼କରି ନିଜକୁ ସେଥିରେ ଲଗାଇଦେଇ ପାରିଲେ ହିଁ ହେବ । ଶୁଣାଯାଏ, ଯୁଦ୍ଧକ୍ଷେତ୍ରର ବହୁ ବ୍ୟସ୍ତତା ମଧ୍ୟରେ ବାବର ନିୟମିତ ନିଦ୍ରାଯିବାର ସୁଯୋଗ କରିନେଉଥିଲେ । ଆଓରଙ୍ଗଜେବ୍ ଯୁଦ୍ଧ ଅବସରରେ ସୁଦ୍ଧା ନମାଜ ପଢ଼ିବାକୁ କଦାପି ଭୁଲୁ ନଥିଲେ । ଯୁଦ୍ଧକ୍ଷେତ୍ରରୁ ହିଁ ନେପୋଲିୟନ୍ ନିଜର ପତ୍ନୀଙ୍କ ନିକଟକୁ ନିୟମିତ ଦୀର୍ଘ ଚିଠିମାନ ଲେଖିପାରୁଥିଲେ । ଆଜି ଚର୍ଚ୍ଚିଲଙ୍କ ବିଷୟ ତ ସମସ୍ତେ ଜାଣନ୍ତି—ଦ୍ୱିତୀୟ ମହାଯୁଦ୍ଧ ଯେତେବେଳେ ସବୁଠାରୁ ଭୟଙ୍କର ଅବସ୍ଥା ଧାରଣ କରିଛି, ଲଣ୍ଡନର ଆକାଶ ଯେତେବେଳେ ଘନ ଘନ ଶତ୍ରୁପକ୍ଷୀୟ ବିମାନଦ୍ୱାରା ଆଚ୍ଛନ୍ନ ହୋଇଯାଉଛି, ସେତେବେଳେ ପ୍ରଧାନମନ୍ତ୍ରୀ ହିସାବରେ ନିଜର ସମସ୍ତ ଦାୟିତ୍ୱ ତୁଲାଇ ଚର୍ଚ୍ଚିଲ ସାହେବ ଭୋଜନ ପରେ ପ୍ରତ୍ୟେକ ଦିନ କିଛି ସମୟ ଦିବା ନିଦ୍ରାର ସୁଯୋଗ କରିନେଉଥିଲେ; ଏଥିରୁ କ'ଣ ଏହା ହିଁ ପ୍ରମାଣିତ ହେଉନାହିଁ ଯେ, ଇଚ୍ଛାର ଦୃଢ଼ତା ନିକଟରେ ସମୟକୁ ନତ ସ୍ୱୀକାର କରିବାକୁ ହେବ ବୋଲି ?

ମୋଟାମୋଟି ଭାବରେ ତେଣୁ କୁହାଯାଇପାରେ ଯେ, ଜୀବନଧାରାର ଶୃଙ୍ଖଳା ହିଁ କେବଳ ବ୍ୟକ୍ତିକୁ ସମୟର ଅଭାବ ଅନୁଭବ କରିବାକୁ ଦିଏ ନାହିଁ । ଶୃଙ୍ଖଳା ମାନବ-ଜୀବନର ସଫଳତାର ଚାବିକାଠି ବୋଲି ଅନେକ ମହାପୁରୁଷ କହିଛନ୍ତି, ସେମାନଙ୍କ ଜୀବନରୁ ମଧ୍ୟ ଏହାକୁ ପ୍ରମାଣିତ କରିହେବ । ମାତ୍ର ଆମ ଜୀବନରେ ତାହାର ଯେତେବେଳେ ଘୋର ଅଭାବ ରହିଛି, ସେତେବେଳେ ସମୟର ଅଭାବ ରହିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଅଧିକାଂଶ ଭାରତୀୟ ଆଦୌ ସମୟ-ସଚେତନ ନୁହନ୍ତି । ବୃଥା ବାକ୍ୟାଳାପ, ବୁଲାବୁଲି, ଅଯଥା ବ୍ୟାପାରରେ ଲିପ୍ତ ରହି ସେମାନେ କେତେ ଯେ ସମୟ ନଷ୍ଟ କରନ୍ତି, ତାହାର ଇୟତ୍ତା ନାହିଁ । ଏଣୁ ତେଣୁ ସଭା ସମିତି ଠିକ୍ ସମୟରେ ଆରମ୍ଭ ହୁଏ ନାହିଁ, ଟ୍ରେନ୍ ବସ୍ ଠିକ୍ ସମୟରେ ଚାଲେ ନାହିଁ, ଖବରକାଗଜ ଠିକ୍ ସମୟରେ ବାହାରେ ନାହିଁ, ରୋଗୀର ଅପରେସନ୍ ଠିକ୍ ସମୟରେ ହୁଏନାହିଁ । ଏହାଦ୍ୱାରା ଯେଉଁ ଅସୁବିଧା ସୃଷ୍ଟିହୁଏ, ସେଥିରେ ସୁଦ୍ଧା ଆମେ ଅଭ୍ୟସ୍ତ । ମାତ୍ର ଜଣକ ପାଇଁ କେତେ ଲୋକ ଯେ ହଇରାଣ ହୁଅନ୍ତି, ସେସବୁ କେହି କେବେ ଚିନ୍ତା କରେ ନାହିଁ । ବିଦେଶରେ ସମୟର ମୂଲ୍ୟ ବହୁତ । ସମୟକୁ ନିଜର ଆୟତ୍ତରେ ରଖିଥିବାରୁ ହିଁ ସେ ଦେଶଗୁଡ଼ିକ ଏତେ ଉନ୍ନତ । ରାସ୍ତାରେ ଯାଉଥିବାବେଳେ ସେମାନେ ପ୍ରାୟ ନଚାଲି ଦୌଡ଼ୁଥାଆନ୍ତି । ଗତିବେଗର ଏହି କ୍ଷିପ୍ରତା ତାଙ୍କ ଜୀବନଧାରାର ସଙ୍କେତ ପ୍ରକଟିତ । ତେଣୁ ସେମାନେ ଅନେକ କାମ କରିଯାଇପାରନ୍ତି । ଦୀର୍ଘକାଳ ବ୍ରିଟିଶ-ଶାସନାଧୀନ ରହିବା ଫଳରେ, ଆମେ ପାଶ୍ଚାତ୍ୟ ସଭ୍ୟତାର ଅନେକ ଭଲ ମନ୍ଦ ଦିଗ ସହିତ ବେଶ୍ ପରିଚିତ ହୋଇ-ଯାଇଛୁ; ଯଦିଓ ଏବେ ଦେଖାଯାଉଛି ସେମାନଙ୍କର ଭଲଗୁଣ ଅପେକ୍ଷା ମନ୍ଦ ଶଗୁ-

ଗୁଡ଼ିକହିଁ ଆମକୁ ପ୍ରଭାବିତ କରିଛୁ ଖୁବ୍ ବେଶି । ମାତ୍ର ସେମାନଙ୍କର ସମୟନିଷ୍ଠା ଗୁଣରୁ ଜାଣିଶୁଣି ମଧ୍ୟ ଆମେ ଗ୍ରହଣ କରିପାରିନାହୁଁ ।

ଜୀବନ ହେଉଛି ଏକ ବିରାଟ କର୍ମଶାଳା । ଏଠାରେ ଆଳସ୍ୟର, ଉଦାସୀନତାର, ନିଷ୍କ୍ରିୟତାର ଆଦୌ ସ୍ଥାନ ନାହିଁ । ଯୀରଭାବରେ ଯେ ଏହି କର୍ମଯଜ୍ଞରେ ନେତୃତ୍ୱ ଗ୍ରହଣ କରିପାରନ୍ତି, ସଫଳ ତାହାର ନିକଟରେ କଣାହୋଇଯାଏ । ନିଜ ପାଇଁ, ଅପର ପାଇଁ କର୍ମ କରି ସେମାନେ ଅମର ହୋଇଯାଆନ୍ତି । ଗାନ୍ଧୀ, ଗୋପବନ୍ଧୁ, ନେହେରୁ, କେନେଡ଼ି ପ୍ରମୁଖ ସଫଳ ବ୍ୟକ୍ତିଙ୍କର ଜୀବନ ପର୍ଯ୍ୟାଲୋଚନା କଲେ ଆମେ ଏହି ସତ୍ୟଟି ଉପଲବ୍ଧି କରିପାରିବା । କର୍ମ ନିମନ୍ତେ ପ୍ରୟୋଜନ ସମୟ । ସେଇ ସମୟକୁ ଅନୁଭବ କରିବା ହେଉଛି ଏକ ଶୃଙ୍ଖଳିତ-ମଣିଷର କାର୍ଯ୍ୟ ।

ସମୟାନୁବର୍ତ୍ତିତା ମଣିଷଜୀବନର ସଫଳତା ସହିତ ନିବିଡ଼ ଭାବରେ ସମ୍ପୃକ୍ତ ହୋଇ-ଥିବାରୁ, ଅତି ଛୋଟ ବେଳରୁ ମାନବଶିଶୁକୁ ସମୟର ମହତ୍ତ୍ୱ ବିଷୟରେ ଶିକ୍ଷା ଦିଆଯିବା ଆବଶ୍ୟକ । ଠିକ୍ ସମୟରେ ସବୁ କାମ କରିପାରିଲେ ଯେଉଁ ଅଦ୍ଭୁତ ଆନନ୍ଦ ମିଳେ, ଥରେ ତାହାର ପରିଚୟ ପାଇପାରିଲେ ମଣିଷ ଆପେ ଆପେ ସମୟାନୁବର୍ତ୍ତୀ ହୋଇ-ପଡ଼ିବ । ସର୍ବଦା ମନେରଖିବାକୁ ହେବ, ସମୟର ଗତି ଅତ୍ୟନ୍ତ ପ୍ରଖର । ଆଜିର ସମୟ କାଲିକୁ ଲେଉଟି ଆସିବ ନାହିଁ । ତେଣୁ ଯାହାକୁ ଆଜି କରିବାର କଥା, ତାହା ଏହି ମୁହୂର୍ତ୍ତରେ କରିପାରିଲେହିଁ ମନୁଷ୍ୟ କର୍ମର ଯଥାର୍ଥ ଆନନ୍ଦ ପାଇପାରିବ । ଦୀର୍ଘସୂତ୍ରୀ ମଣିଷର ଜୀବନ କିପରି ବ୍ୟର୍ଥ ହୋଇଯାଏ, ପୁରାଣ-ଶାସ୍ତ୍ରରେ ତାହାର ବହୁତ ଦୃଷ୍ଟାନ୍ତ ରହିଛି । ଲକ୍ଷ୍ୟ ସ୍ଥିର କରିନେଇ ଶୃଙ୍ଖଳିତ ତଥା ଏକାଗ୍ରଚିତ୍ତରେ ନିଜର କର୍ତ୍ତବ୍ୟପଥରେ ଅଗ୍ରସର ହେଲେ ଜୀବନର ସଫଳତା ଆସେ—ଯାହା ସହିତ ସମ୍ପର୍କ ରହିଛି ସମୟାନୁବର୍ତ୍ତିତାର ।

## କର୍ତ୍ତବ୍ୟବୋଧ

ମଣିଷ-ଜୀବନ କର୍ମଦ୍ୱାରା । କର୍ମଦ୍ୱାରା ମଣିଷ ଯୁଗ-ଯୁଗକୁ ବଞ୍ଚିରହେ । କବି ଗୋପବନ୍ଧୁ ଏହି 'କର୍ମବାଦ'ର ମହତ୍ତ୍ୱ ପ୍ରଚାର କରିବାକୁ ଯାଇ ଲେଖିଛନ୍ତି :

ମାନବ ଜୀବନ ନୁହଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଯିଏଁ ନର କର୍ମ ଏକା ତା'ର
ଜୀବନର ମାନଦଣ୍ଡ ।

ସୁକର୍ମ ମଣିଷକୁ ଯେଉଁଭଳି କାଳକାଳକୁ ଅମର କରି ରଖେ, କୁକର୍ମ ନିମନ୍ତେ ସେ ଠିକ୍ ସେଇଭଳି ନିନ୍ଦିତ ହୋଇଯାଏ । ଗାନ୍ଧୀ, ଗୋପବନ୍ଧୁଙ୍କୁ ଆମେ ଏବେ ମଧ୍ୟ ସ୍ମରଣ କରୁଛୁ କୃତଜ୍ଞତାର ସହିତ; କାରଣ ସେମାନେ ମାନବଜାତିର ଉଦ୍ଧରଣ ନିମନ୍ତେ କାର୍ଯ୍ୟ କରିଯାଇଥିଲେ । ନାଦିରଶାହ, ହିଟ୍ଲର୍ ପ୍ରଭୃତିଙ୍କ ନାମରେ ଆମର ନାସିକା ଘୃଣାରେ କୁଞ୍ଚିତ ହୋଇଯାଉଛି—କାରଣ ଏମାନେ ମାନବିକତାର ବିରୋଧୀ ଥିଲେ । କର୍ମ ତେଣୁ ହେଉଛି ଜୀବନର ପ୍ରତୀକ, କାରଣ ଗତିହିଁ ଜୀବନ । କର୍ମ ଆମକୁ ଗତିଶୀଳ କରାଏ । ଆମର ପୁରାଣ-ଶାସ୍ତ୍ରରେ ଏହି କର୍ମବାଦର ଭୂରି ଭୂରି ପ୍ରଶଂସାମାନ ବର୍ଣ୍ଣିତ କରାଯାଇଛି । ଏହିଭଳି 'ଭଗବଦ୍‌ଗୀତା' ସୁଦ୍ଧା କର୍ମକୁ ଯୋଗର ମର୍ଯ୍ୟାଦା ଦେଇ ଲେଖିଛନ୍ତି, "କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ ।" ଫଳହେତୁକ କର୍ମ ଅତ୍ୟନ୍ତ ନିକୃଷ୍ଟ ବିବେଚିତ ହେଉଥିଲା, ଯଦିଓ କର୍ମୀ ମାତ୍ରକେ ଫଳପ୍ରାପ୍ତିର କାମନାକୁ ବାଦ୍ ଦେଇ ପାରନ୍ତି ନାହିଁ । ନିଷ୍କାମ କର୍ମ ଯେତେ ପ୍ରଶଂସିତ ହେଲେ ମଧ୍ୟ ସାଧାରଣ-ଜୀବନରେ ଏହାର କୌଣସି ମର୍ଯ୍ୟାଦା ନାହିଁ ।

ଯାହାହେଉ, ଜନ୍ମ ହେବାର ପର ମୁହୂର୍ତ୍ତଠାରୁ ମାନବ କର୍ମରେ ଲିପ୍ତ ରହେ । ବୋଧ-ବୁଦ୍ଧି ଆସିବା ପର୍ଯ୍ୟନ୍ତ ତାହାର କର୍ମ ବ୍ୟବସ୍ଥିତ ହୋଇ ନ ଥାଏ । ବିଚାରଶକ୍ତି ଆସିଗଲା ପରେ ତାହାର କର୍ମ କ୍ରମଶଃ ଏକ ନିର୍ଦ୍ଦିଷ୍ଟ ମାର୍ଗ ଦେଇ ନିୟନ୍ତ୍ରିତ ହୁଏ ଏବଂ ଏହି କର୍ମହିଁ ହୁଏ ତାହାର ଏକମାତ୍ର ପରିଚୟ ।

ସାମାଜିକ ଜୀବନରେ ମଣିଷକୁ ପ୍ରତ୍ୟେକ ମୁହୂର୍ତ୍ତରେ ନାନାପ୍ରକାର କର୍ମରେ ଲିପ୍ତ ରହିବାକୁ ପଡ଼ିଥାଏ । ବିଚାର-ବୁଦ୍ଧି ଆସିଗଲା ପରେ, କ୍ରମଶଃ ତା' ଉପରେ ବହୁ ଗୁରୁ ଦାୟିତ୍ୱ ନ୍ୟସ୍ତ ହୁଏ । ପରିବାରପ୍ରତି, ସମାଜପ୍ରତି, ଜାତିପ୍ରତି, ଦେଶପ୍ରତି ତାହାର କର୍ତ୍ତବ୍ୟ ନିର୍ଦ୍ଦିଷ୍ଟ ହୋଇଯାଏ । ପରିବାର ଆଶାକରେ, ସେ ପାରିବାରିକ ଜୀବନରେ ଏକ ନିର୍ଦ୍ଦିଷ୍ଟ ଦାୟିତ୍ୱ ଗ୍ରହଣକରୁ, ଅନ୍ୟମାନଙ୍କ ସହ କାନ୍ଧକୁ କାନ୍ଧ ମିଶାଇ ସେମାନଙ୍କର ବୋଝ ହାଲୁକା କରୁ । ଅର୍ଥ ଉପାର୍ଜନ କରି, ସେବାକରି ସେ ନିଜର ପାରିବାରିକ ଦାୟିତ୍ୱ ତୁଲାଇପାରେ । ଏଥିପାଇଁ ଯଦି ତାକୁ ବ୍ୟକ୍ତିଗତ ଭାବରେ କଠିନ-ପରିଶ୍ରମ କରିବାକୁ ପଡ଼େ, କିମ୍ବା ଇଚ୍ଛା ବିରୁଦ୍ଧରେ କୌଣସି କାମ କରିବାକୁ ପଡ଼େ, ତଥାପି ସେ ତାହା କରିବାକୁ ବାଧ୍ୟ । ମନେ-ରଖିବାକୁ ହେବ ଯେ ଦସ୍ୟୁ ରତ୍ନାକର ଚୋରି ଡକାୟତି କରୁଥିଲା ପରିବାରର ଭରଣ-ପୋଷଣ ନିମନ୍ତେ । ଆମେ ଅବଶ୍ୟ ଏହିଭଳି ଏକ ଜୀବନର ପକ୍ଷପାତୀ ନୋହୁଁ । ଉଦାହରଣ ଭାବରେ ଏହା କହିବାର ଏକମାତ୍ର ଲକ୍ଷ୍ୟ ହେଉଛି, ଆମର ଦାୟିତ୍ୱ ସମ୍ପର୍କରେ ଚେତାବନୀ ଦେବା କିମ୍ବା କର୍ତ୍ତବ୍ୟବୋଧ ଜାଗ୍ରତ କରିବା । ବୀର ବାଳକ କାସାବିଏଙ୍କାର ନାମ ହୁଏତ ଅନେକେ ଶୁଣିଥିବେ । ଯୁଦ୍ଧ ସମୟରେ ଏକ ବିପଦଗ୍ରସ୍ତ ଜାହାଜ ମଧ୍ୟରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆରହିବାକୁ ତାକୁ ନିର୍ଦ୍ଦେଶ ଦିଆଯାଇଥିଲା । ମୃତ୍ୟୁ ବିଭୀଷିକାରେ ସେ ନିଜର

ଦାୟିତ୍ୱ ପାଳନ କରିଥିଲା । ଯାହା ତା'ର କର୍ତ୍ତବ୍ୟ, ବଞ୍ଚିଥିବା ପର୍ଯ୍ୟନ୍ତ ସେ ତହିଁରୁ ବିଚ୍ୟୁତ ହୋଇନାହିଁ । କିମ୍ବା ଶମ୍ବାଦ୍ ବାଳ ରାଉତ ବିଷୟ ଧରାଯାଇପାରେ । ବ୍ରିଟିଶ୍ ସୈନ୍ୟମାନଙ୍କୁ ନଦୀପାର ନକରିଦେବା ନିମନ୍ତେ ତା' ଉପରେ ପ୍ରଜାମଣ୍ଡଳର ଆଦେଶ ଥିଲା । ଶତ ଧମକଚମକ, ପ୍ରଲୋଭନ ତାକୁ ତାହାର କର୍ତ୍ତବ୍ୟରୁ ବିଚ୍ୟୁତ କରିପାରିନଥିଲା । ସେ ମୃତ୍ୟୁବରଣ କଲା, ମାତ୍ର ନିଜ ପଥରୁ ଆଦୌ ଟଳିଲାନାହିଁ । ଏହାହିଁ ତା'ର କର୍ତ୍ତବ୍ୟବୋଧ ।

ସମାଜ ପ୍ରତି ଆମର ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ରହିଛି; ଯଥା—ପ୍ରୟୋଜନରେ ଅନ୍ୟକୁ ସାହାଯ୍ୟ କରିବା, ଅନ୍ୟର ମତକୁ ସମ୍ମାନ ଦେବା, ଅନ୍ୟର କ୍ଷତି ଚିନ୍ତା ନ କରିବା ଏବଂ ସମସ୍ତଙ୍କ ସହିତ ମିଳିମିଶି ଚଳିବା । ଅନ୍ୟ ଆଡ଼କୁ ସାହାଯ୍ୟର ହାତ ବଢ଼ାଇଦେବା ହେଉଛି ମାନବିକତାର ଚୂଡ଼ାନ୍ତ ପ୍ରକାଶ । ଜୀବନ ବିନିମୟରେ ମହତ୍ ବ୍ୟକ୍ତିମାନେ ବିପନ୍ନକୁ ଉଦ୍ଧାର କରନ୍ତି ଏବଂ ନିଜର ବଚନ ରକ୍ଷା କରନ୍ତି । ତେଣୁ ହିନ୍ଦୀରେ ଗୋଟିଏ କଥା ଅଛି, "ପ୍ରାଣ୍ ଯାଏ ପର୍ ବଚନ୍ ନଯାଏ ।" ଅନେକେ ପୁରାଣର ଉଶୀନର ରାଜାଙ୍କର କାହାଣୀ ଶୁଣିଥିବେ । ବିପନ୍ନ କପୋତପକ୍ଷୀକୁ ରକ୍ଷା କରିବା ନିମନ୍ତେ ସେ ବିନାଦ୍ୱିଧାରେ ନିଜ ହସ୍ତରେ ଆପଣାର ଶରୀରରୁ ମାଂସ କାଟି କ୍ଷୁଧିତ ଛଞ୍ଚାଣକୁ ଅର୍ପଣ କରିଥିଲେ । ଏ ପ୍ରସଙ୍ଗରେ ନିଜ ପୁତ୍ରର ଶିର ଛେଦନ କରି ବ୍ରାହ୍ମଣକୁ ଅର୍ପଣକରିଥିବା କର୍ଣ୍ଣ କିମ୍ବା ନିଜ ଅସ୍ଥି ସ୍ୱଇଚ୍ଛାରେ ଦାନ କରିଥିବା ଦଧିଚି ପ୍ରଭୃତିଙ୍କ ନାମ ସ୍ମରଣ କରାଯାଇପାରେ ।

ଦେଶ ଏବଂ ଜାତି ପ୍ରତି ପ୍ରତ୍ୟେକ ମଣିଷର କର୍ତ୍ତବ୍ୟ ରହିଛି । ମାତୃଭୂମିର ଗୌରବ ପ୍ରଚାର ଏବଂ ରକ୍ଷା ତାହାର କର୍ତ୍ତବ୍ୟ ମଧ୍ୟରେ ପରିଗଣିତ ହୁଏ । ଦେଶର ସମ୍ମାନ ରକ୍ଷା କରିବା ନିମନ୍ତେ କିମ୍ବା ଦେଶ ଶତ୍ରୁ ହସ୍ତରେ ନିଗୃହୀତ ହେଉଥିବାବେଳେ ତହିଁରୁ ତାହାର ଉଦ୍ଧାର ନିମନ୍ତେ ପ୍ରଯତ୍ନକରିବା ପ୍ରତ୍ୟେକ ମାନବର ଧର୍ମ ।

ଅନେକ ସମୟରେ ମାନବ ସମ୍ମୁଖରେ ଏକାବେଳେ ବହୁ ପ୍ରୟୋଜନୀୟ କର୍ତ୍ତବ୍ୟ ଦେଖାଯାଏ । କାହାକୁ କରିବ, କାହାକୁ ଛାଡ଼ିବ, ଏ ସମ୍ପର୍କରେ ତା' ମନରେ ଦ୍ୱିଧା ଦେଖାଯାଏ । ଏହାକୁ କୁହାଯାଏ କର୍ତ୍ତବ୍ୟ-ବିରୋଧ । ଭଗବାନ ମଣିଷକୁ ବିଚାର-ବୁଦ୍ଧି ଦେଇଛନ୍ତି । ତାହାର ସାହାଯ୍ୟରେ ଉପଯୁକ୍ତ କର୍ତ୍ତବ୍ୟ ନିର୍ବାଚନ କରିବା ଦାୟିତ୍ୱ ହେଉଛି ସମ୍ପୂର୍ଣ୍ଣରୂପେ ତା' ନିଜର ।

ସମୟାନୁସାରୀ କର୍ତ୍ତବ୍ୟବୋଧ ଉଚ୍ଚ ମାନବିକତାର ପରିଚାୟକ । କ୍ଷେତରେ ପାଣିଥିବା ବେଳେହିଁ ହିଡ଼ ବାନ୍ଧି ପାଣି ସଞ୍ଚୟ କରିବାକୁ ହୁଏ । ପାଣି ବହିଗଲାପରେ ହିଡ଼ ବାନ୍ଧିବାର କୌଣସି ଅର୍ଥ ହୁଏନାହିଁ । ସେହିଭଳି ଯେଉଁ ସମୟରେ ଯେଉଁ କାମଟି କରାଯିବା କଥା, ଠିକ୍ ସେହି ସମୟରେ ତାହା ନକଲେ କର୍ମଟି ତାହାର ସମସ୍ତ ଗୁରୁତ୍ୱ ହରାଇଥାଏ ।

ପୂର୍ବରୁ କୁହାଯାଇଛି ଯେ, କର୍ତ୍ତବ୍ୟ ଦ୍ୱାରା ହିଁ ମଣିଷପଣିଆ ଚିହ୍ନାଯାଇଥାଏ । ସଫଳ ମଣିଷ ଜୀବନରେ ଏହି କର୍ତ୍ତବ୍ୟ-ବୋଧ ପ୍ରତି ଐକାନ୍ତିକ ନିଷ୍ଠାର ବହୁ ବିବରଣୀ ମିଳିବ ।

ଆମେମାନେ ବଉଲାଗାଈ କାହାଣୀଟି ଶୁଣିଛେ । ବଉଲାଗାଈ ବାଘ ନିକଟରେ ଅଙ୍ଗୀକାରବଦ୍ଧ ହୋଇ, ନିଜର ଏକମାତ୍ର କ୍ଷୁଧିତ ସନ୍ତାନକୁ ସ୍ତନ୍ୟପାନ କରାଇ ମାତାର କର୍ତ୍ତବ୍ୟ ପାଳନ କରିସାରିବାପରେ, ଆପେ ଆପେ ବାଘର ଆହାର ହେବା ନିମନ୍ତେ ଆସି ଉପସ୍ଥିତ ହୋଇଯାଇଥିଲା । ମାତ୍ର ଆଜି ଆମ ଜୀବନର ପ୍ରତ୍ୟେକ କ୍ଷେତ୍ରରେ କର୍ତ୍ତବ୍ୟ ପ୍ରତି ଉଦାସୀନତା ଏବଂ ଶୈଥିଳ୍ୟ ପରିଲକ୍ଷିତ ହୋଇଛି । ତେଣୁ ଭାରତର ମର୍ଯ୍ୟାଦା ବାହାରେ କ୍ଷୁଣ୍ଣ ହେଉଛି । ଅଚିରେ ଏହା ଦୂରୀଭୂତ ନହେଲେ ଭାରତର ଉନ୍ନତି ବାଧାପ୍ରାପ୍ତ ହେବ ।

## ପର୍ଯ୍ୟଟନ

ଦେଶ-ବିଦେଶ ପରିଭ୍ରମଣକୁ ପର୍ଯ୍ୟଟନ କୁହାଯାଇଥାଏ । ମଣିଷ ଗୋଟିଏ ସ୍ଥାନରେ ଜନ୍ମ ହୁଏ । ହୁଏତ ବିଦ୍ୟାଧ୍ୟୟନ ନିମନ୍ତେ ତାକୁ ଏକ ନୂତନ ସ୍ଥାନକୁ ଯିବାକୁ ହୁଏ; କର୍ମ ବ୍ୟପଦେଶରେ ନୂତନ ନୂତନ ସ୍ଥାନ ସହିତ ତାହାର ପରିଚୟ ହୁଏ; ତଥାପି ଜୀବନକାଳ ମଧ୍ୟରେ ବିଶାଳ ଏହି ପୃଥିବୀର କେତେ ଅଂଶ ଦେଖିବା ଜଣେ ମଣିଷ ପକ୍ଷରେ ସମ୍ଭବପର ହୋଇପାରେ ?

ଅଜଣାକୁ ଜାଣିବାକୁ, ଅଚିହ୍ନାକୁ ଚିହ୍ନିବାକୁ, ଦୂରକୁ ନିକଟ କରିବାକୁ, ପୁଣି ଅପରିଚିତ ସହିତ ପରିଚିତ ହେବାକୁ ମନୁଷ୍ୟ ସଦା ଉନ୍ମୁଖ ହୋଇ ରହିଥାଏ । କେବଳ ଏହି କାରଣରୁ ସେ ବାରମ୍ବାର ନିଜ ଜୀବନକୁ ବିପନ୍ନ କରି ଏଭରେଷ୍ଟ ଶୃଙ୍ଗ ଆରୋହଣ କରିବାକୁ ଧାଏଁ, ଚନ୍ଦ୍ରପୃଷ୍ଠରେ ନିଜର ପତାକା ପୋତିଦେଇ ଆସେ, ଦୁର୍ଗମ ମେରୁ ଅଞ୍ଚଳ ଆବିଷ୍କାର କରିବାକୁ ଯାଏ । କେଉଁଠି ତାକୁ ସଫଳତା ମିଳେ, କେଉଁଠି ଅବା ସେ ବିଫଳ ହୁଏ—ତଥାପି ସେ ଉଦ୍ୟମରୁ ବିରତ ହୁଏ ନାହିଁ ।

ଏହି ପ୍ରବୃତ୍ତିହିଁ ତାକୁ ନୂତନ ନୂତନ ଦେଶ ପର୍ଯ୍ୟଟନରେ ବହିର୍ଗତ କରାଏ । ନୂଆ ଦେଶ, ନୂଆ ସଂସ୍କୃତି, ନୂଆ ଜଳବାୟୁ ତା'ର ଜ୍ଞାନର ଦିଗନ୍ତକୁ ପ୍ରସାରିତ କରେ । ଭାଗବତ ବାଣୀ ହେଉଛି :

> "ଯେ ପକ୍ଷୀ ଉଡ଼େ ଯେତେ ଦୂର
> ସେ ଜାଣେ ତାହାର ବେଭାର ।"

ପରିଭ୍ରମଣ ଦ୍ୱାରା ଯେ ଯେତେ ନୂତନ ସ୍ଥାନ ଦେଖିଥାଏ, ତାହାର ଅଭିଜ୍ଞତା ଓ ଜ୍ଞାନ ସେତେ ବିସ୍ତୃତ ବୋଲି ସ୍ୱୀକାର କରିବାକୁ ହେବ । ତେଣୁ ତ କୁହାଯାଇଛି ଯେ,

ହକାରେ ପୁସ୍ତକ ପଠନ ଦ୍ୱାରା ଯେତେ ଜ୍ଞାନ ଅର୍ଜନ କରାଯାଇନପାରିବ, ଥରେ ମାତ୍ର ଗୋଟିଏ ସ୍ଥାନକୁ ଯାଇପାରିଲେ, ତତ୍ସମ୍ପର୍କୀୟ ଜ୍ଞାନ ନିଶ୍ଚୟ ଅଧିକ ହେବ । କୂପମଣ୍ଡୁକ ଭଳି ଜୀବନ ସାରା କେବଳ ଗୋଟିଏ ସ୍ଥାନରେ କଟାଇଦେଲେ, ଜ୍ଞାନ ଏବଂ ଅଭିଜ୍ଞତାର ପୂର୍ଣ୍ଣତା ଆସେ ନାହିଁ ।

ନୂଆ ନୂଆ ସ୍ଥାନ ଦେଖିଲେ, ନୂଆ ଲୋକଙ୍କ ସହିତ ପରିଚିତ ହେଲେ ଯେ କେବଳ ମଣିଷ ମନର ଅନନ୍ତ ଜିଜ୍ଞାସା ପ୍ରବୃତ୍ତିଟି ପରିତୃପ୍ତ ହୁଏ, ତାହା ନୁହେଁ, ଏହାଦ୍ୱାରା ଭାବର ଆଦାନପ୍ରଦାନ ଘଟେ, ପାରସ୍ପରିକ ବୁଝାମଣା ବୃଦ୍ଧି ପାଏ । ଅନ୍ୟଠୁ ଅନେକ ବିଷୟ ଶିଖିବାର, ନିଜର ଭୁଲ୍-ତ୍ରୁଟିକୁ ସୁଧାରିନେବାର ସୁଯୋଗ ସୃଷ୍ଟି ହୁଏ । ସେଥି ନିମନ୍ତେ ପର୍ଯ୍ୟଟନ ମାନବଜୀବନର ବିକାଶ ପର୍ଯ୍ୟାୟରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣକରିଥାଏ ।

କର୍ମମୟ ଜୀବନର ଅବସାଦ ଏବଂ କ୍ଳାନ୍ତି, ନୂତନ ସ୍ଥାନ ପରିଦର୍ଶନରେ ଅନେକଟା ଦୂର ହୋଇଯାଏ । ନିଜ ପରିବେଶରୁ ସାମୟିକ ଭାବରେ ଦୂରକୁ ଯାଇ ମଣିଷ ଏକାପ୍ରକାର ଜୀବନଯାପନର ବିରକ୍ତିକର ଅନୁଭୂତିରୁ ମୁକ୍ତ ହୁଏ । ଜୀବନରେ ତା'ର ବୈଚିତ୍ର୍ୟ ଆସେ, ଉତ୍ତେଜନା ଆସେ ଏବଂ ଏଥିରୁହିଁ ସୃଷ୍ଟିହୁଏ ତା'ର ନୂତନ କର୍ମପ୍ରବଣତା, କର୍ମ-ଜୀବନରେ ପ୍ରଚଣ୍ଡ ସ୍ଫୂର୍ତ୍ତି । ତେଣୁ କର୍ମବ୍ୟସ୍ତ ମାନବ ନିମନ୍ତେ ପରିଭ୍ରମଣ ଅପରିହାର୍ଯ୍ୟ ବୋଲି କୁହାଯାଇପାରେ ।

ପରିଭ୍ରମଣ ଶିକ୍ଷାର ଏକ ବିଶେଷ ଅଙ୍ଗ । ପୁସ୍ତକଗତ ଶିକ୍ଷା ଛାତ୍ରର ମାନସିକତା ଉପରେ ଯେତେ ସ୍ଥାୟୀ ଛାପ ପକାଇପାରେ ନାହିଁ, ପର୍ଯ୍ୟଟନ ଅନାୟାସରେ ଏହା କରିପାରେ । ତାଜମହଲ ବିଷୟ ପଢ଼ିବା ଏବଂ ନିଜ ଆଖିରେ ତାଜମହଲ ଦେଖିବା ଏକାକଥା ନୁହେଁ । ପୁସ୍ତକରୁ ପଢି ତାଜମହଲ ବିଷୟରେ ବର୍ଣ୍ଣନା କରିବାକୁ ହେଲେ, ଛାତ୍ରର କଳ୍ପନା-ଶକ୍ତି ଏବଂ ସ୍ମୃତିଶକ୍ତି ଉପରେ ଯେଉଁ ପ୍ରଚଣ୍ଡ ଚାପ ପଡ଼େ, ଆଖିରେ ଦେଖି ତାକୁ ବର୍ଣ୍ଣନା କଲି ସମୟରେ ତହିଁରୁ କାଣିଚାଏ ମଧ୍ୟ ହୁଏ ନାହିଁ । ତେଣୁ ଶିକ୍ଷା-ଜୀବନରେ ଏକ୍ସକର୍ସନ୍ ବା ଶିକ୍ଷାମୂଳକ ପରିଭ୍ରମଣର ବ୍ୟବସ୍ଥା ରହିଛି ।

ପ୍ରାଚୀନ କାଳରେ ଯେତେବେଳେ ରାସ୍ତାଘାଟ ନଥିଲା, ଯାନବାହନର ବିଶେଷ ସୁବିଧା ସୁଯୋଗ ନଥିଲା, ସେତେବେଳେ ଲୋକେ ପାଦରେ ଚାଲି ଚାଲି କମ୍ବା ଅଶ୍ୱ ହସ୍ତୀ ଆଦି ବାହନ ଓ ସବାରି, ପାଲିଙ୍କି ଯାନ ଦ୍ୱାରା ଦେଶପର୍ଯ୍ୟଟନ କରୁଥିଲେ । ଏଭଳି ଭ୍ରମଣରେ ବହୁ ବିପଦ ରହିଥିଲା । ହିଂସ୍ରଜନ୍ତୁପରିପୂର୍ଣ୍ଣ ଘନ ଅରଣ୍ୟ, ଚୋର ଡକାୟତ, ରୋଗବ୍ୟାଧି ଏଭଳି ପରିଭ୍ରମଣର ବାଧକ ସ୍ୱରୂପ ଥିଲା । ହୁଏତ ଏମାନଙ୍କ ମଧ୍ୟରୁ ଅନେକେ ଘରକୁ ବାହୁଡ଼ୁ ନଥିଲେ । ତେଣୁ ଏହିଭଳି ଯାତ୍ରାରେ ବାହାରୁଥିବାବେଳେ ପ୍ରାୟ ସମସ୍ତେ ନିଜର ସମସ୍ତ ସାଂସାରିକ ଦାୟିତ୍ୱ ସମାପ୍ତ କରି ଚିରଦିନ ଲାଗି ସମସ୍ତଙ୍କଠାରୁ

ବିଦାୟ ଗ୍ରହଣ କରି ବୁଲିଆସୁଥିଲେ । ଏହିଭଳି ମଧ୍ୟରେ ସେମାନଙ୍କୁ ବିଦାୟ ଦିଆଯାଉଥିଲା । କହିବା ବାହୁଲ୍ୟ ଯେ, ଏଭଳି ଦେଶ-ପର୍ଯ୍ୟଟନ ନୂତନ ଦେଶ ଦେଖି ଜ୍ଞାନ ଅର୍ଜନ କରିବା ନିମନ୍ତେ କରାଯାଉନଥିଲା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଆଧ୍ୟାତ୍ମିକ । ଦେବଦର୍ଶନ ଏବଂ ପାପକ୍ଷାଳନର ଏକ ମହତ୍ ଉଦ୍ଦେଶ୍ୟ ପୋଷଣ କରି ସେ କାଳରେ ଯାତ୍ରୀମାନେ ବାହାରିପଡୁଥିଲେ ।

ବର୍ତ୍ତମାନ ସେ ଅବସ୍ଥା ଆଉ ନାହିଁ । ବିଜ୍ଞାନର ଦ୍ରୁତ ଉନ୍ନତି ସମୟ ଏବଂ ସ୍ଥାନର ଦୂରତ୍ୱକୁ ଅନେକ କମାଇଦେଇଛି । ପୂର୍ବେ ଯେଉଁଠି ବଙ୍ଗ ଦେଶରୁ ଓଡ଼ିଶା ଆସିବାକୁ ମାସ ମାସ ସମୟ ଲାଗିଯାଉଥିଲା, ବର୍ତ୍ତମାନ ତାହା ମାତ୍ର କେଇ ଘଣ୍ଟାର ବ୍ୟାପାର । ତେଣୁ ଗମନାଗମନ ଅଧିକ ସୁଖକର ହୋଇଛି । ଯାନବାହନର ସୁଲଭତା ତଥା ପଥଘାଟର ସୁସାଧ୍ୟତା ଆଜିର ପର୍ଯ୍ୟଟନକୁ ଅନେକ ସହଜ ଏବଂ ସ୍ୱାଭାବିକ କରିଦେଇଛି । ଦୂରଭ୍ରମଣ ନିମନ୍ତେ ରେଳ, ଉଡ଼ାଜାହାଜ ଏବଂ ମୋଟର କମ୍ପାନୀଗୁଡ଼ିକ ରିହାତି ଦରରେ ଟିକେଟ୍ ଯୋଗାଇଦେଉଛନ୍ତି ଏବଂ ଛୁଟି ଉପଲକ୍ଷରେ କୌଣସି ଏକ ବିଶେଷ ସ୍ଥାନକୁ ଯିବା ନିମନ୍ତେ ସ୍ୱତନ୍ତ୍ର ବ୍ୟବସ୍ଥାମାନ ମଧ୍ୟ ଗ୍ରହଣ କରୁଛନ୍ତି । ପକେଟ୍‌ରେ କେବଳ ଚେକ୍ ବହି ଖଣ୍ଡିଏ ନେଇ ବାହାରିପଡ଼ିଲେ, କୌଣସି ଅସୁବିଧା ହେଉନାହିଁ । ପର୍ଯ୍ୟଟନ ବ୍ୟବସ୍ଥା ବର୍ତ୍ତମାନ ଏକ ଲାଭଜନକ ବ୍ୟବସାୟରେ ପରିଣତ ହୋଇଛି ।

ପ୍ରକୃତ ଦୃଷ୍ଟିରୁ ଓଡ଼ିଆମାନେ ନିତାନ୍ତ କୂପମଣ୍ଡୂକ ବୋଲି ଏକ ଅପବାଦ ରହିଛି । ଏମାନେ ସହଜରେ ଘରୁ ଗୋଡ଼ କାଢ଼ିବାକୁ ଚାହାନ୍ତି ନାହିଁ । ଅତୀତର ଓଡ଼ିଆମାନେ ଏକ ଦୁର୍ଦ୍ଧର୍ଷ ଜାତି ଥିଲେ । ରାଜ୍ୟବିସ୍ତାର ନିମନ୍ତେ, ବାଣିଜ୍ୟ-ବ୍ୟବସାୟ ନିମନ୍ତେ ଏମାନଙ୍କୁ ପ୍ରାୟ ଦୂର ଦେଶକୁ ଯିବାକୁ ପଡ଼ୁଥିଲା । ଆଜି ସୁଦୂର ବାଲି, ସୁମାତ୍ରା, ଯାଭା ପ୍ରଭୃତି ଦେଶରେ ଓଡ଼ିଆ ସଂସ୍କୃତିର ଧ୍ୱଂସାବଶେଷ ଦେଖିଲେ ଅତୀତ ଓଡ଼ିଆଙ୍କର ଭ୍ରମଣ-ବିଳାସର ସ୍ମୃତି ମନକୁ ଆସେ । ଏବେ ଅବଶ୍ୟ ଅବସ୍ଥାର ଦ୍ରୁତ ପରିବର୍ତ୍ତନ ହେଉଛି । ଓଡ଼ିଆମାନେ ଅବସାଦ କଟାଇ ପୁଣି ବହିର୍ମୁଖୀ ଜୀବନ ନିମନ୍ତେ ପ୍ରସ୍ତୁତ ହୋଇଗଲେଣି । ଦେଶ-ବିଦେଶରେ ଏବେ ସେମାନଙ୍କ ସଂଖ୍ୟା ଦ୍ରୁତଗତିରେ ବୃଦ୍ଧିପାଉଛି । ଜ୍ଞାନରାଜ୍ୟର ଅନୁଦ୍‌ଘାଟିତ ଦିଗନ୍ତକୁ ଉଦ୍‌ଘାଟନ କରିବା ନିମନ୍ତେ ସେମାନେ ଆଜି ବଦ୍ଧପରିକର । ସେମାନଙ୍କର ଏହି ଉଦ୍ୟମ ସଫଳ ହେଉ ।

# ପରୋପକାରିତା

ଶାସ୍ତ୍ର କହିଛି, "ପରୋପକାରସ୍ୟ ସ୍ୱର୍ଗାୟ, ପାପାୟ ପରପୀଡ଼ନମ୍ ।" ପରୋପକାର ପ୍ରବୃତ୍ତି ମାନବକୁ ବିଶ୍ୱସ୍ରଷ୍ଟାଙ୍କର ଅପୂର୍ବ ଦାନ । ମଣିଷ ଜୀବନ ନଶ୍ୱର—ଅଳ୍ପ ଦିନ ପାଇଁ ସେ ପୃଥିବୀକୁ ଆସେ; ପୁଣି ବାହୁଡ଼ିଯାଏ । ଧନ, ମାନ, ପ୍ରତିପତ୍ତି, ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ, କିଛିହିଁ ଚିରସ୍ଥାୟୀ ନୁହେଁ । ଇନ୍ଦ୍ରଧନୁର ବର୍ଣ୍ଣାଢ୍ୟ ସୌନ୍ଦର୍ଯ୍ୟ ଭଳି ସେମାନେ ଆସନ୍ତି ଏବଂ ପୁଣି ଫେରିଯାଆନ୍ତି । ମଣିଷ ମରିଯାଏ; ମାତ୍ର କାଳକାଳକୁ ତା'ର ସ୍ମୃତି ରହିଯାଏ । ଅନ୍ତତଃ ପୃଥିବୀରେ ଏକ ସ୍ଥାୟୀ ପଦଚିହ୍ନ ରଖିଯିବାର ସୁଯୋଗ ସେ ନିଜର ଜୀବନକାଳ ମଧ୍ୟରେ ପାଇଥାଏ । ହିଂସା, ଦ୍ୱେଷ, ପରପୀଡ଼ନ, ଲୋଭ, ମୋହ ଇତ୍ୟାଦି ତା'ର ଜୀବନକୁ କଳୁଷିତ କରିଦିଏ । ପୃଥିବୀରେ ଯଶୋଧର୍ମୀ ହିଁ କାଳକାଳକୁ ବଞ୍ଚିରହେ ।

ଅଧିକାରବୋଧ ମଣିଷର ଏକ ସହଜାତ ପ୍ରବୃତ୍ତି । ଅନ୍ୟ ଉପରେ ଆଧିପତ୍ୟ ବିସ୍ତାର କରିପାରିଲେ ତା'ର ଅହଂକାର ତୃପ୍ତ ହୁଏ । ଏହାରି ଦ୍ୱାରା ତା'ର ମାନ ବର୍ଦ୍ଧିତ ହୁଏ ବୋଲି ସେ ଧାରଣା କରେ । ତେଣୁ କଳେ ବଳେ କୌଶଳେ ସେ ଅନ୍ୟଙ୍କୁ ନିଜ ଅଧିକାରରେ ରଖିବାକୁ ଚାହେଁ । ପୂର୍ବକାଳରେ ରାଜା, ମହାରାଜା ଏବଂ ସାମନ୍ତମାନେ ଯେ ରାଜ୍ୟ ବିସ୍ତାର କରିବାକୁ ଚାହୁଁଥିଲେ, ରକ୍ତର ପ୍ଲାବନ ସୃଷ୍ଟିକରି ନିଜର ଅହଂବୋଧକୁ ତୃପ୍ତି ଦେଉଥିଲେ, ତାହାର କାରଣ ମଧ୍ୟ ଏଇଆ । ପୃଥିବୀରେ ଯାହା ସୁନ୍ଦର, ଯାହା ଆକର୍ଷଣୀୟ ତାକୁ ସବୁ ନିଜ ପାଖରେ ରଖିବାକୁ ଚାହୁଁଥିଲେ । ବିଶ୍ୱଜନତାର ଆଶ୍ଚର୍ଯ୍ୟ ସମ୍ଭ୍ରମ ଦୃଷ୍ଟି ତାଙ୍କ ଉପରେ ପଡ଼ୁ, ଏହାହିଁ ସେମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । କୁହାଯାଏ ଯେ, ଅଶୋକ କଳିଙ୍ଗମହିଷୀ କାରୁବାକୀଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ବିଷୟ ଶୁଣି ତାଙ୍କୁ ପାଇବା ପାଇଁ କଳିଙ୍ଗ ସହିତ ଯୁଦ୍ଧ କରିଥିଲେ । ଲକ୍ଷ ଲକ୍ଷ ଲୋକ ମୃତାହତ ହେଲେ । ଲକ୍ଷ ଲକ୍ଷ ଲୋକ ବନ୍ଦୀ ହେଲେ । ଇତିହାସରେ ଏକ କଳଙ୍କିତ ଅଧ୍ୟାୟ ସୃଷ୍ଟି ହେଲା । ମାତ୍ର ଯେଉଁ ଅଶୋକଙ୍କୁ ଆଜି ଆମେ ସ୍ମରଣ କରୁଛୁ, ସେ ରକ୍ତପିପାସୁ ଏଇ ଅଶୋକ ନୁହନ୍ତି । ପ୍ରେମ-ଧର୍ମର ପ୍ରଚାର କରିଥିବା ଯେଉଁ ବ୍ୟକ୍ତି ନିପୀଡ଼ିତ ଲୋକଙ୍କ ଆଖିରୁ ଲୁହ ପୋଛିଦେବାପାଇଁ ନଗ୍ନ ପାଦରେ ରାସ୍ତାକୁ ଓହ୍ଲାଇଆସିଥିଲେ, ସେ ହିଁ ଆମର ନମସ୍ୟ ହୋଇରହିଛନ୍ତି । ନାଦିରଶାହ, ତୈମୁରଲଙ୍ଗ, ହିଟ୍‌ଲର୍, ମୁସୋଲିନୀ ପ୍ରଭୃତି ଯେଉଁମାନେ ନରରକ୍ତରେ ହୋରି ଖେଳିବାର ଆୟୋଜନ କରିଥିଲେ, ସେମାନେ ଆଜି ଇତିହାସର ଶୁଷ୍କ ନିର୍ଜୀବ ପୃଷ୍ଠା ମଧ୍ୟରେ ଆବଦ୍ଧ । ବୁଦ୍ଧ, ଚୈତନ୍ୟ, ନାନକ, ଗାନ୍ଧୀ, ଗୋପବନ୍ଧୁ ପ୍ରମୁଖ ଯେଉଁମାନେ ପୀଡ଼ିତ ମାନବଜାତିର ଆଖିରୁ ଅଶ୍ରୁ ପୋଛିଦେବା ପାଇଁ ନିଜକୁ ଉତ୍ସର୍ଗ କରିଦେଇଥିଲେ, ସେମାନଙ୍କୁ ଆମେ ଆଜି ମଧ୍ୟ ସ୍ମୃତିର ମଣିମୟ କୋଠରୀରେ ସମ୍ମାନର ସହିତ ସୁସଜ୍ଜିତ ଆସନରେ ବସାଇଛୁ ।

ଏହା ଧ୍ରୁବ ସତ୍ୟ ଯେ, ସ୍ୱାର୍ଥପରତାରୁ ବିମୁକ୍ତ ହୋଇ ଅନ୍ୟ ନିମନ୍ତେ ଯେ କିଛି କରିଥାଏ, ସେ ହିଁ ହୁଏ ସ୍ମରଣୀୟ । ତା'ର ସ୍ମୃତି ବିଶ୍ୱଜନତାର ହୃଦୟରେ ଏକ କମନୀୟ ସ୍ଥାନ କାଳ-କାଳକୁ ରହିଯାଏ । ଅନିତ୍ୟ ଶରୀର ସାହାଯ୍ୟରେ ଯଦି ସ୍ଥାୟୀ କିଛି କରିଯାଇ ପାରିବ, ତେବେ ଆମେ ତାହା ସର୍ବଦା କରିବା ଉଚିତ ବୋଲି ଶାସ୍ତ୍ରକାରମାନେ ବାରମ୍ବାର କହିଯାଇଛନ୍ତି । ଶାସ୍ତ୍ର ଆହୁରି କହୁଛି :

"ଅୟଂ ନିଜ ପରୋବେତି
ଗଣନା ଲଘୁଚେତସାମ୍,
ଉଦାର ଚରିତାନା' ତୁ
ବସୁଧୈବ କୁଟୁମ୍ବକମ୍ ।"

ନିଜ ପର ଗଣନା ନିତାନ୍ତ ସଙ୍କୀର୍ଣ୍ଣତାର ପରିଚାୟକ । ଯେ ଉଦାରଚେତା, ଯେ ହୃଦୟବାନ୍, ସେ ସମଗ୍ର ପୃଥିବୀକୁ ହିଁ ନିଜର ପରିବାର ରୂପରେ ଗ୍ରହଣକରିନେଇଥାଏ; ସାଧ୍ୟମତେ ନିଜକୁ ଅନ୍ୟର ଉପକାରରେ ଲଗାଇଥାଏ ।

ଜୀବନ ଆମର ଦୁଃଖପୂର୍ଣ୍ଣ । ଅନ୍ୟର ସମବେଦନା, ସମୟୋଚିତ ସାହାଯ୍ୟ ଏହି ଦୁଃଖର ଗୁରୁତ୍ୱକୁ ହ୍ରାସ କରିଦେଇଥାଏ । ସମାଜରେ ବାସକରି, ସ୍ୱାର୍ଥପର ଭାବରେ ନିଜର ସୁଖ-ଦୁଃଖକୁ ନେଇ ବ୍ୟସ୍ତ ରହିବା ଚରମ ହୀନମନ୍ୟତାର ପରିଚାୟକ । ତେଣୁ ଯୀଶୁଖ୍ରୀଷ୍ଟ ସର୍ବଦା ପଡ଼ୋଶୀଙ୍କୁ ସ୍ନେହ କରିବା ନିମନ୍ତେ ଉପଦେଶ ଦେଉଥିଲେ । ମହାପୁରୁଷମାନେ ନିଜ ଜୀବନ ବଦଳରେ ଅନ୍ୟର ଉପକାର କରିବାକୁ ନିତାନ୍ତ ଶ୍ଳାଘ୍ୟ ମନେକରୁଥିଲେ । ଅନ୍ଧ କବି ଭୀମଭୋଇ କାମନା କରିଥିଲେ : "ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।" ଦାନବୀର ମୁନୀନ୍ଦ୍ର ଦଧୀଚିଙ୍କ ବିଷୟ ବା କାହାକୁ ଜଣାନାହିଁ ? ଦେବତାଙ୍କ କାର୍ଯ୍ୟ ନିମନ୍ତେ, ପୃଥିବୀବକ୍ଷରୁ ପାପଭାର ଦୂର କରିବାକୁ ସେ ବଜ୍ରାଦ୍ରିଧାରେ ନିଜର ଅସ୍ଥି ଦାନ କରିଦେଇଥିଲେ । ତେଣୁ ସେମାନେ ଆଜି ସ୍ମରଣୀୟ ହୋଇ ରହିଛନ୍ତି ।

ସଙ୍କୀର୍ଣ୍ଣ-ସ୍ୱାର୍ଥ ଚିନ୍ତା ଛାଡ଼ି ଅନ୍ୟପାଇଁ କିଛି କରିପାରିଲେ ହୃଦୟ ଏକ ବିମଳ ଆନନ୍ଦରେ ପରିପୂର୍ଣ୍ଣ ହୁଏ । ଧୂପ-ଦୀପର ଆଡ଼ମ୍ବର, ନୈବେଦ୍ୟର ଉପଚାରରେ ଦେବତାଙ୍କୁ ସନ୍ତୁଷ୍ଟ କରି ଆତ୍ମସନ୍ତୋଷ ଲାଭ କରିବା ଅପେକ୍ଷା ଗୋଟିଏ ଦୁସ୍ଥ ବ୍ୟକ୍ତିକୁ ସାମାନ୍ୟ ଭାବରେ ସାହାଯ୍ୟ କରିପାରିଲେ, ସେଥିରେ ଅଧିକ କୃତିତ୍ୱ ଥାଏ । ପୀଡ଼ିତ ଜନତା ମଧ୍ୟରେ ସ୍ୱୟଂ ଈଶ୍ୱର ମାନବିକତାର ଅମୃତ ସ୍ପର୍ଶ ଲାଭ କରିବା ନିମନ୍ତେ ବ୍ୟାକୁଳ ହୋଇ ରହିଥାଆନ୍ତି । ତେଣୁ କୁହାଯାଏ ଯେ, 'Service to mankind is service to God.—ଏହା ଉକ୍ତି ମାତ୍ର ଅତିରଞ୍ଜିତ ନୁହେଁ । ଏହାହିଁ ପ୍ରତ୍ୟେକ ଜୀବନର ଧ୍ୟେୟ ହେବା ଉଚିତ । ଏହିକି କରିପାରିଲେହିଁ ପୃଥିବୀକୁ ସ୍ୱର୍ଗ ଓହ୍ଲାଇ ଆସିବ । କାଳିଦାସଙ୍କ ସମ୍ପର୍କୀୟ ଏକ କାହାଣୀ

ସମସ୍ତେ ଶୁଣିଥିବେ । କାଳିଦାସ ଏକଦା ଏକ ନିରକ୍ଷର ବୃଦ୍ଧାର ଅତିଥି ହୋଇ ରହିଥିବା ସମୟରେ ରାସ୍ତାରେ ଏକ ମୃତବ୍ୟକ୍ତିର ଶବଯାତ୍ରାକୁ ଲକ୍ଷକରି ବୃଦ୍ଧା ତା'ର ଦାସକୁ ମୃତବ୍ୟକ୍ତି ସ୍ୱର୍ଗ କିମ୍ବା ନର୍କକୁ ଗଲା, ଏହା ବୁଝି ଆସିବା ନିମନ୍ତେ କହିଲା । କାଳିଦାସ ଆଶ୍ଚର୍ଯ୍ୟ ହେଲେ । ସେ ଏହାର କାରଣ ଜିଜ୍ଞାସା କରନ୍ତେ, ଈଷତ୍ ହସି ବୃଦ୍ଧା କହିଥିଲା, "ଏତିକି ଜାଣିପାରିଲ ନାହିଁ ପଣ୍ଡିତେ ? ଯିଏ ମଲା ପରେ ସମସ୍ତେ ହାହାକାର କରନ୍ତି, ସେ ତ ଜାଣି ସ୍ୱର୍ଗକୁ ଗଲା । ଆଉ ଯାହାର ମୃତ୍ୟୁରେ ସମସ୍ତେ ଆଶ୍ୱସ୍ତି ଅନୁଭବ କରନ୍ତି, ଜାଣିଥିବ, ନିଶ୍ଚିତ ଭାବରେ ତାହାର ନର୍କଗତି ହେଲା ।" କର୍ମ ଆଉ ବ୍ୟବହାରହିଁ ମଣିଷକୁ ମଣିଷ ନିକଟରେ ଆଦୃତ କିମ୍ବା ଅନାଦୃତ କରାଇଥାଏ ।

ପରୋପକାରକୁ ଆମ ପରମ୍ପରାରେ ଅତ୍ୟନ୍ତ ଉଚ୍ଚ ସ୍ଥାନ ଦିଆଯାଇଛି । ସାଧୁସନ୍ଥମାନେ ନିଜ ଜୀବନଦାନରେ ଅନ୍ୟର ଉପକାର କରିଯାଇଛନ୍ତି । ମୁନିଋଷିମାନେ ବ୍ୟକ୍ତିଗତ ସୁଖ-ସ୍ୱାଚ୍ଛନ୍ଦ୍ୟ ଭୁଲି ଅରଣ୍ୟରେ ତପସ୍ୟା କରୁଥିଲେ, ଯଜ୍ଞ କରୁଥିଲେ । ଏହା ପଛରେ ସ୍ୱାର୍ଥଚିନ୍ତା ଅପେକ୍ଷା ମାନବସମାଜର ସାମୂହିକ ମଙ୍ଗଳଚିନ୍ତାହିଁ ଅଧିକ ରହିଥିଲା । ବ୍ୟକ୍ତିଗତ ସୁଖ-ସ୍ୱାଚ୍ଛନ୍ଦ୍ୟକୁ ଭୁଲିଯାଇ ଆଜି ଯେ ମଦର୍ ଟେରେସା ପୀଡ଼ିତ ଜନତାର ଦୁଃଖ ଲାଘବ କରିବା ନିମନ୍ତେ ଏ ବୟସରେ ସୁଦ୍ଧା ପଥେ ପଥେ ଘୂରି ବୁଲୁଛନ୍ତି, ତା' ମୂଳରେ ରହିଛି ସେ ପରୋପକାର ଚିନ୍ତା । ଆବାଲ୍ୟରୁ ମନୁଷ୍ୟକୁ ଏହି ଚିନ୍ତା ସହିତ ପରିଚିତ କରାଇଲେ, ନିଜ ପରିବେଶରେ ପ୍ରତ୍ୟେକେ ସାଧ୍ୟମତେ ଅନ୍ୟର ଉପକାର କରିପାରିଲେ, ପୃଥିବୀର ରୂପ ବଦଳିଯିବ; ଧରା ସ୍ୱର୍ଗରେ ପରିଣତ ହେବ । ସେତେବେଳେ ପତିତ ଉଦ୍ଧାର ନିମନ୍ତେ ଆଉ କୌଣସି ଅବତାରର ସୃଷ୍ଟି କାମନା କରାଯିବ ନାହିଁ । ସେବା ମନୋବୃତ୍ତି ଏହି ମନୁଷ୍ୟକୁହିଁ ଦେବତାରେ ପରିଣତ କରିବ ।

## ସମାଜସେବା

ମଣିଷ ଏକ ସାମାଜିକ ଜୀବ; ନିଶ୍ଚୟ ସମାଜକୁ ଛାଡ଼ି ସେ ରହିପାରିବ ନାହିଁ । ସମାନ ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ ନେଇ ସେ ସମାଜ ଗଢ଼େ, ଗୋଟିଏ ସ୍ଥାନରେ ବସବାସ କରି ରହେ । ଯେଉଁଠି ଲକ୍ଷ୍ୟର ଏହି ନିର୍ଦ୍ଦିଷ୍ଟତା ନଥାଏ, ସେଠି ଜନତାକୁ ସମାଜ ଆଖ୍ୟା ଦିଆଯାଇ ପାରିବ ନାହିଁ । ତାହା ହୁଏତ ଗୋଟାଏ 'ସମାବେଶ' ମାତ୍ର ହେବ । ଯେଉଁ ପର୍ଯ୍ୟନ୍ତ ବ୍ୟକ୍ତି ସମାଜ-ସତ୍ତା ସହିତ ପୂର୍ଣ୍ଣରୂପରେ ମିଳିତ, ସେ ପର୍ଯ୍ୟନ୍ତ ସମାଜର ସ୍ୱତନ୍ତ୍ର ସତ୍ତା ଜାଗ୍ରତ । ସ୍ୱତନ୍ତ୍ର ଲକ୍ଷ୍ୟ ନେଇ ବ୍ୟକ୍ତି ଯଦି ଏଥିରୁ ନିଜକୁ ଦୂରେଇନିଏ; ତେବେ ସମାଜର

ସୃଷ୍ଟି ହୋଇପାରିବ କିପରି ? ବିନ୍ଦୁ ବିନ୍ଦୁ ଜଳର ସମଷ୍ଟି ସାଗର ସୃଷ୍ଟି କରେ । ବିନ୍ଦୁର ସାମୂହିକତାହିଁ ସିନ୍ଧୁର ସ୍ରଷ୍ଟା । ଜଳ ନଥିଲେ ଜଳଧିର କଳ୍ପନା କେଉଁଭଳି ହେବ ? ବ୍ୟକ୍ତିର ସମଷ୍ଟିହିଁ ସମାଜ । ତେଣୁ ବ୍ୟକ୍ତିକୁ ସମାଜର ଅପରିହାର୍ଯ୍ୟ ଅଙ୍ଗ କୁହାଯାଇପାରେ । ସମାଜ ବ୍ୟକ୍ତିକୁ ଦିଏ ନିରାପତ୍ତା । ଅନ୍ନ, ବସ୍ତ୍ର, ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦିର ବ୍ୟବସ୍ଥା ସମାଜହିଁ କରିଥାଏ । ତେଣୁ ସମାଜକୁ ଗୁରୁ ମଣିବାରେ ଦ୍ୱିଧା ନାହିଁ ।

ସ୍ୱେଚ୍ଛାଚାରିତା ତଥା ବ୍ୟକ୍ତିପ୍ରାଧାନ୍ୟକୁ ନିୟନ୍ତ୍ରିତ କରି ରଖିବା ନିମନ୍ତେ ହିଁ ଆମର ପୂର୍ବପୁରୁଷମାନେ ସମାଜର ପରିକଳ୍ପନା କରିଥିଲେ । ପ୍ରାଚୀନ କାଳରେ 'ଶକ୍ତି' ହିଁ ଅଧିକ ପ୍ରାଧାନ୍ୟ ଲାଭକରୁଥିଲା । ଯାହାର ବଳ ଅଧିକ ହେଉଥିଲା ସେ ଅନ୍ୟମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ଯାଉଥିଲା । ଶକ୍ତିର ପ୍ରାଧାନ୍ୟ ଦୁର୍ବଳମାନଙ୍କ ନିମନ୍ତେ ନିତାନ୍ତ ଆତଙ୍କର କାରଣ ହୋଇ ରହିଥିଲା । ଏହିଭଳି 'ମାତ୍ସ୍ୟନ୍ୟାୟ'ର କବଳରୁ ମାନବଜାତିକୁ ରକ୍ଷା କରିବା ନିମନ୍ତେ ତତ୍କାଳୀନ ମନୀଷୀବୃନ୍ଦ ଉପାୟ ଚିନ୍ତା କଲେ । ସମାଜ ଏହି ଚିନ୍ତାର ଅମୃତମୟ ଫଳ । ଭାରତୀୟ ସମାଜର ନୀତିନିୟମ ଇତ୍ୟାଦି ସର୍ବପ୍ରଥମ ଆଚାର୍ଯ୍ୟ ମନୁଙ୍କଦ୍ୱାରା ସ୍ଥିରୀକୃତ ହେଲା ।

ସମାଜରେ ମୂଳ ଲକ୍ଷ୍ୟ ହେଲା ବ୍ୟକ୍ତି-ଅଧିକାରର ସୁରକ୍ଷା । ତେଣୁ ଶାସନ ନାମରେ ଯେଉଁଠାରେ ଏହାକୁ ନିୟନ୍ତ୍ରଣ କରିବା ନିମନ୍ତେ ଉଦ୍ୟମ କରାଯାଏ, ସେଠାରେ ସମାଜର ଲକ୍ଷ୍ୟ ବ୍ୟର୍ଥ ହୋଇଯାଏ ।

ସମାଜରେ ସାର୍ଥକ ଭାବରେ ଜୀବନ କଟାଇବାକୁ ହେଲେ, ପରସ୍ପର ପ୍ରତି ସ୍ନେହ, ସହାନୁଭୂତି, ସମବେଦନା ଇତ୍ୟାଦି ଦେଖାଇବା ଆବଶ୍ୟକ । ସମାଜରେ ରହି ସମାଜପ୍ରତି ସେବା-ମନୋଭାବ ପୋଷଣ କରିବାରେହିଁ ଜୀବନର ସାର୍ଥକତା । ସମସ୍ତଙ୍କ ହିତ ପାଇଁ ନିଜ ଇଚ୍ଛାରେ କିଛି କାମ କରିଯିବାହିଁ ସମାଜସେବା । ପରୋପକାର ପ୍ରବୃତ୍ତିରୁ ଏହାର ସୃଷ୍ଟି । ଯେଉଁମାନେ ନିପୀଡ଼ିତ, ଲାଞ୍ଛିତ, ନିର୍ଗୁଣ କିମ୍ବା କୌଣସି କାରଣରୁ ଅନଗ୍ରସର ହୋଇ ଦୟନୀୟ ଜୀବନ ଯାପନ କରୁଛନ୍ତି, ଯଥାଶକ୍ତି ସେମାନଙ୍କର ସହାୟତା କରିବାହିଁ ସମାଜସେବାର ଲକ୍ଷ୍ୟ । ସେମାନଙ୍କର ସେବାରେ ହିଁ ସମାଜ-ଜୀବନର ଉନ୍ନତି । ଯେଉଁଠି ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ସମାନ ସୁବିଧା-ସୁଯୋଗ ରହିଛି, ତାହାହିଁ ଉନ୍ନତ ସମାଜ ବୋଲି କୁହାଯାଇପାରେ ।

ଶକ୍ତି ଅନୁରୂପ ସମାଜସେବା ବିଧେୟ । କୃଷକ ଫସଲ ଅମଳ କରି, ତନ୍ତୀ ବସ୍ତ୍ର ବୁଣି, ଶିକ୍ଷକ ଶିକ୍ଷା ଦେଇ, ଚିକିତ୍ସକ ରୋଗ ନିବାରଣ କରି, ନିଜ ନିଜ ଉପାୟରେ କିଛି ନା କିଛି ସମାଜସେବାହିଁ କରିଥାଆନ୍ତି । ଅବଶ୍ୟ ଏହାଦ୍ୱାରା ସେମାନେ ଅର୍ଥ ସଂଗ୍ରହ କରୁଥିବାରୁ ଏହାକୁ ସମ୍ପୂର୍ଣ୍ଣରୂପେ ସମାଜସେବା କୁହାଯାଇପାରିବ ନାହିଁ, କାରଣ ଏଥିରେ ସ୍ୱାର୍ଥବୁଦ୍ଧି-ହିଁ ପ୍ରାଧାନ୍ୟ ଲାଭକରିଥାଏ; ସେବା-ମନୋବୃତ୍ତି ଗୌଣ ହୋଇଯାଏ । ମାତ୍ର ସେବା

ଭାବରେ ଏହାର ଠିକ୍ ବିପରୀତ ବୃତ୍ତିଟି ହିଁ କାର୍ଯ୍ୟକାରୀ ହୋଇଥାଏ । ପରାର୍ଥପରତା ଏଠାରେ ମୁଖ୍ୟ ସ୍ଥାନ ଅଧିକାର କରେ । ଶ୍ରେଷ୍ଠ ପ୍ରକୃତ ସମାଜସେବା କହିଲେ ଯେଉଁଠି ଅନ୍ୟ ନିମନ୍ତେ ସ୍ୱାର୍ଥହୀନ ଏବଂ କାମନାହୀନ ସେବା କରାଯାଏ—ତାକୁହିଁ ବୁଝାଏ । ପ୍ରାଚୀନ ଭାରତୀୟ ମୁନିଋଷିଙ୍କର ଜୀବନ ପ୍ରକୃତ ସମାଜସେବାର ଆଦର୍ଶ ଉଦାହରଣ । ସେମାନେ ଅନ୍ୟକୁ ଜ୍ଞାନଦାନ କରୁଥିଲେ; ମାତ୍ର ସେମାନଙ୍କର କୌଣସି ଅର୍ଥଲାଳସା ନଥିଲା ।

ଆଶା କରାଯାଏ କି, ଅନୁନ୍ନତ ସମାଜଜୀବନର ସାମୂହିକ ଉନ୍ନତି ନିମନ୍ତେ ସମସ୍ତଙ୍କର କିଛି ନା କିଛି କରିବା ଆବଶ୍ୟକ । ଯେଉଁମାନେ ପ୍ରକୃତରେ କିଛି ଦୂର ଆଗେଇଯାଇ-ପାରିଛନ୍ତି, ପଛରେ ରହିଯାଇଥିବା ଅନ୍ୟମାନଙ୍କୁ ଆଗକୁ ନେବା ହେଉଛି ପ୍ରକୃତରେ ସେମାନଙ୍କର ଦାୟିତ୍ୱ । ଏ କ୍ଷେତ୍ରରେ ଚିକିତ୍ସକ, ଅଧ୍ୟାପକ, ଓକିଲ, ବ୍ୟବସାୟୀ ସମସ୍ତେ ମିଳିତଭାବରେ କାର୍ଯ୍ୟ କଲେ, ଅନୁନ୍ନତ ସମ୍ପ୍ରଦାୟକୁ ଉପରକୁ ଉଠାଇବା ନିମନ୍ତେ ଶକ୍ତି ଅନୁରୂପ ଉଦ୍ୟମ କଲେ, ସମାଜଜୀବନର ପ୍ରଭୂତ ଉନ୍ନତି ସାଧିତ ହେବ । ମନରେ ଏକ ଦୃଢ଼ ବିଶ୍ୱାସ ସର୍ବଦା ରହିବା ଆବଶ୍ୟକ ଯେ, ଅନଗ୍ରସର ଗୋଷ୍ଠୀ ଉନ୍ନତ ଗୋଷ୍ଠୀ ଭଳି ସମାଜର ଏକ ଅପରିହାର୍ଯ୍ୟ ଅଙ୍ଗ । ସେମାନଙ୍କ ଉନ୍ନତି ବିନା ସମାଜଜୀବନର ପୂର୍ଣ୍ଣ ବିକାଶ ସମ୍ଭବପର ନୁହେଁ । ଶରୀରର ଗୋଟିଏ ଅଂଶ ରୁଗ୍ଣ ହୋଇପଡ଼ିଲେ, ଶରୀର ଅସୁସ୍ଥ ହୋଇପଡ଼େ । ସମାଜକ୍ଷେତ୍ରରେ ମଧ୍ୟ ତାହାହିଁ ହୋଇଥାଏ । ବେଦର 'ପୁରୁଷସୂକ୍ତ' ଏହି ସମାଜକୁ ଏକ 'ଶରୀର' ରୂପରେ ପରିକଳ୍ପନା କରି କ୍ଷତ୍ରିୟମାନଙ୍କୁ ଏହାର ବାହୁ, ବ୍ରାହ୍ମଣମାନଙ୍କୁ ଏହାର ମୁଖ, ବୈଶ୍ୟମାନଙ୍କୁ ଏହାର ଜଙ୍ଘ ଏବଂ ଶୂଦ୍ରମାନଙ୍କୁ ଏହାର ପାଦ ରୂପରେ ବର୍ଣ୍ଣନା କରିଛି ।

ଦେଶର ପ୍ରତ୍ୟେକ ଅଞ୍ଚଳରେ ସର୍ବଦା କୌଣସି ନା କୌଣସି ପ୍ରାକୃତିକ ବିପର୍ଯ୍ୟୟ ଲାଗିରହିଛି । ବନ୍ୟା, ମରୁଡ଼ି, ଦୁର୍ଭିକ୍ଷ, ରୋଗ—ଏ ତ ଏକ ସାଧାରଣ ବ୍ୟାପାର ହୋଇଗଲାଣି । ପ୍ରୟୋଜନର ଏହି ମୁହୂର୍ତ୍ତରେ ସମସ୍ତଙ୍କର ପରମ କର୍ତ୍ତବ୍ୟ ହେଉଛି ପୀଡ଼ିତମାନଙ୍କ ନିମନ୍ତେ ଅନ୍ନ, ବସ୍ତ୍ର, ଔଷଧପତ୍ରାଦିର ବ୍ୟବସ୍ଥା କରିବା । ବିପଦର ମୁହୂର୍ତ୍ତରେ ପାଖରେ ଠିଆହେଲେ ମଣିଷ କେତେ ଆଶ୍ୱସ୍ତ ହୋଇଯାଏ । ଯଦି ତା' କରାଯାଇପାରେ ତ କଥା ନାହିଁ । ବିଶ୍ୱର ପୀଡ଼ିତ, ରୁଗ୍ଣ ଜନତା ନିମନ୍ତେ ଯଦି ପ୍ରତି କ ହୃଦୟରେ ସାମାନ୍ୟ ସମବେଦନା, ଟିକିଏ ସହାନୁଭୂତି ସୃଷ୍ଟି ହୋଇପାରିଲା, ତେବେ ପୀଡ଼ିତର ଦୁଃଖ ଅନେକ ଲାଘବ ହୋଇଯିବ ।

ସମାଜସେବାର ଭିନ୍ନ ଭିନ୍ନ ରୂପ ରହିଛି । ନିଜ ନିଜ କ୍ଷେତ୍ରରେ ଅନ୍ୟ ନିମନ୍ତେ କିଛି କିଛି କାମ କରିପାରିଲେହିଁ ତାହା ସମାଜସେବା ହେବ । ନିଜ ଅଞ୍ଚଳରେ ରାସ୍ତାଘାଟର ସାମାନ୍ୟ ସୁବିଧା କରିପାରିବା, ପାନୀୟ ଜଳର କିଛି ବ୍ୟବସ୍ଥା କରିବା କିମ୍ବା ଘୋର-ତକାୟତଙ୍କ ବିରୁଦ୍ଧରେ ଏକ ସାମୂହିକ ପଦକ୍ଷେପ ନେଇପାରିବାକୁ ମଧ୍ୟ ସମାଜସେବା ହିଁ ବୁଝାଯାଇପାରିବ ।

ସମାଜ ପାଇଁ କିଛି କରିପାରିଲେ ହୃଦୟରୁ ସଙ୍କୀର୍ଣ୍ଣତା ଦୂର ହୋଇଯାଏ । ଏକ ମହା-ଭାବରେ ହୃଦୟ ପରିପୂର୍ଣ୍ଣ ହୁଏ । ସମଗ୍ର ବିଶ୍ୱ ନିଜର ପରିବାର ବୋଲି ମନେହୁଏ । ବୁଦ୍ଧ, ଗାନ୍ଧୀ, ଗୋପବନ୍ଧୁ, ବିବେକାନନ୍ଦ ଏମାନେ ଥିଲେ ପ୍ରକୃତରେ ସମାଜସେବୀ । ସେମାନେ ସମସ୍ତଙ୍କୁ ନିଜର ମନେକରୁଥିଲେ, ସମସ୍ତେ ସେମାନଙ୍କ ମଧ୍ୟରେ ଅତି ଆତ୍ମୀୟର ସ୍ୱରୂପକୁ ଦେଖିବାକୁ ପାଉଥିଲେ । ତେଣୁ ଆଜି ଆମେ ସେମାନଙ୍କୁ ସ୍ମରଣ କରୁଛୁ ।

ସମାଜସେବାହିଁ ଈଶ୍ୱରସେବା । ଜନତା-ଜନାର୍ଦ୍ଦନ ଈଶ୍ୱରଙ୍କର ସାକାର ବିଗ୍ରହ । ସେମାନଙ୍କ ସେବା କରିପାରିଲେ ଜୀବନ ମଙ୍ଗଳମୟ ହୁଏ । ସେବାବିମୁଖତା ସ୍ୱାର୍ଥ-ପ୍ରବୃତ୍ତିର ସାମୂହିକ ବିସ୍ତାର ଘଟାଇବ । ମଣିଷ ନିଜର ସଙ୍କୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ ରହି ଏକାନ୍ତ ଏକାକୀ ହୋଇଯିବ । ଯାହାର ମନ ଯାହା ହେବ ତା' ସେ କରିଯିବ । ସମାଜଜୀବନ ବିଶୃଙ୍ଖଳ ହୋଇପଡ଼ିବ । ସେବାହିଁ ପାରସ୍ପରିକ ସମ୍ପ୍ରୀତି ବଢ଼ାଇ ସମସ୍ତଙ୍କୁ ଗୋଟିଏ ଡୋରରେ ବାନ୍ଧିରଖିବ । ଆତ୍ମୀୟତା ବୃଦ୍ଧିପାଇବ । ନିଜ ପରର ବିଚାର ଦୂର ହୋଇ ସମଗ୍ର ବିଶ୍ୱ ହେବ ଗୋଟିଏ ପରିବାର । ଶକ୍ତି ଅନୁରୂପ ସେବାଦ୍ୱାରା ସମାଜଜୀବନର ଉନ୍ନତି ସମସ୍ତଙ୍କର ଧ୍ୟେୟ ହେବା ଉଚିତ । ସମସ୍ତଙ୍କର ସୁଖ, ସମସ୍ତଙ୍କର ସମୃଦ୍ଧି ଏବଂ ନିରାମୟତା ମଧ୍ୟରେ ହିଁ ବିଶ୍ୱର ମଙ୍ଗଳ ନିହିତ ରହିଛି ।

## ଦେଶପ୍ରେମ

"ମାତୃଭୂମି ମାତୃଭାଷାରେ ମମତା
ଯା ହୃଦେ ଜନମି ନାହିଁ,
ତାକୁ ଯଦି ଜ୍ଞାନୀଗଣରେ ଗଣିବ
ଅଜ୍ଞାନ ରହିବେ କାହିଁ ?"

—ଗଙ୍ଗାଧର

ଜନ୍ମଭୂମିର ଗୌରବ ପ୍ରଖ୍ୟାପନ, ତା' ନିମନ୍ତେ ଅଭିମାନ ପ୍ରତ୍ୟେକ ବ୍ୟକ୍ତିର ଏକ ପବିତ୍ର ଦାୟିତ୍ୱ । ଦେଶକୁ ଭକ୍ତି ପ୍ରଦର୍ଶନ କରିବା କିମ୍ବା ପ୍ରୟୋଜନରେ ଦେଶମାତୃକାର ଯଜ୍ଞବେଦୀରେ ନିଜକୁ ଉତ୍ସର୍ଗ କରିଦେବା ଥିଲା ସେକାଳରେ ପ୍ରତ୍ୟେକ ବୀରର ଆଦର୍ଶ । ଦେଶପ୍ରେମ ବିକାଶଶୀଳ ଜାତିର ପ୍ରଧାନ ଲକ୍ଷଣ ।

ଦେଶ କହିଲେ କେବଳ ନିର୍ଜୀବ ମାଟିଖଣ୍ଡକୁ ବୁଝାଏ ନାହିଁ । ଏହା ହେଉଛି ସେହି ପବିତ୍ର ଭୂମି ଯାହା ସହିତ ଆମର ସଭ୍ୟତା, ସଂସ୍କୃତିର ନିବିଡ଼ ସମ୍ପର୍କ ରହିଛି ।

ଯେଉଁଠି ଆମର ପୂର୍ବପୁରୁଷ ସେମାନଙ୍କର ସ୍ମରଣୀୟ ସ୍ମୃତିର ବହୁ ଉପାଦାନ ଛାଡ଼ି ଯାଇଛନ୍ତି; ଯାହାର ଝରଣାର ଜଳ, ବୃକ୍ଷଲତାର ଫଳ, କ୍ଷେତ୍ରର ଶସ୍ୟ ଖାଇ ଆମ ଧମନୀର ପ୍ରତିଟି ରକ୍ତବିନ୍ଦୁ ପ୍ରସ୍ତୁତ ହୋଇଛି ଏବଂ ଯାହାର କୋଳରେ ଆମ ମୁହଁରୁ ପ୍ରଥମ ବାଣୀ ଉଚ୍ଚାରିତ ହୋଇଛି । ଏହି ଭୂମିପ୍ରତି, ଏହାର ନଦୀହ୍ରଦ, ଫୁଲଫଳ, ଗଛଲତା, ନରନାରୀ ପ୍ରତି, ଏହାର ସଂସ୍କୃତି ପ୍ରତି, ଏହାର ଭାଷା ପ୍ରତି ମନରେ ଯେଉଁ ମମତ୍ୱବୋଧ ସୃଷ୍ଟି ହୁଏ, ତାହାହିଁ ଦେଶପ୍ରେମ । ବ୍ୟକ୍ତି-ଜୀବନରୁ ଏହି 'ପ୍ରେମ'ର ଆରମ୍ଭ ହୋଇ ପରିବାର, ସମାଜ, ଗ୍ରାମ, ନଗର ଏବଂ ଶେଷରେ ଦେଶ ନିକଟରେହିଁ ଶେଷ ହୋଇଥାଏ । ଯେହେତୁ ବ୍ୟକ୍ତି ଦେଶର ଏକ ଅଂଶ ସ୍ୱରୂପ, ତେଣୁ ନିଜର ଉନ୍ନତି କଥା ଭାବିଲା ସମୟରେ ତାକୁ ଦେଶର ଚିନ୍ତାଚିନ୍ତା ମଧ୍ୟ କରିବାକୁ ହୋଇଥାଏ । ଦେଶର ଉନ୍ନତି ବିନା ବ୍ୟକ୍ତିର ଉନ୍ନତି ଅସମ୍ଭବ । ତେଣୁ ଦେଶର ପ୍ରତ୍ୟେକ ନାଗରିକ, ସେ ଯେଉଁଠି ଥାଆନ୍ତୁ ନା କାହିଁକି, ଯେଉଁ ଭାବରେ ଥାଆନ୍ତୁ ନା କାହିଁକି, ନିଜ ଜନ୍ମଭୂମିର ସର୍ବତୋଭାବରେ କଲ୍ୟାଣସାଧନ ଓ ଏହାର ସୁରକ୍ଷାର ଦାୟିତ୍ୱ ବହନକୁ ନିଜର ପବିତ୍ର କର୍ତ୍ତବ୍ୟ ମନେକରିବେ । ନିଜ ଦେଶ ପ୍ରତି ମମତା ପ୍ରାୟ ପ୍ରତ୍ୟେକ ମଣିଷର ହୃଦୟରେ ଉଣା ଅଧିକେ ଥାଏ । ଟିକିଏ ଉଚ୍ଚ ପର୍ଯ୍ୟାୟକୁ ଉଠିଗଲେ, ମଣିଷର ଚିନ୍ତାର ପରିଧି ମଧ୍ୟ କ୍ରମଶଃ ବିସ୍ତୃତ ହୋଇଯାଏ । କୌଣସି ନିର୍ଦ୍ଦିଷ୍ଟ ପ୍ରାନ୍ତ ପ୍ରତି ତାଙ୍କର ଅଧିକ ବିଶେଷ ଦୁର୍ବଳତା ରହେ ନାହିଁ । ତେବେ ଜନ୍ମସ୍ଥାନ ପ୍ରତି ମମତା ପଶୁପକ୍ଷୀ ହୃଦୟରେ ମଧ୍ୟ ଚିରନ୍ତନ ଥାଏ । ମାନବ ପକ୍ଷରେ ଏହି ଆକର୍ଷଣ ଆହୁରି ଅଧିକ ତୀବ୍ର ହୋଇଥାଏ । ସ୍ୱଦେଶ ଏବଂ ସ୍ୱଜାତି ପ୍ରତି ମାନବ ହୃଦୟରେ କିଭଳି ମମତା ଥାଏ, ତାହା ବିଦେଶରେ ହିଁ ଦେଖିବାକୁ ମିଳେ । ଜନ୍ମଭୂମିଠାରୁ ବହୁ ଦୂରରେ ସ୍ୱଜାତୀୟଙ୍କୁ ଦେଖିଲେ ବ୍ୟକ୍ତି ଉଲ୍ଲସିତ ହୋଇଉଠେ । ଭାଷାଗତ ବ୍ୟବଧାନ ଥିଲେ ମଧ୍ୟ, ସେ ସ୍ୱଦେଶୀୟଙ୍କୁ ଆପଣାର କରିନିଏ । ଭାରତ ବାହାରେ ବିଦେଶରେ ଭାରତୀୟମାନେ ପ୍ରଦେଶ ନିର୍ବିଶେଷରେ ଯେଉଁଭଳି ପରସ୍ପର ପ୍ରତି ନିବିଷ୍ଟ, ସେଥିରୁ ପୂର୍ବୋକ୍ତ ମନ୍ତବ୍ୟର ପୁଷ୍ଟିପୋଷକତା ହୋଇଥାଏ । ତେଣୁ ଦେଶବତ୍ସଳତାକୁ ମଣିଷର ଏକ ସହଜାତ ପ୍ରବୃତ୍ତି ରୂପେ ଗ୍ରହଣ କରିନିଆଯାଇପାରେ ।

ମଣିଷ ସମାଜରେ ବାସକରେ । ସମାଜ ତାକୁ ନିରାପତ୍ତା ଦିଏ । ତା'ର ଶିକ୍ଷା, ସ୍ୱାସ୍ଥ୍ୟ, ବୃତ୍ତି, ଆର୍ଥିକ ଅବସ୍ଥା, ଅନ୍ନବସ୍ତ୍ର ଇତ୍ୟାଦିର ଯତ୍ନ ନିଏ । ତେଣୁ ସମାଜକୁ ଛାଡ଼ି ମଣିଷର ସ୍ଥିତି କଳ୍ପନା ପ୍ରାୟ ଅସମ୍ଭବ ହୋଇଉଠେ । ଏହି ସମାଜ ପୁଣି ଦେଶର ଅଂଶବିଶେଷ ଏବଂ ଦାୟିତ୍ୱପାଳନରେ ଏହା ସର୍ବଦା ସମାଜର ପାଖେ ପାଖେ ଥାଏ । ତେଣୁ ମଣିଷ ସମାଜ ନିକଟରେ କୃତଜ୍ଞ ରହିବା ସଙ୍ଗେ ସଙ୍ଗେ ଦେଶ ପ୍ରତି ମଧ୍ୟ ଆନୁଗତ୍ୟ ସ୍ୱୀକାର କରିବାକୁ ବାଧ୍ୟ । ଯେଉଁ ଦେଶରେ ସେ ରହେ, ଯାହାର ବାୟୁରେ ନିଶ୍ୱାସ ପ୍ରଶ୍ୱାସ ଗ୍ରହଣ କରେ, ତାହା ସହିତ ଯଦି ତା'ର ପ୍ରୀତିପୂର୍ଣ୍ଣ ସମ୍ପର୍କ ସ୍ଥାପିତ ନହୁଏ ତେବେ ସେ ଜୀବନକୁ ଉପଭୋଗ କରିପାରିବନାହିଁ । ଅବାଞ୍ଛିତ ଏକ ବିରକ୍ତିରେ

ତା'ର ମନ ସର୍ବଦା ପରିପୂର୍ଣ୍ଣ ହେବ । ଏଇଟା ଭଲ ନୁହେଁ, ସେଇଟା କେତେ ଖରାପ— ଏହିଭଳି ମନ୍ତବ୍ୟ ଦେଇ ଦେଇ ତା'ର ଜୀବନର ସମସ୍ତ ଆନନ୍ଦ ମାଟିହୋଇଯିବ । ତେଣୁ ଦେଶକୁ ମଣିଷ ଭଲପାଇବ ନିଜ ନିମନ୍ତେ, ବଞ୍ଚିବାର ଆନନ୍ଦ ଉପଭୋଗ କରିବା ନିମନ୍ତେ । ଦେଶ ପ୍ରତି ମମତା, ତାକୁ ଦେଶର ରକ୍ଷା, ଉନ୍ନତି ତଥା ସାର୍ବିକ ହିତଚିନ୍ତା ନିମନ୍ତେ ପ୍ରେରଣା ଯୋଗାଇବ । ଦେଶପ୍ରେମର ଅଭାବ ମଣିଷ ଜୀବନକୁ କେଉଁଭଳି ବିପର୍ଯ୍ୟସ୍ତ କରିଦିଏ, ତାହା ଦୀର୍ଘକାଳ ପରାଧୀନ ରହି ଆମେ ହାଡ଼େ ହାଡ଼େ ବୁଝିଛୁଁ । ତୁର୍କୀ, ମୋଗଲ, ଇଂରେଜ ଜଣକପରେ ଜଣେ ଆମକୁ ଲୁଣ୍ଠନ କରିଚାଲିଛନ୍ତି । ଜୟଚନ୍ଦ୍ର ମାନଙ୍କର ଚକ୍ରାନ୍ତରେ, ସ୍ୱାର୍ଥଚିନ୍ତାରେ ଦେଶ ବଳି ସ୍ୱରୂପ ଅର୍ପିତ ହୋଇଯାଇଛି । ଦେଶପ୍ରେମର ପୁନରୁଦୟ ହିଁ ଦେଶକୁ ଦୀର୍ଘକାଳର ପରାଧୀନତା ମଧ୍ୟରୁ ମୁକ୍ତି ଦେଇଛି ।

ନିର୍ବାଚନ ମାଧ୍ୟମରେ ଶୁଭବୁଦ୍ଧିସମ୍ପନ୍ନ ଦେଶପ୍ରେମୀ ପ୍ରାର୍ଥୀଙ୍କୁ ବାଛି ସେମାନଙ୍କ ହାତରେ ଦେଶର ଶାସନଭାର ଅର୍ପଣ କରିବା ହିଁ ପ୍ରକୃତ ଦେଶପ୍ରେମର ପ୍ରଧାନ ଲକ୍ଷଣ । ସ୍ୱାର୍ଥପର, ଦୁର୍ନୀତିପରାୟଣ ବ୍ୟକ୍ତି ଦେଶ କହିଲେ ବ୍ୟକ୍ତିକୁହିଁ ବୁଝିଥାନ୍ତି—ସେ ବ୍ୟକ୍ତି ପୁଣି ନିଜ ଛଡ଼ା ଅପର କେହି ନୁହେଁ । ପେଟ-ପକେଟର ଚିନ୍ତା ତାଙ୍କୁ ଅହରହ ଏପରି ବ୍ୟସ୍ତ ରଖେ ଯେ, ସେ ଅନ୍ୟ ବିଷୟ ଚିନ୍ତା କରିପାରନ୍ତି ନାହିଁ । ତାଙ୍କର ସମ୍ପତ୍ତିର ସୀମା ବିସ୍ତୃତ ହୁଏ, ଅଧୁମାସି ଝିଣ୍ଟିକାର ମୁଣ୍ଡରେ ଗୋଟିଏ ହୃଷ୍ଟପୁଷ୍ଟ ବଣି ଆନନ୍ଦରେ ଡେଣା ଫଡ଼ଫଡ଼ାଏ । ଲକ୍ଷ ଲୋକଙ୍କୁ ସିଡ଼ିଭଳି ବ୍ୟବହାର କରି ଜଣେ ଲୋକ ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଉଠିଯାଏ । ଦେଶ, ଜାତି, ବ୍ୟକ୍ତି ସ୍ୱାର୍ଥର ପ୍ରଖର ପ୍ରବାହରେ କାହିଁ କୁଆଡ଼େ ଭାସିଯାଏ । ଦେଶର ବିଭିନ୍ନ ଅଞ୍ଚଳ ଶତ୍ରୁ ହାତରେ ଟେକିଦିଆଯାଏ । ମାତ୍ର ନିଜ ଗୃହକୁ ସର୍ପ ନିମନ୍ତ୍ରଣ କରି ଆଣିଥିବା ହତଭାଗ୍ୟ ମଣ୍ଡୁକଟି ଶତ୍ରୁ ନିପାତ କରି ସୁଦ୍ଧା ଯେଉଁଭଳି ସୁଖସମୃଦ୍ଧି ଭୋଗ କରିପାରେ ନାହିଁ—ଦେଶଦ୍ରୋହୀ, ସ୍ୱାର୍ଥଚିନ୍ତକ ନେତାଟିର କପାଳରେ ସୁଦ୍ଧା ତାହାହିଁ ଲେଖାହୁଏ । ଦେଶର ପତନରେ ତାହାର ପତନ ହୁଏ । ତେଣୁ ଦେଶର ଶାସକ ଯଦି ନ୍ୟାୟବାନ୍, ସାଧୁ, ଦେଶପ୍ରେମୀ ନହେବେ, ଦେଶର ଅବସ୍ଥା ଯାହା ହେବ ତାହା ଆମେ ବର୍ତ୍ତମାନ ନିଜ ଅଙ୍ଗରେ ଲଭୁଅଛୁଁ ।

ଅନ୍ୟ ଦେଶ ବା ତହିଁର ଅଧିବାସୀଙ୍କୁ ଘୃଣା କରି, ତାଙ୍କ ସହିତ ଶତ୍ରୁତା ଆଚରଣ କରିବା ପ୍ରକୃତ ଦେଶପ୍ରେମର ଲକ୍ଷ୍ୟ ନୁହେଁ । ନିଜ ଦେଶକୁ ଶ୍ରଦ୍ଧା ଏବଂ ସମ୍ମାନ ଦେଖାଇ ସୁଦ୍ଧା ଅନ୍ୟ ଦେଶପ୍ରତି ଜଣେ ଇଚ୍ଛାକଲେ ସହାନୁଭୂତିଶୀଳ ହୋଇପାରେ । ପରିବାର ପ୍ରତି ଅନୁରକ୍ତ ହେବା ମଣିଷର ପ୍ରଥମ କର୍ତ୍ତବ୍ୟ । ତାହାର ଅର୍ଥ ନୁହେଁ ଯେ, ପ୍ରତିବେଶୀମାନଙ୍କ ସହିତ ଶତ୍ରୁତା ଆଚରଣ କରିବ । ଠିକ୍ ସେଇଭଳି ନିଜ ଦେଶପ୍ରତି ଅନୁରକ୍ତ ଥାଇ ସୁଦ୍ଧା ଅନ୍ୟ ଦେଶ ପ୍ରତି ସମ୍ମାନ ଦେଖାଯାଇପାରେ । ନିଜର ଉନ୍ନତି ଆମେ ନିଶ୍ଚୟ କାମନା କରିବା; ମାତ୍ର ଅପରର କ୍ଷତି କରି ନୁହେଁ । ସଙ୍କୀର୍ଣ୍ଣ ଦେଶପ୍ରୀତି ବିଦ୍ୱେଷ ସୃଷ୍ଟି କରି ଧ୍ୱଂସକୁ ନିମନ୍ତ୍ରଣ କରିଆଣେ ।

ଗାନ୍ଧି, ଗୋପବନ୍ଧୁ, ସୁଭାଷ, ଗୋଖେଲଙ୍କ ଭଳି ଅନେକ ନେତା ଦେଶମାତୃକାର ଯଜ୍ଞବେଦୀରେ ନିଜକୁ ତଥା ନିଜର ସର୍ବସ୍ୱ ଉତ୍ସର୍ଗ କରିଦେଇଛନ୍ତି । ଏମାନଙ୍କ ଜୀବନ ହିଁ ଆମ ପାଇଁ ପ୍ରେରଣା । ବ୍ୟକ୍ତି-ସ୍ୱାର୍ଥର ଊର୍ଦ୍ଧ୍ୱରେ ଦେଶପ୍ରେମର ସ୍ଥାନ । ଦେଶର ଉନ୍ନତିରେ ହିଁ ବ୍ୟକ୍ତିର ଉନ୍ନତି । ଏହି ଚିନ୍ତାକୁ ମନରେ ରଖି ଦେଶ ତଥା ଜାତିର ଉନ୍ନତି କରିବା ହେଉଛି ଆମର ପ୍ରଧାନ କାର୍ଯ୍ୟ ।

## ଭାରତର ପରମାଣୁ ଶକ୍ତି

ବର୍ତ୍ତମାନର ଯୁଗ ହେଉଛି ବିଜ୍ଞାନର ଯୁଗ । ବିଜ୍ଞାନର ପ୍ରଗତି ଆଧୁନିକ ଜୀବନର ବହୁ ସୁଖ ସମୃଦ୍ଧିର ପ୍ରଧାନତମ କାରଣ । ଏହା ମଧ୍ୟ ସତ୍ୟ ଯେ, ବିଜ୍ଞାନ ଯେଉଁଭଳି ବିନୀତ ଓ ଆଜ୍ଞାବହ ଭୃତ୍ୟ, ଠିକ୍ ସେହିଭଳି ଜଣେ ଅପରିଣାମଦର୍ଶୀ ପ୍ରଭୁ ମଧ୍ୟ । ଗୃହିଁଲେ ନିମିଷକ ମଧ୍ୟରେ ସେ ଏହି ସୃଷ୍ଟିକୁ ଧ୍ୱଂସ ସ୍ତୂପରେ ପରିଣତ କରିଦେଇପାରେ । ଦ୍ୱିତୀୟ ମହାଯୁଦ୍ଧ କାଳରେ ଜାପାନର ଦୁଇଟି ସମୃଦ୍ଧ ନଗର ହିରୋସିମା ଓ ନାଗାସାକି ଯେଉଁଭଳି ଆଖିପିଛୁଳାକେ ଆମେରିକାର ବୋମାମାଡ଼ରେ ଧୂଳିସାତ୍ ହୋଇଗଲା, ତାହାଠୁ କମ୍ ସମୟରେ ବର୍ତ୍ତମାନ ସମଗ୍ର ବିଶ୍ୱ ଧ୍ୱଂସ ହୋଇଯାଇପାରେ । ବିଜ୍ଞାନ ତେଣୁ ଆଜି ଗୋଟିଏ ବିପଦପୂର୍ଣ୍ଣ ମୋଡ଼ ଉପରେ ଦଣ୍ଡାୟମାନ । ତା' ଆଗରେ ବର୍ତ୍ତମାନ ଦୁଇଟି ରାସ୍ତା—ସୃଷ୍ଟି କିମ୍ବା ଧ୍ୱଂସ—ଏ ଦୁଇଟି ମଧ୍ୟରୁ ତାକୁ ଉପଯୁକ୍ତ ପଥ ବାଛିନେବାକୁ ପଡ଼ିବ ।

ପରମାଣୁ ଶକ୍ତିର ଉଦ୍‌ଭାବନ ପରିସ୍ଥିତିର ଗୁରୁତ୍ୱକୁ ଅଧିକ ବଢ଼ାଇଦେଇଛି । ଇଚ୍ଛା କଲେ ଏହାର ସାହାଯ୍ୟରେ ସମଗ୍ର ସୃଷ୍ଟିକୁ ଧ୍ୱଂସ କରାଯାଇପାରେ । ପୁଣି ନୂତନ ବିଶ୍ୱର ନିର୍ମାଣରେ ମଧ୍ୟ ଏହାର ଭୂମିକା ଅନବଦ୍ୟ । ଆଜିଠାରୁ ପ୍ରାୟ ୪୦।୪୫ ବର୍ଷ ପୂର୍ବରୁ ପରମାଣୁ ସମ୍ପର୍କରେ ଗବେଷଣା ଆରମ୍ଭ ହୋଇଥିଲା । ଜର୍ମାନୀରେ ଏ ସମ୍ପର୍କରେ ପ୍ରଥମ ଅନୁସନ୍ଧାନ ଆରମ୍ଭ ହୁଏ; ମାତ୍ର ଏହି ଦେଶ ସେଥିରେ ବିଶେଷ କୃତିତ୍ୱ ଦେଖାଇପାରିନାହିଁ । ଦ୍ୱିତୀୟ ମହାଯୁଦ୍ଧ କାଳରେ ଆମେରିକା ଏହି ଶକ୍ତି ସମ୍ପର୍କରେ ଉଚ୍ଚତର ଗବେଷଣା କରିବା ନିମନ୍ତେ ଗୋଟିଏ ସଂସ୍ଥା ସ୍ଥାପନ କରେ । ସେହି ସମୟରେ ଡଃ ଗ୍ରୋବର୍ଟ ଏହାର ମୁଖ୍ୟ ଥିଲେ । ତାଙ୍କର ଦ୍ୱାରା ପରମାଣୁ ବୋମା ଉଦ୍‌ଭାବିତ ହେଲା । ପ୍ରଥମ ବିସ୍ଫୋରଣ କରାଗଲା ତେର ଜୁଲାଇ ୧୯୪୫ରେ, ଓକ୍‌ଲାମାଗେଡ଼ୋରର ମରୁଭୂମିରେ । ଏହି ପରୀକ୍ଷାରୁ ଗୁଳିଶ ହଜାର ଫୁଟ ଉଚ୍ଚ ଏକ ବାଦଲ ସୃଷ୍ଟି ହେଲା । ୧୫ କି: ମି: ପର୍ଯ୍ୟନ୍ତ ଅଞ୍ଚଳ ଏହାଦ୍ୱାରା ଉତ୍ତପ୍ତ ହୋଇଗଲା ଏବଂ ଦେଢ଼ କି: ମି: ମଧ୍ୟରେ ଥିବା ସମସ୍ତ ପ୍ରାଣୀ ମୃତ୍ୟୁବରଣ କଲେ । ଜାପାନରେ ୧୯୪୫ ମସିହା ଛଅ ଏବଂ ନଅ ଅଗଷ୍ଟରେ ଏହି ବୋମାର ପ୍ରୟୋଗ କରାଗଲା । ଆଠଦଶ ଲକ୍ଷ ଲୋକ

ହୁଏତ ମୃତ୍ୟୁବରଣ କଲେ କିମ୍ବା ସାରା ଜୀବନପାଇଁ ପଙ୍ଗୁ ହୋଇଗଲେ । ଏହି ଧ୍ୱଂସଲୀଳା ଏହାର ସ୍ରଷ୍ଟା ଡକ୍ଟର ରୋବର୍ଟଙ୍କ ମନରେ ଏଭଳି ଅନୁତାପ ସୃଷ୍ଟି କଲା ଯେ, ଗ୍ଲାନିରେ ସେ ନିଜ ପଦରୁ ଇସ୍ତଫା ଦେଇଦେଲେ ।

ଏହା ପରେ କ୍ରମଶଃ ୧୯୪୯ରେ ରୁଷ୍, ୧୯୫୨ରେ ଇଂଲଣ୍ଡ, ୧୯୬୦ରେ ଫ୍ରାନ୍ସ, ତଥା ୧୯୬୪ରେ ଚୀନ୍ ସୁଦ୍ଧା ଏହି ବୋମା ପ୍ରସ୍ତୁତ କଲେ । ଏହାପରେ ଏହାଠାରୁ ଶହେ ଗୁଣ କ୍ଷତିକାରକ ଉଦ୍‌ଜାନ ବୋମା ମଧ୍ୟ ନିର୍ମିତ ହୋଇଗଲା । ଏ ସମସ୍ତ ଅସ୍ତ୍ର ମାନବତା ବିରୁଦ୍ଧରେ ଯାଉଥିବାରୁ ଜାତିସଂଘ ତରଫରୁ ଏ ସମ୍ବନ୍ଧୀୟ ସମସ୍ତ ପ୍ରକାର ପରୀକ୍ଷାନିରୀକ୍ଷା ବନ୍ଦ କରିଦେବା ନିମନ୍ତେ ଅନୁରୋଧ କରାଗଲା ।

ପରମାଣୁର ଧ୍ୱଂସକାରୀ ଶକ୍ତିକୁ ଶାନ୍ତି ତଥା ସମୃଦ୍ଧି ନିମନ୍ତେ ବ୍ୟବହାର କରାଯାଇ-ପାରେ । କାନାଡ଼ା ଏବଂ ଭାରତ ଏହାର ଶାନ୍ତିପୂର୍ଣ୍ଣ ପ୍ରୟୋଗ ନିମନ୍ତେ ପ୍ରଯତ୍ନଶୀଳ । ଭାରତରେ ଏହାକୁ ଶାନ୍ତି ନିମନ୍ତେ ବ୍ୟବହାର କରାଯିବା ପାଇଁ ବ୍ୟାପକ ଉଦ୍ୟମ ଚାଲିଛି । ଭାରତରେ ୧୯୪୮ ମସିହାରେ ପରମାଣୁ ଗବେଷଣା କେନ୍ଦ୍ର ସ୍ଥାପିତ ହୋଇଥିଲା । ହୋମି ଜାହାଙ୍ଗୀର ଭାବା ଏହାର ମୁଖ୍ୟ ଥିଲେ । ତାଙ୍କର ନେତୃତ୍ୱରେ ବମ୍ବେ ନିକଟସ୍ଥ ଟ୍ରମ୍ବେଠାରେ ପରମାଣୁ ଗବେଷଣା କେନ୍ଦ୍ର ସ୍ଥାପିତ ହୋଇଥିଲା । ପରମାଣୁରୁ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବାର ପ୍ରଚେଷ୍ଟା ତାଙ୍କର ଉଦ୍ୟମରେ ହିଁ ଆରମ୍ଭ ହୋଇଥିଲା । ତାରାପୁର ତଥା ମାଡ୍ରାସରେ ଏ ସମ୍ବନ୍ଧୀୟ କାର୍ଯ୍ୟ ଯେତେବେଳେ ଦ୍ରୁତଗତିରେ ଚାଲିଥିଲା, ଠିକ୍ ସେତିକି-ବେଳେ ୧୯୬୬ ମସିହାରେ ଡକ୍ଟର ଭାବାଙ୍କର ଏକ ବିମାନ ଦୁର୍ଘଟଣାରେ ହଠାତ୍ ମୃତ୍ୟୁ ହୋଇଗଲା । ଡକ୍ଟର ସେଠ୍‌ନା ଏହାପରେ ତାଙ୍କର ସ୍ଥାନ ପୂରଣ କଲେ । ୧୯୭୪ ମସିହା ମେ ମାସରେ ରାଜସ୍ଥାନର ବାଡ଼ମେର୍ ଜିଲ୍ଲାର ପୋଖରାନ୍ ନାମକ ସ୍ଥାନରେ ଏକଶହ ମିଟର ଭୂଗର୍ଭରେ ଭାରତର ପ୍ରଥମ ପରମାଣୁ ବିସ୍ଫୋରଣ କରାଗଲା । ଏହି ବିସ୍ଫୋରଣ ଫଳରେ ଗୋଟିଏ ପଟରେ ଏକ ବିରାଟ ଗର୍ତ୍ତ ତଥା ଅନ୍ୟ ପଟରେ ନାତିଉଚ୍ଚ ଏକ ପାହାଡ଼ ଆତ୍ମପ୍ରକାଶ କଲା । ଏହି ବିସ୍ଫୋରଣ ସମଗ୍ର ବିଶ୍ୱକୁ ବିସ୍ମୟ-ଚକିତ କରିଦେଇଥିଲା । ଅନେକ ଦେଶ ଏହି ଧରଣର ବିସ୍ଫୋରଣର ବିରୋଧ କଲେ; ମାତ୍ର ଭାରତ ତରଫରୁ କେବଳ ମାତ୍ର ଶାନ୍ତି ନିମନ୍ତେ ଏହାର ପ୍ରୟୋଗ କରାଯିବ ବୋଲି ବାରମ୍ବାର ଆଶ୍ୱାସନା ଦିଆଗଲା । ବଡ଼ ଆଶ୍ଚର୍ଯ୍ୟର କଥା ଯେ, ଯେଉଁ ଦେଶ ଗୋଟିକ ପରେ ଗୋଟିଏ କରି ଅଜସ୍ର ପରମାଣୁ ବୋମାର ଅଧିକାରୀ, ସେଇମାନେହିଁ ଭାରତ ବିରୁଦ୍ଧରେ ଉଚ୍ଚ ସ୍ୱର ଉତ୍ତୋଳନ କଲେ ।

ଭାରତ ଆଜି ବିଶ୍ୱର ପରମାଣୁ-ଶକ୍ତିସମ୍ପନ୍ନ ରାଷ୍ଟ୍ରମାନଙ୍କ ମଧ୍ୟରେ ଅନ୍ୟତମ । ତଥାପି ଏ ସମ୍ପର୍କରେ ଭାରତର ନୀତି ଅତ୍ୟନ୍ତ ସ୍ପଷ୍ଟ । ଏହା ବିଭିନ୍ନ ସମୟରେ ଭାରତର ନେତାମାନେ ଖୋଲିଖୋଲି କହିଦେଇଛନ୍ତି । ଶାନ୍ତିପୂର୍ଣ୍ଣ କାର୍ଯ୍ୟରେ ପରମାଣୁ ଶକ୍ତିର ବିନିଯୋଗ ହେଉଛି ଭାରତର ଏକମାତ୍ର ଲକ୍ଷ୍ୟ । ଡକ୍ଟର ସେଠ୍‌ନା ସୁଦ୍ଧା ଏହାକୁ ସ୍ପଷ୍ଟ ଭାବରେ ଘୋଷଣା କରିଛନ୍ତି ।

ତାଙ୍କ ମତରେ, ଯେଉଁମାନେ ପରମାଣୁ ଅସ୍ତ୍ର ପ୍ରସ୍ତୁତ କରୁଛନ୍ତି, ସେମାନେ ନିଜ ଅଜ୍ଞାତ-ସାରରେ ଏକ ଭୟଙ୍କର ଆଗ୍ନେୟଗିରି ମୁଖରେ ହିଁ ବସିରହିଛନ୍ତି ।

ଭାରତ ଏକ ବିକାଶଶୀଳ ରାଷ୍ଟ୍ର । ତେଣୁ ପରମାଣୁ ଶକ୍ତିର ଶାନ୍ତିପୂର୍ଣ୍ଣ ବିନିଯୋଗ ହିଁ ତା' ପାଇଁ ଏକାନ୍ତ ଶୁଭଙ୍କର । ଏହି ଶକ୍ତି ସାହାଯ୍ୟରେ ଯେଉଁ ବିଦ୍ୟୁତ୍‌ଶକ୍ତି ଉତ୍ପନ୍ନ ହୋଇ ପାରିବ, ସମଗ୍ର ଦେଶର ଶିଳ୍ପାୟନ ନିମନ୍ତେ ତାହାର ପ୍ରଚୁର ଉପଯୋଗିତା ରହିଛି । କଠିନ ବ୍ୟାଧି ଦୂରୀକରଣ ନିମନ୍ତେ ମଧ୍ୟ ଏହି ଶକ୍ତିକୁ ବ୍ୟବହାର କରାଯାଇ ପାରିବ । ପରମାଣୁ ଶକ୍ତିର ଉପଯୁକ୍ତ ବିନିଯୋଗ ଜମିର ଉତ୍ପାଦିକା ଶକ୍ତି ମଧ୍ୟ ବଢ଼ାଇପାରିବ । ଏହାଦ୍ୱାରା ଦେଶର ଖାଦ୍ୟ-ସମସ୍ୟାର ଏକ ସ୍ଥାୟୀ ସମାଧାନ ହୋଇପାରିବ । ଏହାଦ୍ୱାରା ଅନ୍ତରୀକ୍ଷକୁ ଉପଗ୍ରହ ପ୍ରେରଣ କରାଯାଇ ମହାଶୂନ୍ୟରେ ଅନୁସନ୍ଧାନ କାର୍ଯ୍ୟ ସଫଳ ଭାବରେ କରାଯାଇ ପାରିବ । ଏହିଭଳି ବିଭିନ୍ନ ଉପାୟରେ ଶାନ୍ତିପୂର୍ଣ୍ଣ ଭାବରେ ଅଣୁଶକ୍ତିର ବ୍ୟବହାର କରିବା ନିମନ୍ତେ ଭାରତ ଏକ ବ୍ୟାପକ କର୍ମସୂଚୀ ହାତକୁ ନେଇଛି ।

ପରମାଣୁକୁ ଆଧୁନିକ ବିଜ୍ଞାନର ସର୍ବଶ୍ରେଷ୍ଠ ଅବଦାନ ରୂପେ ଗ୍ରହଣ କରାଯାଇପାରେ । ବିଶ୍ୱର ସମସ୍ତ ରାଷ୍ଟ୍ର ଏହାର ଧ୍ୱଂସକାରୀ ଦିଗଟି ପ୍ରତି ସଚେତନ ହୋଇ କେବଳ ମାତ୍ର ମାନବସମାଜ ଉନ୍ନତି ନିମନ୍ତେ ଏହାର ବ୍ୟବହାର କଲେ, ସମଗ୍ର ବିଶ୍ୱର ରୂପ ବଦଳିଯିବ । ଭାରତ ଏହି ଦିଗରେ ପ୍ରଥମ ପଦକ୍ଷେପ ଗ୍ରହଣ କରିଛି । ଅନ୍ୟମାନେ ସେହି ପଥ ଗ୍ରହଣ କରି-ନେଲେ ପୀଡ଼ିତ ଏବଂ ଆତଙ୍କିତ ମାନବସମାଜ ଆଶ୍ୱସ୍ତି ଲାଭ କରିବ । ଧ୍ୱଂସ ବଦଳରେ ଶାନ୍ତି ହିଁ ହେବ ଏହାର ଧ୍ୟେୟ । ସବୁ ରାଷ୍ଟ୍ରର ହୃଦୟରେ ଏହି ମହତ୍ ଚିନ୍ତା ଅନୁପ୍ରବେଶ କରୁ, ଏହାହିଁ କାମନା ।

## ବିଜ୍ଞାନ ଓ ସାହିତ୍ୟ

ଯେକୌଣସି ବିଷୟରେ ବିଶେଷ ଜ୍ଞାନକୁ ବିଜ୍ଞାନ କୁହାଯାଇଥାଏ । ଜ୍ଞାନର ସୁସମ୍ବଦ୍ଧ ଓ ଶୃଙ୍ଖଳିତ ରୂପ ହିଁ ଏଥିରେ ପ୍ରକାଶିତ ହୋଇଥାଏ । ଏ ଦୃଷ୍ଟିରୁ ଦେଖିବାକୁ ଗଲେ ଆମର କଳା, ଦର୍ଶନ, ମନସ୍ତତ୍ତ୍ୱ, ଇତିହାସ ପ୍ରଭୃତି ଯାହା ସାଧାରଣ ଦୃଷ୍ଟିରେ ବିଜ୍ଞାନର ଅନ୍ତର୍ଭୁକ୍ତ ନୁହେଁ, ସେ ସବୁ ମଧ୍ୟ ବିଜ୍ଞାନର ଅନ୍ତର୍ଗତ । ମାତ୍ର ବର୍ତ୍ତମାନ କେବଳ ଏହା ବୈଷୟିକ ଜ୍ଞାନ ମଧ୍ୟରେ ସୀମାବଦ୍ଧ ଏବଂ ଏହାର ସାହାଯ୍ୟରେ ବର୍ତ୍ତମାନ ଆମେ ସଭ୍ୟତାର ଉଚ୍ଚତମ ସୋପାନରେ ଆରୋହଣ କରିବାପାଇଁ ସତତ ପ୍ରଯତ୍ନଶୀଳ ।

ଦୁଇଟି ଉପାୟରେ 'ସାହିତ୍ୟ' ଶବ୍ଦର ବ୍ୟୁତ୍ପତ୍ତି କରାଯାଇଛି । ପ୍ରଥମଟି ହେଉଛି, 'ହିତ ସହିତ ବର୍ତ୍ତମାନ' ଅର୍ଥାତ୍ ମାନବଜାତିର ହିତକାମନା କରିବା ଯାହାର ଲକ୍ଷ୍ୟ । ଦ୍ୱିତୀୟ

ହେଲା ସାହିତ୍ୟର ଭାବ, ଅର୍ଥାତ୍ ସୁଖରେ, ଦୁଃଖରେ, ଆନନ୍ଦରେ, ବିଷାଦରେ, ଜୀବନରେ ଉତ୍ଥାନ ଏବଂ ପତନରେ ଯାହା ମନୁଷ୍ୟଙ୍କୁ ସାହଚର୍ଯ୍ୟ ପ୍ରଦାନ କରିଥାଏ, ତାହା ହିଁ ସାହିତ୍ୟ । ଲକ୍ଷ୍ୟଦୃଷ୍ଟିରୁ ବିଚାର କରିବାକୁ ଗଲେ, ବିଜ୍ଞାନ ଓ ସାହିତ୍ୟ ମଧ୍ୟରେ ବିଶେଷ କୌଣସି ପାର୍ଥକ୍ୟ ନାହିଁ ।

ବିଂଶ ଶତାବ୍ଦୀରେ ମାନବଜାତିର ବିକାଶ ସହିତ ବିଜ୍ଞାନ ଓତପ୍ରୋତ ଭାବରେ ଜଡ଼ିତ । ଆମର ଯାବତୀୟ ସୁଖ, ସମୃଦ୍ଧି, ଭୋଗ ବିଳାସ ଏବଂ ଜୀବନଯାତ୍ରାର ସମସ୍ତ ପ୍ରକାର ସ୍ୱାଚ୍ଛନ୍ଦ୍ୟ ଏହି ବିଜ୍ଞାନ କଲ୍ୟାଣରୁ ହିଁ ସମ୍ଭବପର ହୋଇପାରିଛି । ବିଜ୍ଞାନ ଆମକୁ ଅନ୍ନ, ବସ୍ତ୍ର, ରୋଗକୁ ଔଷଧ—ବଞ୍ଚିବାର ନ୍ୟୂନତମ ପ୍ରୟୋଜନ ଯୋଗାଇଦେଉଛି । ବିଜ୍ଞାନ ହେଉଛି ପ୍ରତ୍ୟେକ ପରିବାରର ଅନୁଗତ ଭୃତ୍ୟ । ଏ ଦୃଷ୍ଟିରୁ ବିଚାର କଲେ, ଜୀବନ ସହିତ ସାହିତ୍ୟର କୌଣସି ପ୍ରତ୍ୟକ୍ଷ ସମ୍ବନ୍ଧ ନାହିଁ । ଜୀବନ ପାଇଁ ସାହିତ୍ୟର ଯାହା ଅବଦାନ, ସେ ସବୁ ଏକାନ୍ତ ଭାବରେ ପରୋକ୍ଷ ରୂପରେ ହିଁ ଆସୁଛି । ତେଣୁ ଜୀବନରେ ଆଜି ବିଜ୍ଞାନ ଅପରିହାର୍ଯ୍ୟ ହୋଇଉଠି ସାହିତ୍ୟକୁ ଅନ୍ତରାଳକୁ ଠେଲିଦେଇଛି ।

ବିଜ୍ଞାନ କଳ୍ପ ମଣିଷର ଯେତିକି ଅନୁଗତ ଭୃତ୍ୟ ଭାବରେ କାର୍ଯ୍ୟ କରୁଛି ତାହା ଅପେକ୍ଷା ଅଧିକ ଜଣେ ଖିଆଲି ପ୍ରଭୁ ରୂପରେ ଆତ୍ମପ୍ରକାଶ କରିଛି । ବିଶେଷକରି ଭାରତ-ବର୍ଷରେ ଏହା ଆମକୁ ବ୍ୟକ୍ତିକେନ୍ଦ୍ରିକ କରି ଆମର ପାରମ୍ପରିକ ଈଶ୍ୱରବିଶ୍ୱାସ ମୂଳରେ ସଜୋର କୁଠାରାଘାତ କରିଛି । ସ୍ୱାର୍ଥପରତାର ବିଶେଷ ଉଦ୍‌ଭବ ହୋଇଥିବାରୁ ମଣିଷ ମଣିଷ ମଧ୍ୟରେ ସ୍ନେହ, ସୌହାର୍ଦ୍ଦ୍ୟ ଲୋପ କରିବା ହିଂସା, ଦ୍ୱେଷ, ଛଳନା ଇତ୍ୟାଦିର ସୃଷ୍ଟି କରାଇଛି । ବିଜ୍ଞାନଦ୍ୱାରା ଆବିଷ୍କୃତ ହୋଇଛି ଯେଉଁ ଭୀଷଣ ମାରାତ୍ମକ ଅସ୍ତ୍ରଶସ୍ତ୍ର, ତଦ୍ୱାରା ଆଜି ମାନବଜାତିର ସ୍ଥିତି ବିପନ୍ନ ହୋଇଛି । ଗ୍ରେଟ ପିଲ ହାତରେ ଏକ ମାରାତ୍ମକ ଅସ୍ତ୍ର ପଡ଼ିଲେ ଯାହା ହୁଏ, ଆଜି ବିଶ୍ୱର କେତୋଟି ଆଧୁନିକ ରାଷ୍ଟ୍ର ଏହିସବୁ ଭୟଙ୍କର ଅସ୍ତ୍ରଶସ୍ତ୍ର ଦ୍ୱାରା ସମଗ୍ର ମାନବଜାତି ମନରେ ତ୍ରାସ ସଞ୍ଚାର କରାଇ-ଦେଇଛନ୍ତି ।

ବିଜ୍ଞାନ ଆମର ଜୀବନକୁ ଗତି ଆଣିଦେଇଛି, ଏହା ସତ୍ୟ । ମାତ୍ର ଆମ ମନର ସ୍ୱାଭାବିକ 'ଯତି'ଟି ଏହା ଦ୍ୱାରା ବିରତିରେ ଲୁପ୍ତ ହୋଇଛି । ଜୀବନରେ ଛନ୍ଦ ହଜିଯାଇଛି ଯେମିତି । ବିଜ୍ଞାନ ଆମକୁ 'ବେଗ' ଦେଇଛି, ମାତ୍ର ମନର 'ଆବେଗ' ଆତ୍ମଗୋପନ କରିଛି । ପ୍ରତ୍ୟେକ ମଣିଷ ଆଜି ଅପରକୁ ସନ୍ଦେହ କରୁଛି । କେତେବେଳେ କ'ଣ ଘଟିଯିବ, ଏହି ଆତଙ୍କରେ ତା'ର ରାତ୍ରିର ନିଦ୍ରା, ଦିବସର ବିଶ୍ରାମ ଆଜି ବିଘ୍ନିତ ହୋଇଛି । ଯେକୌଣସି ମୁହୂର୍ତ୍ତରେ ମାନବସଭ୍ୟତା ପୃଥିବୀପୃଷ୍ଠରୁ ଲୋପ ପାଇଯାଇପାରେ, ଏହି ବିଭୀଷିକା ମଣିଷ ମନରୁ ଶାନ୍ତି ନାମକ ପଦାର୍ଥକୁ ବିଦାୟ ଦେଇଅଛି । ଦିନେ ଯାହା 'କଲ୍ୟାଣକାରୀ' ରୂପରେ ଆମ ପାଖକୁ ଆସିଥିଲା, ଆଜି ତାହାର 'ବିନାଶକାରୀ' ରୂପ ଆମକୁ ପ୍ରତିନିୟତ ବ୍ୟସ୍ତ ବିବ୍ରତ କରୁଛି । ଏସବୁରେ ଆମର ଦାୟିତ୍ୱ କେତେ,

ଆମର ଭୂମିକା କ'ଣ, ସେ ତ ପଛର କଥା; ମାତ୍ର ଅବସ୍ଥା ଯାହା ସେଥିରେ ଆମର ନିଶ୍ଚିନ୍ତ ହୋଇ ରହିପାରିବାର ଉପାୟ ନାହିଁ ।

ବିଜ୍ଞାନର ଦୁର୍ବଳତାହିଁ ସାହିତ୍ୟର ଶକ୍ତି । ଯେଉଁଠି ବିଜ୍ଞାନ ଅସଫଳ ସେହି କ୍ଷେତ୍ରରେ ସାହିତ୍ୟର ସଫଳତା ଲକ୍ଷଣୀୟ । କାର୍ଯ୍ୟକାରଣ ଅନୁସନ୍ଧାନର ଚୂଡ଼ାନ୍ତ କ୍ଷେତ୍ରରେ ପହଞ୍ଚି ଆଜି ସୁଦ୍ଧା କେଉଁ ବୈଜ୍ଞାନିକ କହିପାରିବେ—ଫୁଲ କାହିଁକି ଫୁଟେ, ପକ୍ଷୀଟି ମନର ଆବେଗରେ କାହିଁକି ଗୀତ ଗାଇଉଠେ ? ପବନ କାହିଁକି ବହେ କିମ୍ବା ବିଶ୍ୱ-ସୃଷ୍ଟିରେ ଏହିଭଳି ଅଜସ୍ର କ୍ରିୟା କାହିଁକି ହୁଏ ? ବିଜ୍ଞାନର ଚରମ ଉନ୍ନତି ଏପର୍ଯ୍ୟନ୍ତ ସୁଦ୍ଧା ପ୍ରକୃତି ଉପରେ ନିଜର ଏକାଧିପତ୍ୟ ବିସ୍ତାର କରିପାରି ନାହିଁ । ପ୍ରାକୃତିକ ଦୁର୍ଯୋଗରୁ ମନୁଷ୍ୟ ମାନବଜାତିକୁ ପୂର୍ଣ୍ଣରୂପେ ରକ୍ଷା କରିପାରୁନାହିଁ । ଗତି ତା' ମନରେ ଯେଉଁ ଅବସାଦ ଆଣିଦେଇଛି, ତହିଁରୁ ତାକୁ ମୁକ୍ତ ଦେଇପାରୁ ନାହିଁ । ସାହିତ୍ୟର ପ୍ରୟୋଜନ ଏହି କ୍ଷେତ୍ରରେ ।

ସାହିତ୍ୟକୁ ସତ୍ୟ, ଶିବ ଏବଂ ସୁନ୍ଦରର ପ୍ରତୀକ ବୋଲି ଗ୍ରହଣ କରିନିଆଯାଇଛି । ସେ ସତ୍ୟର ପ୍ରତିଫଳନ କରେ, ଶିବକୁ ଆରାଧନା କରେ ଏବଂ ସୁନ୍ଦରର ଆବାହନ କରେ । ସାହିତ୍ୟ ଭିତରେ ମଣିଷ ନିଜକୁ ଦେଖେ । ନିଜର ଅଜସ୍ର ସୁଖ-ଦୁଃଖର ବହୁ ବିଚିତ୍ର ରୂପ ତା' ମନକୁ 'ବିରେଚନ' ପଦ୍ଧତିରେ ଦୁଃଖ-ଯନ୍ତ୍ରଣାର ଅନୁଭବକୁ ଦୂର କରିଦିଏ । ସେ ଜୀବନର ଯାତ୍ରାପଥରେ ନିଜକୁ ନିଃସଙ୍ଗ ଓ ଏକାକୀ ମନେକରେ ନାହିଁ । ନୂତନ ସାହସ, ଅଭିନବ ଉତ୍ସାହ ତାକୁ ପ୍ରେରିରହିଥାନ୍ତି । ତେଣୁ ଏକ ଅପୂର୍ବ ପ୍ରଶାନ୍ତିରେ ତା'ର ମନ ପୂର୍ଣ୍ଣ ହୋଇଯାଏ । ନିଜ କ୍ଷେତ୍ରରେ ବିଜ୍ଞାନ ସୁଦ୍ଧା ସତ୍ୟର ଅନୁସନ୍ଧାନ କରେ । ମାତ୍ର 'ଶିବ' ଓ 'ସୁନ୍ଦର'ର ପ୍ରତିଷ୍ଠା ତା'ର ଲକ୍ଷ୍ୟ ହେଲେହେଁ ସର୍ବଦା ଏଥିରେ ସେ ସଫଳତା ପାଇପାରେ ନାହିଁ । ତେଣୁ ଆମେ ବିଜ୍ଞାନର ଦୁର୍ବଳତାରୁ ହିଁ ସାହିତ୍ୟର ଶକ୍ତି ସଂଗୃହୀତ ବୋଲି ନିଶ୍ଚିତ ଭାବରେ କହିପାରିବା ।

ସାହିତ୍ୟର ଯେ ଧ୍ୱଂସାତ୍ମକ ଦିଗ ନାହିଁ, ଏହା କୁହାଯାଉନାହିଁ । ତରଳ ସାହିତ୍ୟ ସାମାଜିକ ଜୀବନକୁ ପଙ୍ଗୁ ଏବଂ ଅଥର୍ବ କରିଦେବା ନିମନ୍ତେ ପର୍ଯ୍ୟାପ୍ତ । ବିଜ୍ଞାନ ଭଳି ସାହିତ୍ୟ ମଧ୍ୟ ଆଦର୍ଶବାଦୀ ମହତ୍ ଲକ୍ଷ୍ୟ ଦ୍ୱାରା ପରିଚାଳିତ । ମାତ୍ର କେତେକ କ୍ଷେତ୍ରରେ ଏହା ଆଦର୍ଶ-ଭ୍ରଷ୍ଟ ନୀତିହୀନ ବ୍ୟକ୍ତିଙ୍କ ହାତରେ ଅତ୍ୟନ୍ତ ଭୟଙ୍କର ରୂପ ଧାରଣ କରେ । ଅଶ୍ଳୀଳତା, ନୀତିହୀନତା, ସ୍ୱାର୍ଥପରତା, ବ୍ୟକ୍ତିକେନ୍ଦ୍ରିକତାର ପ୍ରସାର ଘଟାଇ ତାହା ସାମାଜିକ ଜୀବନକୁ ବ୍ୟତିବ୍ୟସ୍ତ କରିଦିଏ । ବିଜ୍ଞାନର ଅସ୍ତ୍ର କେତୋଟି ଜୀବନ ନଷ୍ଟ କରିଦିଏ, ମାତ୍ର ସାହିତ୍ୟର ରୁଦ୍ର ରୂପ ଗୋଟିଏ ଜାତିର ସଭ୍ୟତା ଏବଂ ସଂସ୍କୃତିକୁ ସବୁଦିନପାଇଁ ଭୂପୃଷ୍ଠରୁ ଲୋପକରିଦିଏ ।

ତେବେ ତୁଳନାତ୍ମକ ଭାବରେ ଦେଖିଲେ, ଆମେ ସାହିତ୍ୟର ମଙ୍ଗଳମୟ ରୂପଟିକୁ ହିଁ ସ୍ପଷ୍ଟ ଦେଖିପାରିବା । ବିଜ୍ଞାନ ସୃଷ୍ଟ ଅସ୍ଥିରତା, ଅସହାୟତା ଇତ୍ୟାଦି ଦୂର କରି ଏକ

ସୁବ୍ୟବସ୍ଥିତ ସାମାଜିକ ଜୀବନ ପ୍ରତିଷ୍ଠାରେ ସାହିତ୍ୟର ଭୂମିକା ଅତୁଳନୀୟ । ବିଜ୍ଞାନକୁ ମାନବ-କଲ୍ୟାଣରେ ଲଗାଯାଇପାରିଲେ ମାନବଜାତିର ସାମୂହିକ ଉନ୍ନତି ହେବାର ସମ୍ଭାବନା । ସାହିତ୍ୟ ସର୍ବଦା ମାନବଜାତିର ହିତଚିନ୍ତାରେ ନିମଗ୍ନ । ତେଣୁ ଉଭୟର ସଦ୍ଭାବ ସ୍ଥାପନରେ ହିଁ ମାନବ-ସଭ୍ୟତାର ସାର୍ବିକ ଉନ୍ନତି ସମ୍ଭବ ।

# ବିଜ୍ଞାନ ଓ ଧର୍ମବିଶ୍ୱାସ

ବିଶେଷ ଜ୍ଞାନ ସାହାଯ୍ୟରେ 'ଶକ୍ତି'ର ଅନୁସନ୍ଧାନ ଏବଂ ତାକୁ ମାନବଜାତିର ମଙ୍ଗଳ ନିମନ୍ତେ ବ୍ୟବହାର କରିବା ହେଉଛି 'ବିଜ୍ଞାନ'ର ପ୍ରକୃତ ଲକ୍ଷ୍ୟ । ଯାହା ସମାଜକୁ 'ଧାରଣ' କରେ, ନୀତି ନିୟମର ଶୃଙ୍ଖଳା ମଧ୍ୟରେ ସମାଜ-ଜୀବନକୁ ବିପଥଗାମୀ ହେବାକୁ ଦିଏ ନାହିଁ, ତାହାହିଁ ଧର୍ମ । ପ୍ରଥମରୁ କହିରଖିବା ଆବଶ୍ୟକ ଯେ, ବିଜ୍ଞାନ କିମ୍ବା ଧର୍ମ ପରସ୍ପରର ପରିପନ୍ଥୀ ନୁହନ୍ତି । ଉଭୟଙ୍କ ଲକ୍ଷ୍ୟ ମଧ୍ୟରେ ବିଶେଷ କୌଣସି ପାର୍ଥକ୍ୟ ନାହିଁ । ତେଣୁ 'ଧର୍ମବିଶ୍ୱାସ'କୁ ବିଜ୍ଞାନର ଶତ୍ରୁ ବୋଲି ମନେକରିବାର କୌଣସି କାରଣ ନାହିଁ ।

ବିଜ୍ଞାନର ନବନବ ଉଦ୍ଭାବନ, ମାନବର ଶକ୍ତି ଓ ସାମର୍ଥ୍ୟକୁ ବିଶେଷ ଭାବରେ ବୃଦ୍ଧି କରିଛି । ବିଜ୍ଞାନର ସହାୟତାରେ ମଣିଷ ଅକ୍ଳେଶରେ ଆକାଶରେ ଉଡ଼ୁଛି, ସମୁଦ୍ରରେ ବୁଡ଼ୁଛି, ଚନ୍ଦ୍ରପୃଷ୍ଠରେ ପାଦଚାଳନ କରି ନିରାପଦରେ ଫେରିଆସୁଛି, ଦୁର୍ଗମ ପର୍ବତର ଉଚ୍ଚତମ ଶିଖରରେ ସଗର୍ବରେ ଦଣ୍ଡାୟମାନ ହୋଇପାରୁଛି । ଯାହାକୁ ସେ ଇତିପୂର୍ବରୁ ଈଶ୍ୱରଙ୍କ ରାଜ୍ୟ ବୋଲି ସମ୍ମାନ କରି ଭୟରେ ଦୂରେଇ ରହୁଥିଲା, ସେଠାରେ ପହଞ୍ଚି ସେ ଦେଖୁଛି ଯେ ଈଶ୍ୱର ଇତ୍ୟାଦି କେହି ନାହାନ୍ତି, ସବୁ ଶୂନ୍ୟ । ଫଳରେ ନିଜ ଶକ୍ତି ଉପରେ ଅହଙ୍କାର ତା'ର ବଢ଼ିଯାଉଛି । ଏହା ହିଁ ତା'ର ସର୍ବନାଶକୁ ନିମନ୍ତ୍ରଣ କରି ଆଣୁଛି—ଏହା କହିବା ବାହୁଲ୍ୟ ମାତ୍ର ।

ଧର୍ମ ଅର୍ଥ କେବଳ ଧୂପ ଦୀପ, ପୁଷ୍ପ ଚନ୍ଦନ ଇତ୍ୟାଦିର ଆଡ଼ମ୍ବର କିମ୍ବା ବିଗ୍ରହର ଉପାସନା ନୁହେଁ । ଧର୍ମ ହେଉଛି ଏକ 'ଆସ୍ଥା', ଏକ 'ବିଶ୍ୱାସ', ଯାହା ମଣିଷଜୀବନକୁ ଏକ ନିର୍ଦ୍ଦିଷ୍ଟ ଧାରାରେ ଆଗେଇନିଏ । ଧର୍ମକୁ ମାନବ ସଂସ୍କୃତିର ଜମୁଆଲି ବୋଲି କୁହାଯାଇପାରେ, ଯାହା ଅମଡ଼ା ମାଡ଼ିଯାଉଥିବା ନାଗରିକକୁ ଉପଯୁକ୍ତ ରାସ୍ତାରେ ଚାଳିବା ନିମନ୍ତେ ସାହାଯ୍ୟ କରେ । ଯେଉଁଠି ମଣିଷ ନିଜର ବିଚାର-ବୁଦ୍ଧିରେ କାର୍ଯ୍ୟକାରଣ ନିର୍ଦ୍ଦେଶ କରିପାରିନାହିଁ, ସେଠାରେ ସେ ଈଶ୍ୱରଙ୍କର କଳ୍ପନା କରିଛି । ସୃଷ୍ଟିରେ ତଥାପି ଅଜସ୍ର ଘଟଣା ଘଟୁଛି—ବିଜ୍ଞାନ ଯାହାକୁ ଯୁକ୍ତିଦ୍ୱାରା ବ୍ୟାଖ୍ୟା କରିପାରୁନାହିଁ । ଏହି କ୍ଷେତ୍ରରେ ହିଁ

ଏକ ଅଦୃଶ୍ୟ ସତ୍ତାର ଉପସ୍ଥିତି ସ୍ୱୀକୃତ ହେଉଛି, ଯାହାଙ୍କର ନିର୍ଦ୍ଦେଶରେ ଏ ସୃଷ୍ଟି ପରିଚାଳିତ ।

ଶକ୍ତି ଆଉ ସାମର୍ଥ୍ୟର ଅହଙ୍କାର ମଣିଷର ଏକ ସହଜାତ ପ୍ରବୃତ୍ତି । ଯେଉଁଠି ସେ ସୃଷ୍ଟିତତ୍ତ୍ୱର ମୂଳଟି ଖୋଜି ପାଇଯାଉଛି, ସେଠାରେ ତାହାର ଈଶ୍ୱରବିଶ୍ୱାସ ଦୁର୍ବଳ ହୋଇଯାଉଛି । ଆକାଶର ଜଳକୁ, ଭୂପୃଷ୍ଠର ଫଳକୁ ନିଜ ଇଚ୍ଛାରେ ନିୟନ୍ତ୍ରିତ କରିପାରିଲା ପରେ ସେ ଆଉ କ'ଣ ପାଇଁ ଈଶ୍ୱରଙ୍କର ଅନୁଗ୍ରହ ପ୍ରାର୍ଥନା କରିବ ? ଯେଉଁ ଭୟ ତା' ମନରେ ଏ ପର୍ଯ୍ୟନ୍ତ ଭକ୍ତିଭାବର ଉଦ୍ରେକ ଘଟାଉଥିଲା, ତାହା କମିଗଲା ପରେ ଈଶ୍ୱର-ବିଶ୍ୱାସ ଯେ ଅସ୍ପଷ୍ଟ ହୋଇଯିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ପରମସତ୍ତା-ବାଦୀମାନେ କହୁଛନ୍ତି, ଈଶ୍ୱର ସର୍ବଘଟରେ ବିଦ୍ୟମାନ ଏବଂ ସର୍ବଦା ତାଙ୍କଠାରେ ବିଶ୍ୱାସ ସ୍ଥାପନ ପ୍ରତ୍ୟେକ ମାନବର ଏକାନ୍ତ କର୍ତ୍ତବ୍ୟ । ମାତ୍ର ପରିବର୍ତ୍ତନବାଦୀମାନଙ୍କର ମତ ଯେ, ଆମ୍ଭେମାନେ ବର୍ତ୍ତମାନ ବିଜ୍ଞାନ ସାହାଯ୍ୟରେ ଶକ୍ତିର ମୂଳ ଉତ୍ସ ଅନୁସନ୍ଧାନ କରିବା ନିମନ୍ତେ ବ୍ରତୀ ହୋଇଛୁଁ । ନଦେଖି ନଶୁଣି ଆମେ କାହାରିକୁ ବିଶ୍ୱାସ କରିବୁ କାହିଁକି ? ପ୍ରକାରାନ୍ତରେ ଦେଖିବାକୁ ଗଲେ, ସେମାନେ ଧର୍ମର ଗୂଢ଼ତତ୍ତ୍ୱ ଅନୁସନ୍ଧାନରେ ହିଁ ଆତ୍ମନିୟୋଜନ କରିଛନ୍ତି ବୋଲି ସେମାନଙ୍କର ବିଶ୍ୱାସ ।

ଉଭୟ ପକ୍ଷର ନିଜ ନିଜ ସମର୍ଥନ ନିମନ୍ତେ ବହୁ ଯୁକ୍ତି ରହିଛି । ତାହା ଭିତରକୁ ଯାଇ, ସାଧାରଣ ଭାବରେ ବିଜ୍ଞାନ ଓ ଆଧ୍ୟାତ୍ମିକତାର ଭୂମିକା ସମ୍ପର୍କରେ ଚିନ୍ତା କରିବାକୁ ହେବ । ବର୍ତ୍ତମାନ ଦେଖାଯାଉଛି ଯେ, ଶକ୍ତିର ଆହରଣ ସମଗ୍ର ମାନବଜାତିକୁ ଧ୍ୱଂସକାରୀ ଅହଙ୍କାରରେ ପୂର୍ଣ୍ଣ କରିଦେଇଛି । ବିଜ୍ଞାନର ଅପବ୍ୟବହାର କରି ସେମାନେ ଆଜି ପରସ୍ପର ଉପରେ ଆଧିପତ୍ୟ ବିସ୍ତାର କରିବା ନିମନ୍ତେ ପ୍ରସ୍ତୁତ । କିଏ କାହାଠାରୁ ଅଧିକ ଶକ୍ତିଶାଳୀ, ଏହା ପ୍ରଦର୍ଶନ କରିବାର ସତେ ଯେପରି ଏକ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇ-ଯାଇଛି । ଏହି ପ୍ରବୃତ୍ତିଟି ମାନବଜାତିର ବିକାଶ ପଥରେ ବାଧକ ସ୍ୱରୂପ । ବିଜ୍ଞାନ ମଣିଷ ହାତରେ ଯେଉଁ ମାରାତ୍ମକ ଅସ୍ତ୍ରସବୁ ଦେଇଛି, ସେଥିରୁ ଗୋଟିଏ ମାତ୍ର ପ୍ରୟୋଗ କଲେ ଏ ସୃଷ୍ଟି ନିମିଷକରେ ଧ୍ୱଂସସ୍ତୂପରେ ପରିଣତ ହେବ; ଆଉ 'ରୁଦ୍ର'ଙ୍କର ପ୍ରଳୟ ନିର୍ଦ୍ଦେଶକୁ ଅପେକ୍ଷା କରିବାକୁ ହେବ ନାହିଁ । ତେଣୁ ସମଗ୍ର ବିଶ୍ୱରେ ଆଜି ପରସ୍ପର ପ୍ରତି ସନ୍ଦେହ, ଅବିଶ୍ୱାସ ସୃଷ୍ଟି ହୋଇ ଏକ ଆତଙ୍କର ବାତାବରଣ ଆତ୍ମପ୍ରକାଶ କରିଛି । ଏଥିରୁ କିଭଳି ରକ୍ଷା ମିଳିବ ? କିଏ ତା ମନର ହୃତ ଶାନ୍ତିକୁ ଫେରାଇ ଆଣି ଦେଇପାରିବ ? ପାରସ୍ପରିକ ସ୍ନେହ, ସହାନୁଭୂତି କିଭଳି ପୁନର୍ବାର ତା'ର ଜୀବନପଥରେ ଆତ୍ମପ୍ରକାଶ କରିବ ?

ହୁଏତ ଏହି ସମସ୍ୟା ତାଙ୍କରି ଦ୍ୱାରା ସୃଷ୍ଟି, ଯାହାଙ୍କୁ ଆମେ ଈଶ୍ୱର ବୋଲି କହୁଛୁଁ । ମାନବଜାତିକୁ ବିପଦଆଡ଼କୁ ଠେଲିଦେଇ ସେ ହୁଏତ ତା'ର ଶକ୍ତି ସାମର୍ଥ୍ୟର ବୁଦ୍ଧି ଆଉ କୌଶଳର ପରୀକ୍ଷା କରୁଛନ୍ତି । ତେଣୁ ଯାହା ଦେଖାଯାଉଛି ଯେତେ ଶକ୍ତିଧର ହୋଇଥିଲେ ସୁଦ୍ଧା ସୃଷ୍ଟିର ସମସ୍ତ ରହସ୍ୟ ଭେଦକରି ସର୍ବମୟତା ଲାଭ କରିବା ମନୁଷ୍ୟ

ଶକ୍ତିର ବଢ଼ିଭୂତ । ତେଣୁ ତାକୁ ଭୂଲି ଭୂଲି ପୁଣି ଥରେ ଈଶ୍ୱରଙ୍କ ନିକଟକୁ ଫେରିଆସିବାକୁ ହିଁ ପଡ଼ିବ ।

ବର୍ତ୍ତମାନ ସାମାଜିକ ଜୀବନରେ ଯେଉଁ ଅସ୍ଥିରତା, ସନ୍ଦେହ, ଅବିଶ୍ୱାସ ଇତ୍ୟାଦି ଦେଖାଦେଇଛି, ଅନ୍ନ ଏବଂ ବସ୍ତ୍ରର ପ୍ରାଚୁର୍ଯ୍ୟ ମଧ୍ୟରେ ରହି ଭୋଗବିଳାସର ବାହୁଲ୍ୟ ମଧ୍ୟରେ ଥାଇ ମଧ୍ୟ ମଣିଷ ଯେଉଁଭଳି ଅଶାନ୍ତ ଅସ୍ଥିର ଜୀବନଯାପନ କରୁଛି, କଥାକଥାକେ ହିଂସା ଦ୍ୱେଷ ଇତ୍ୟାଦିର ପ୍ରକାଶ ଘଟି ଯେଉଁଭଳି ପ୍ରଳୟ ସୃଷ୍ଟି କରୁଛି, ସେଥିପୁ ତାକୁ ବିଶ୍ୱାସ କରିବାକୁ ପଡ଼ୁଛି ଯେ, ଏ ସମସ୍ତ ପରିସ୍ଥିତିରୁ ମୁକ୍ତି ପାଇବାକୁ ହେଲେ ତାକୁ ଈଶ୍ୱରଙ୍କ ଉପରେହିଁ ନିର୍ଭର କରିବାକୁ ପଡ଼ିବ । ତାଙ୍କର ଉପରେ ଅଖଣ୍ଡ ଆସ୍ଥା ସ୍ଥାପନକରି ପାରିଲେହିଁ ମାନସିକ ଶାନ୍ତି ମିଳିବ । ପ୍ରତିଦ୍ୱନ୍ଦ୍ୱିତାର ପ୍ରଲୋଭନରୁ ମଣିଷ ମୁକ୍ତ ପାଇପାରିବ । ଧୈର୍ଯ୍ୟ ଆଉ ସହନଶୀଳତା ବୃଦ୍ଧିପାଇବ ।

ପ୍ରାଚୀନ ସମାଜରେ ଅଜ୍ଞତା ଥିଲା, ତଥାପି ଦୃଢ଼ ଈଶ୍ୱରବିଶ୍ୱାସ ହିଁ ସେ କାଳର ଜୀବନକୁ ଶାନ୍ତିପୂର୍ଣ୍ଣ କରିପାରିଥିଲା । ବର୍ତ୍ତମାନ ତେଣୁ ବିଜ୍ଞାନର ଉତ୍ପାତରୁ ରକ୍ଷାପାଇବାକୁ ହେଲେ, ଜୀବନର ସ୍ଥିରତା ଫେରାଇ ଆଣିବାକୁ ହେଲେ, ଆମକୁ ଗଭୀର ଆଧ୍ୟାତ୍ମିକତା ମଧ୍ୟରେ ପ୍ରଶାନ୍ତିର ଅନୁସନ୍ଧାନ କରିବାକୁ ପଡ଼ିବ ।

ବର୍ତ୍ତମାନ ପୃଥିବୀରେ ସର୍ବତ୍ର ପ୍ରାୟ ଧର୍ମବିଶ୍ୱାସ ଶିଥିଳ ହୋଇଯାଉଛି । ବସ୍ତୁ-ବିଜ୍ଞାନର ପ୍ରଭାବ ଏପରି ହେଲାଣି ଯେ, ଲୋକେ କେବଳ ବିଜ୍ଞାନ ଆଶ୍ରୟରେ ହିଁ ଉନ୍ନତିର ମାର୍ଗ ଉଦ୍‌ଭାସିତ ବୋଲି ମନେକରୁଛନ୍ତି । ଏଥିରେ କିଛି ସତ୍ୟତା ଅବଶ୍ୟ ରହିଛି । କୃଷି ଏବଂ ଶିଳ୍ପ କ୍ଷେତ୍ରରେ ବିଜ୍ଞାନ ଚମତ୍କାର ଫଳ ଦେଖାଇଛି । ମାତ୍ର ଈଶ୍ୱରବିଶ୍ୱାସ ଓ ନୈତିକତାରେ ବିଶ୍ୱାସ ନଥାଇ କେବଳ ମାତ୍ର ବିଜ୍ଞାନକୁ ଆଶ୍ରୟ କଲେ ମନୁଷ୍ୟ ଭୌତିକ ସୁଖ ଓ ସମ୍ପଦ ଲାଭ କରିପାରେ, କିନ୍ତୁ ଧର୍ମବିଶ୍ୱାସ ଓ ନୈତିକ ଚରିତ୍ର ବିନା ବିଜ୍ଞାନର ଅପପ୍ରୟୋଗ ମନୁଷ୍ୟର ଧ୍ୱଂସର କାରଣ ହୋଇପାରେ । ବିଜ୍ଞାନବଳରେ ଶକ୍ତିଶାଳୀ କେତେକ ଦେଶ, ଅନ୍ୟ ଦୁର୍ବଳ ରାଷ୍ଟ୍ର ଉପରେ ପ୍ରଭୁତ୍ୱ ବିସ୍ତାର କରି ଯେଉଁଭଳି ସେମାନଙ୍କୁ ଶୋଷଣ କରିଚାଲିଛନ୍ତି, ସେଥିରୁ ପୂର୍ବୋକ୍ତ ମତର ସତ୍ୟତା ଜଣାଯାଏ । ତେଣୁ ନୈତିକତା-ଶୂନ୍ୟ ବିଜ୍ଞାନଶକ୍ତି ଦେଶ ବା ଜାତିର କୌଣସି ହିତ ସାଧନ କରିପାରେ ନାହିଁ । ଆପାତତଃ ସେଥିରୁ ଯେଉଁ ଫଳ ଲାଭ କରାଯାଏ ତାହାର ପରିଣାମ ହୁଏ ବିଷମୟ ।

ବିଜ୍ଞାନ ହିଂସା ଅଡ଼କୁହିଁ ପ୍ରେରଣା ଦେଉଛି । ବିଲାତର ଦାର୍ଶନିକ ଜର୍ଜ ନୋଏଲ୍ ବେକର୍ ୧୯୭୯ ମସିହା ସେପ୍‌ଟେମ୍ବର ୨୧ ତାରିଖରେ ଘୋଷଣା କରିଥିଲେ ଯେ ବର୍ତ୍ତମାନ କେତେକ ଦେଶ ଯେତେ ପରମାଣୁ ତଥା ଉଦ୍‌ଜାନ ବୋମା ପ୍ରସ୍ତୁତ କରି ରଖିଲେଣି, ଏକ ସମୟରେ ସେ ସବୁର ପ୍ରୟୋଗ କଲେ ୧୯ ହଜାର କୋଟି ମନୁଷ୍ୟ ଓ ସମଗ୍ର ଜୀବଜଗତ ସମ୍ପୂର୍ଣ୍ଣ ଧ୍ୱଂସ ହୋଇଯିବ (ବର୍ତ୍ତମାନ ପୃଥିବୀର ଲୋକସଂଖ୍ୟା ୪୪୦ କୋଟି) । ପୃଥିବୀର

ଶିଳ୍ପ କ୍ଷେତ୍ରରେ ଯେତିକି ଅର୍ଥ ବିନିଯୋଗ ହେଉଛି ତାହାର ତିନି ଭାଗରୁ ଦୁଇଭାଗ କେବଳ ଅସ୍ତ୍ରଶସ୍ତ୍ର ନିର୍ମାଣ କ୍ଷେତ୍ରରେ ବ୍ୟୟିତ ହେଉଛି । ମଣିଷ ନିଜେ ନିଜକୁ ଧ୍ୱଂସ କରିବା ନିମନ୍ତେ ତାହାର ବିଦ୍ୟା, ବୁଦ୍ଧି ଓ ଶକ୍ତିକୁ ବ୍ୟବହାର କରୁଛି ।

ଆଧ୍ୟାତ୍ମିକତାର କ୍ରମିକ ଲୋପ ଏବଂ ବିଜ୍ଞାନର ପ୍ରସାର ଦେଶରେ ନୈତିକତାହୀନ, ଚୋରି, ଡକାୟତି, ଦୁର୍ନୀତି ଓ ଶୋଷଣରେ ବୃଦ୍ଧି ଘଟାଇଛି । ଚରିତ୍ର କହିଲେ ପୂର୍ବେ ଯାହା ବୁଝି ଯାଉଥିଲା, ବର୍ତ୍ତମାନ ତାହାର ସଂଜ୍ଞା ପରିବର୍ତ୍ତିତ ହୋଇପଲାଣି । ଏ ପରିସ୍ଥିତିରେ ଆମେ ବିଜ୍ଞାନ ପ୍ରତି ଆସକ୍ତ ହେବା କିମ୍ବା ଧର୍ମ ଆଡ଼କୁ ମନଦେବା, ତାହା ଆମେ ନିଜେ ହିଁ ଠିକ୍ କରିବା ଉଚିତ ।

## ବିଜ୍ଞାନ ଓ ଶାନ୍ତି

ଜ୍ଞାନ ରାଜ୍ୟର ଦୁର୍ଗମ ଅଞ୍ଚଳରେ ନିରବଚ୍ଛିନ୍ନ ପରିଭ୍ରମଣ କରି ମନୁଷ୍ୟ ପ୍ରତିନିୟତ ତା'ର ଶକ୍ତି ବଢ଼ାଇଚାଲିଛି । ଶକ୍ତି ଅହଙ୍କାରର ଜନନୀ ହୋଇଥିବାରୁ ଆଜି ମଣିଷ ନିଜକୁ ସ୍ୱୟମ୍ଭୂ ବୋଲି ଭାବିବାର ଯଥେଷ୍ଟ ସୁଯୋଗ ପାଉଛି । ଶକ୍ତି ଅର୍ଜନ ନିମନ୍ତେ ପୁଣି ପରସ୍ପର ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଦେଖାଦେଇଛି । ଆଜିର ବିଶ୍ୱ କେବଳ ଶକ୍ତି ସଂଗ୍ରହର ଓ ପ୍ରଦର୍ଶନର ଏକ କ୍ଷେତ୍ରରେ ପରିଣତ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ରାଜା ରାଜା ମଧ୍ୟରେ ଯୁଦ୍ଧ ହେଲେ ତାହାର କୁପରିଣାମ ଭୋଗନ୍ତି ନିରୀହ ସରଳ ପ୍ରଜାବୃନ୍ଦ । ଏ କ୍ଷେତ୍ରରେ ମଧ୍ୟ ଶକ୍ତି ପରୀକ୍ଷାର ଏହି ନଗ୍ନ ପ୍ରତିଦ୍ୱନ୍ଦ୍ୱିତା ସାଧାରଣ ଜୀବନକୁ ଆତଙ୍କିତ, ଭୀତ ଏବଂ ଅନିଶ୍ଚିତ କରିଦେଇଛି । ସମଗ୍ର ମାନବଜାତି ଆଜି ସଭ୍ୟତାର ଏକ ଭୟଙ୍କର ଖାତ ନିକଟରେ ଦଣ୍ଡାୟମାନ । ତାହାର ସ୍ଥିତି ପ୍ରତି ମୁହୂର୍ତ୍ତରେ ବିପନ୍ନ ହେଉଛି ଏବଂ ତା'ର ଜ୍ଞାତସାରରେ ସେ ଧ୍ୱଂସମୁଖକୁ ଆଗେଇ ଯାଉଛି ।

ବିଜ୍ଞାନହିଁ ମନୁଷ୍ୟ ସଭ୍ୟତାର ଏହି ସଙ୍କଟଜନକ ପରିସ୍ଥିତିର ସ୍ରଷ୍ଟା ବୋଲି କୁହାଯାଇ ପାରେ । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ଯେ, ବିଜ୍ଞାନ ମଣିଷର ଯେତିକି ଉପକାରୀ ବନ୍ଧୁ, ତତୋଧିକ ଭୟଙ୍କର ପ୍ରାଣଘାତକ ଶତ୍ରୁ । ଏହାକୁ ଭୃତ୍ୟ ଭାବରେ ନିଜ କାମରେ ଲଗାଯାଇପାରେ । ମାତ୍ର ସାମାନ୍ୟ ଅପବ୍ୟବହାରରେ ଏହା ଏକ ଭୟଙ୍କର ଅତ୍ୟାଚାରୀ ପ୍ରଭୁରେ ରୂପାନ୍ତରିତ ହୁଏ । ଆଜି ତାହାହିଁ ହୋଇଛି । ଦିନେ ଯେଉଁ ବିଜ୍ଞାନ ମାନବର ଅଶେଷ କଲ୍ୟାଣ ସାଧନ କରିବା ନିମନ୍ତେ ଅଭିପ୍ରେତ ଥିଲା, ଆଜି ତାହା ମାନବଜାତିକୁ ସମୂଳେ ବିନାଶ କରିବା ନିମନ୍ତେ ବଦ୍ଧପରିକର । ମଙ୍ଗଳ କାମନାର ସମସ୍ତ ପ୍ରଚେଷ୍ଟାକୁ ଅନ୍ତରାଳରେ ରଖି ଆଜି ତାହାର ବିଭୀଷିକାପ୍ରଦ ଜୁଗୁପ୍ସାବ୍ୟଞ୍ଜକ ଘାତକ ରୂପହିଁ ମାନବ

ଜାତି ସମ୍ମୁଖରେ ଦଣ୍ଡାୟମାନ । ବିଜ୍ଞାନ ବଳରେ ଯେଉଁ ଭୟଙ୍କର ଅସ୍ତ୍ରଶସ୍ତ୍ର ସବୁ ପ୍ରସ୍ତୁତ ହେଉଛି, ବିଶେଷକରି ପରମାଣୁ ଏବଂ ଉଦଜାନ ଶକ୍ତିର ଅପବ୍ୟବହାର କରି ମାନବଜାତି ଯେଉଁ ବିଶେଷ ମାରଣାସ୍ତ୍ରମାନ ତିଆରି କରୁଛି, ତାହାର ବିନାଶକ୍ଷମ ଶକ୍ତିର ପରିଚୟ ଆମେ ଗତ ମହାଯୁଦ୍ଧରେ ଏବଂ ସମ୍ପ୍ରତି ଘଟିଯାଇଥିବା ଅନ୍ୟାନ୍ୟ ଯୁଦ୍ଧରେ ମଧ୍ୟ କିଛି କିଛି ଦେଖିଛୁଁ । ତେଣୁ ମନରେ ସନ୍ଦେହ ଏବଂ ଆତଙ୍କ ଦେଖାଦେବା ସ୍ୱାଭାବିକ ।

ବିଜ୍ଞାନ ଯେ ମାନବଜାତିର କଲ୍ୟାଣ ନିମନ୍ତେ କିଛି କରୁନାହିଁ, ଏହା କଦାପି କୁହାଯାଇ ପାରିବନାହିଁ । ବଞ୍ଚିବାର ସୁଖ ସ୍ୱାଚ୍ଛନ୍ଦ୍ୟ ନିମନ୍ତେ ପ୍ରତିମୁହୂର୍ତ୍ତରେ ଆମେ ଏହାର ଅବଦାନ ନିମନ୍ତେ କୃତଜ୍ଞତା ଅନୁଭବ କରୁଛୁଁ । ଅଜଣାକୁ ଜାଣିବା ନିମନ୍ତେ, ଦୂରକୁ ନିକଟ କରିବା ନିମନ୍ତେ, ଅପରିଚିତଙ୍କୁ ପରିଚିତରେ ପରିଣତ କରାଇବା ନିମନ୍ତେ ବିଜ୍ଞାନର ସହାୟତା ଆଦୌ ବିସ୍ମୃତ ହେବନାହିଁ । ଦେଶ ଦେଶ ମଧ୍ୟରେ ଦୂରତ୍ୱର ବ୍ୟବଧାନକୁ କମାଇ ଆଜି ପରସ୍ପରଙ୍କୁ ଉତ୍ତମ ରୂପେ ଜାଣିବାର, ବୁଝିବାର ଯେଉଁ ଚମତ୍କାର ସୁଯୋଗ ବର୍ତ୍ତମାନ ଆମେ ପାଉଛୁଁ, ବିଜ୍ଞାନର ଅଗ୍ରଗତି ବିନା ତାହା ଆଦୌ ସମ୍ଭବପର ହୋଇପାରିନଥାନ୍ତା । ତେବେ ପ୍ରାପ୍ତିର ଆନନ୍ଦପୂର୍ଣ୍ଣ ମୁହୂର୍ତ୍ତ ହରାଇବାର ବେଦନାଦାୟକ ଅନୁଭୂତିରେ ବିଷାକ୍ତ ହୋଇଗଲା ଭଳି, ଉନ୍ନତିର ଚରମ ଶୀର୍ଷରେ ଦଣ୍ଡାୟମାନ ହୋଇ ସୁଦ୍ଧା, ସୁଖସ୍ୱାଚ୍ଛନ୍ଦ୍ୟର ପ୍ରାଚୁର୍ଯ୍ୟ ମଧ୍ୟରେ ଥାଇ ସୁଦ୍ଧା ଏହାର ଅପର ଦିଗର ଭୟଙ୍କର ସ୍ମୃତି ପ୍ରତ୍ୟେକ ମୁହୂର୍ତ୍ତରେ ଆମକୁ ବିଚଳିତ କରୁଛି, ମାନସିକ ଶାନ୍ତିକୁ ବିଘ୍ନିତ କରୁଛି ।

ଏଭଳି ଉଦ୍‌ବେଗପୂର୍ଣ୍ଣ ପରିସ୍ଥିତିରୁ ମାନବ ଜାତିକୁ ରକ୍ଷା କରିବା ନିମନ୍ତେ ଗମ୍ଭୀର ଭାବରେ ଚିନ୍ତା କରିବାର ଅବସର ଆସିଯାଇଛି । ଆମର ଲକ୍ଷ୍ୟ ପରିବର୍ତ୍ତନ ନକଲେ, ଧ୍ୱଂସର ବିଭୀଷିକାକୁ କଲ୍ୟାଣର ବରାଭୟରେ ରୂପାନ୍ତରିତ ନକଲେ, ମାନବଜାତିର ମୁକ୍ତି ନାହିଁ ।

କେବଳ ଏହି କାରଣରୁ ବିଜ୍ଞାନକୁ ଶାନ୍ତି ସ୍ଥାପନ କାର୍ଯ୍ୟରେ ବ୍ୟବହାର କରିବା ନିମନ୍ତେ ବର୍ତ୍ତମାନ ବ୍ୟାପକ ଚିନ୍ତା କରାଯାଉଛି । ବିଜ୍ଞାନଦ୍ୱାରା ପରିଗୃହୀତ ସମସ୍ତ ଶକ୍ତିକୁ ଧ୍ୱଂସ ବଦଳରେ ଯଦି ସୃଷ୍ଟିର ମଙ୍ଗଳଜନକ ଭୂମିକାରେ ଲଗାଇଦିଆଯାଏ, ତେବେ ତଦ୍ୱାରା ଯେ ମାନବ-ସଭ୍ୟତାର ଅଶେଷ ମଙ୍ଗଳ ହେବ, ପୃଥିବୀର ରୂପ ଯେ ସମ୍ପୂର୍ଣ୍ଣରୂପେ ବଦଳିଯିବ ଏଥିରେ ଦ୍ୱିରୁକ୍ତି ନାହିଁ ।

ପରମାଣୁ ଶକ୍ତି ବର୍ତ୍ତମାନ ବିଶ୍ୱର ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଶକ୍ତିର ମର୍ଯ୍ୟାଦା ଲାଭ କରିଛି । ଆମେ ଏହାର ଧ୍ୱଂସକାରୀ ରୁଦ୍ର ରୂପ ଦେଖିଛୁଁ । ମାତ୍ର ଶିବ ଧ୍ୱଂସକର୍ତ୍ତା ହେଲେ ମଧ୍ୟ ସେ ପୁଣି ସମସ୍ତ ମଙ୍ଗଳର ଏକମାତ୍ର ଅଧିକର୍ତ୍ତା । ସମସ୍ତ ଅମଙ୍ଗଳ ଦୂର କରିବା ନିମନ୍ତେ ଆମେ ତାଙ୍କୁ ହିଁ ସ୍ମରଣ କରିଥାଉଁ । ସେହିଭଳି 'ପରମାଣୁ'କୁ ଯଦି ଶାନ୍ତି ନିମନ୍ତେ କାର୍ଯ୍ୟରେ ଲଗାଯାଇପାରେ, ତା'ହେଲେ ସେହି ପୁଣି ହେବ ବିଶ୍ୱର ସ୍ମରଣୀୟ ମଙ୍ଗଳ-କାମୀ ଶକ୍ତି । ପରମାଣୁ ସାହାଯ୍ୟରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରାଯାଇ ତାକୁ ମାନବଜାତିର

ବ୍ୟବହାର ନିମନ୍ତେ ଦିଆଯାଇପାରେ । ଏହାଦ୍ୱାରା କଳକାରଖାନା ବଢ଼ିବ, ତା' ସହିତ ଆସିବ ପାରିବାରିକ ଜୀବନରେ ସୁଖ ଏବଂ ସ୍ୱାଚ୍ଛନ୍ଦ୍ୟ । କୃଷିର ଉନ୍ନତି ନିମନ୍ତେ ଭଲ ଧରଣର ସାର ପ୍ରସ୍ତୁତ ଏବଂ ଜଳସେଚନରେ ଏହି ବିଦ୍ୟୁତ୍ ଶକ୍ତିକୁ ବ୍ୟବହାର କରାଯାଇପାରେ । କ୍ଷେତର ଉତ୍ପାଦିକା ଶକ୍ତି ବିଶେଷ ଭାବରେ ବଢ଼ାଯାଇପାରେ । ଭଲ ବିହନ, ଅନିଷ୍ଟକାରୀ କୀଟ-ପତଙ୍ଗର ବିନାଶ, ଉନ୍ନତ ଧରଣର ଖତ ସାର ଇତ୍ୟାଦିର ପ୍ରୟୋଗ ତଥା ଅନୁକୂଳ ପାଗ ଉତ୍ପାଦନକୁ ବହୁଗୁଣିତ କରିଦେଇପାରେ । ଏହାଦ୍ୱାରା ବିଶ୍ୱରେ ଯେଉଁ ଖାଦ୍ୟ ସମସ୍ୟା ରହିଛି ତାହାର ଏକ ସ୍ଥାୟୀ ପ୍ରତିକାର କରାଯାଇପାରିବ । ଅନ୍ନ ସହିତ ବସ୍ତ୍ର ସମସ୍ୟାର ସମାଧାନ ମଧ୍ୟ ଏହି ଉପାୟରେ କରାଯାଇପାରିବ । ପେଟ ପୁରାଇ ଗଣ୍ଡେ ଖାଇବାକୁ, ଶୀତ-ବର୍ଷାର ଆକ୍ରମଣରୁ ଦେହକୁ ରକ୍ଷା କରିବା ପାଇଁ ଖଣ୍ଡେ ପିନ୍ଧିବାକୁ ଏବଂ ରୋଗବ୍ୟାଧି ବିରୁଦ୍ଧରେ ସମୟ ମୁତାବକ ଟିକିଏ ଔଷଧ ପାଇଲେ ହିଁ ମାନବଜାତିର ସବୁଠାରୁ ବଡ଼ ସମସ୍ୟାର ସମାଧାନ ହୋଇଯିବ । ଯେଉଁମାନେ ଦାରିଦ୍ର୍ୟର ସୀମାରେଖା ତଳେ ରହି କ୍ଷୁଧା, ରୋଗ, ବ୍ୟାଧି, ଅଶିକ୍ଷା ବିରୁଦ୍ଧରେ ସଂଗ୍ରାମ କରୁ କରୁ ଅକାଳରେ ମୃତ୍ୟୁ ବରଣ କରୁଛନ୍ତି, ସେହିମାନଙ୍କ ଶୁଖିଲା ମୁହଁରେ ହସ ଫୁଟାଇବାକୁ ହେଲେ ଆମକୁ ନିଶ୍ଚୟ ବିଜ୍ଞାନର ସଦୁପଯୋଗ କରିବାକୁ ହିଁ ହେବ । ଶିକ୍ଷାର ପ୍ରସାରରେ, କୁସଂସ୍କାର ବିନାଶ ଅଭିଯାନରେ ଏହାକୁ କାର୍ଯ୍ୟରେ ଲଗାଇବାକୁ ପଡ଼ିବ ।

ବିଜ୍ଞାନ ବର୍ତ୍ତମାନ ସମର ଅଭିମୁଖୀ ହୋଇ ରହିଛି । ତାହାକୁ ଶାନ୍ତିର କଲ୍ୟାଣମୟୀ ରୂପରେ ଦେଖିବାକୁ ଆମ ସମସ୍ତଙ୍କର ଧ୍ୟେୟ ହେବା ଆବଶ୍ୟକ । ମନେରଖିବାକୁ ହେବ, ଗାଁ'ରେ ନିଆଁ ଲାଗିଲେ ତାହା ଠାକୁରଘରକୁ ବାଦ୍ ଦିଏନାହିଁ । ଯେଉଁମାନେ ଆଜି ବିଜ୍ଞାନର ଗର୍ବରେ ଶକ୍ତି ଓ ସାମର୍ଥ୍ୟର ଅହଙ୍କାର କରୁଛନ୍ତି, ଯଦି ଦୁର୍ବୁଦ୍ଧି ବଶତଃ କେବେ ଧ୍ୱଂସଲୀଳା ସୃଷ୍ଟି କରନ୍ତି, ତେବେ ସେମାନେ ନିଜେ ମଧ୍ୟ ଏହାର କବଳରୁ ରକ୍ଷା ପାଇପାରିବେ ନାହିଁ । ତେଣୁ ବିଜ୍ଞାନର ଧ୍ୱଂସକ୍ଷମ ବିସ୍ଫୋରିକାପୂର୍ଣ୍ଣ ଶକ୍ତିକୁ ମାନବକଲ୍ୟାଣର ମଙ୍ଗଳପ୍ରଦ କାର୍ଯ୍ୟରେ ବିନିଯୋଗ କରାଯାଇ ପାରିଲେ ହିଁ ସମଗ୍ର ସୃଷ୍ଟିର ମଙ୍ଗଳ ହେବ । ଆଜି ସେ ଦିଗରେ ଉଦ୍ୟମ ଆରମ୍ଭ ହୋଇଛି । ଭାରତ ହିଁ ଏ କ୍ଷେତ୍ରରେ ସମସ୍ତଙ୍କୁ ନେତୃତ୍ୱ ଦେବ ।

## ସଭ୍ୟତାର ବିକାଶରେ ବିଜ୍ଞାନର ଭୂମିକା

ପ୍ରତ୍ୟେକ ଘଟଣାର ଦୁଇଟି ଦିଗ ରହିଛି । ଗୋଟିଏ ଏହାର ଆଲୋକିତ ଦିଗ, ଭଲ ଦିଗ । ଅପରଟି ଏହାର ଅନ୍ଧକାର ଦିଗ; ଅର୍ଥାତ୍ ମନ୍ଦ ଦିଗ । ଏକଥା ସମସ୍ତେ ଜାଣନ୍ତି ଯେ, ଅଗ୍ନି ତୁଲ୍ୟ ବନ୍ଧୁ ମଣିଷର ଦ୍ୱିତୀୟ ନାହିଁ । ସଭ୍ୟତାର ବିକାଶ ଏହି ଅଗ୍ନି ଉପରେ

ନିର୍ଭରଶୀଳ । ମାତ୍ର ଏହାର ବିନାଶକାରୀ ରୁଦ୍ର ଶକ୍ତି ସମ୍ପର୍କରେ ସୁଦ୍ଧା ଆମେ ଅନବହିତ ନୋହୁଁ । ପ୍ରଚଣ୍ଡ ବେଗରେ ସବୁ ଜାଳି ପୋଡ଼ି ଧ୍ୱଂସ କରିଦେବାକୁ, ସୃଷ୍ଟିର ନିରୁପମ ସୌନ୍ଦର୍ଯ୍ୟକୁ ଲୁଣ୍ଠିତ ପାଉଁଶ ସ୍ତୂପରେ ରୂପାନ୍ତରିତ କରାଇବାକୁ ଏହାକୁ ମୁହୂର୍ତ୍ତେ ମଧ୍ୟ ଲାଗିବନାହିଁ । ଯେଉଁ ଅଗ୍ନି ଆମକୁ ଉତ୍ତାପ ଦେଇ ଶୀତକଷ୍ଟରୁ ରକ୍ଷାକରେ, ସେଇ ପୁଣି ଅତି ଅସହାୟ ଭାବରେ ଆମକୁ ଜୀବନ୍ତପୋଡ଼ି ପାଉଁଶ କରିଦିଏ । ପ୍ରତ୍ୟେକ ଶକ୍ତି ଏହିଭଳି ଦୁଇଗୁଣବିଶିଷ୍ଟ । ବିଜ୍ଞାନ ଗୋଟିଏ ଶକ୍ତି - କହିବାକୁ ଗଲେ ସାମ୍ପ୍ରତିକ ଯୁଗର ସର୍ବଶ୍ରେଷ୍ଠ ଶକ୍ତି । ଏହାର ତେଣୁ ଦୁଇଟି ରୂପ ହେବା ସ୍ୱାଭାବିକ । ଗୋଟିଏ ଦିଗରେ ତାହା କଲ୍ୟାଣମୟ ବରଦାନ—ଅନ୍ୟ ଦିଗରେ ତାହା ଈଶ୍ୱରଙ୍କ ରୁଦ୍ର କୋପର ପ୍ରତୀକ ଅଭିଶାପ ।

ବିଜ୍ଞାନ ହିଁ ଆଜିର ମଣିଷକୁ ଅଖଣ୍ଡ ଶକ୍ତିର ଅଧିକାରୀ କରିଛି । ଅନାୟାସରେ ସେ ଜଳ, ସ୍ଥଳ, ଅନ୍ତରୀକ୍ଷ ସର୍ବତ୍ର ଗମନ କରିପାରୁଛି । ଚନ୍ଦ୍ରଲୋକରେ ପହଞ୍ଚିପାରିଛି । ଅତଳ ସମୁଦ୍ରର ଶେଷ ତଳ ଦେଖିଆସିଛି । ସର୍ବୋଚ୍ଚ ଶିଖରରେ ଆରୋହଣ କରିପାରୁଛି । ବର୍ଷ-ବର୍ଷର ଯାତ୍ରା ମାତ୍ର କେଇ ଘଣ୍ଟାରେ ଶେଷ କରିପାରୁଛି । ଏହା ବିଜ୍ଞାନର ଆଶୀର୍ବାଦରେହିଁ ସମ୍ଭବପର ହୋଇପାରିଛି । ଯାତ୍ରା ନିମନ୍ତେ ବିଭିନ୍ନ ଯାନବାହନ, ଜୀବନଯାତ୍ରାର ସ୍ୱାଚ୍ଛନ୍ଦ୍ୟ ବିଧାନ ନିମନ୍ତେ ବହୁ ଉପକରଣ ଆମେ ବିଜ୍ଞାନର କଲ୍ୟାଣରୁହିଁ ପାଇପାରୁଛୁ । ଆଜି, ସକାଳୁ ସନ୍ଧ୍ୟାଏ ଘରେ ବାହାରେ ସବୁଆଡ଼େ ବିଜ୍ଞାନର ଉପସ୍ଥିତି; ମାନବକଲ୍ୟାଣ ନିମନ୍ତେ ତାହାର ବିଭିନ୍ନ ରୂପକୁ ଅନୁଭବ କରୁଛୁଁ । ଚିକିତ୍ସା କ୍ଷେତ୍ରରେ ବିଜ୍ଞାନର ଜୟଯାତ୍ରା ହିଁ ଆଜି ବିଭିନ୍ନ ଦୁରାରୋଗ୍ୟ ବ୍ୟାଧିକୁ ଦୂର କରିବାରେ ସାହାଯ୍ୟକରି ମଣିଷ-ଜୀବନର ସ୍ଥିତିକୁ ବଢ଼ାଇଦେଇଛି । ମାଇକ୍ରୋସ୍କୋପ ଅତି କ୍ଷୁଦ୍ର କ୍ଷୁଦ୍ର ଜୀବାଣୁକୁ ଦେଖାଇଦେଉଛି । ଏକ୍ସରେ ଶରୀରର ଅଭ୍ୟନ୍ତରର ଫଟୋଚିତ୍ର ବାହାରକୁ ଟାଣିଆଣୁଛି । ଅପରେସନ୍ ସାହାଯ୍ୟରେ ଶରୀର ଭିତରର ଯେକୌଣସି କ୍ଷତକୁ ମରାମତି କରାଯାଇପାରୁଛି । ପ୍ରୟୋଜନବୋଧରେ ମଣିଷର ଆଖି, ନାକ, କାନ ତ ସାଧାରଣ କଥା, ହୃଦ୍‌ଯନ୍ତ୍ରକୁ ମଧ୍ୟ ବଦଳାଇଦିଆଯାଉଛି । ଚିକିତ୍ସା ଭଳି ଅନ୍ନବସ୍ତ୍ରର ସମସ୍ୟା ସମାଧାନରେ ସୁଦ୍ଧା ବିଜ୍ଞାନର ଅବଦାନକୁ ଅସ୍ୱୀକାର କରାଯାଇପାରିବନାହିଁ । ଯାନ୍ତ୍ରିକ ବ୍ୟବସ୍ଥାରେ କୃଷି, ଉନ୍ନତ ଧରଣର ଖତସାରର ପ୍ରୟୋଗ, ତଥା କୀଟନାଶକ ବହୁବିଧ ଔଷଧାଦିର ନିୟମିତ ବ୍ୟବହାର ଅମର ଉତ୍ପାଦନକୁ ବହୁଗୁଣିତ କରିଛି । ବହୁ ପୁସ୍ତକ ଏବଂ ସମ୍ବାଦପତ୍ରର ପ୍ରକାଶ ଜ୍ଞାନରାଜ୍ୟର ସୀମାକୁ ବିସ୍ତୃତ କରିଛି । ମୋଟାମୋଟି ଭାବରେ ତେଣୁ କୁହାଯାଇପାରେ ଯେ, ଜୀବନର ପ୍ରାୟ ପ୍ରତ୍ୟେକ କ୍ଷେତ୍ର ବିଜ୍ଞାନ ହାତର ଅକୃପଣ ଦାନରେ ପୂର୍ଣ୍ଣ ହୋଇଯାଇଛି । କ୍ଷୁଧିତକୁ ଅନ୍ନ, ବସ୍ତ୍ରହୀନକୁ ବସ୍ତ୍ର, ରୁଗ୍ଣ ନିମନ୍ତେ ଚିକିତ୍ସା, କର୍ମହୀନ ନିମନ୍ତେ କର୍ମ, ପାରିବାରିକ ଜୀବନର ବହୁ ସୁଖ-ସ୍ୱାଚ୍ଛନ୍ଦ୍ୟ ଏହାରି ସହାୟତାରେ ହିଁ ମିଳିପାରୁଛି ।

ବିଜ୍ଞାନ ସତ୍ୟର ଅନୁସନ୍ଧାନ କରେ । କଳ୍ପନା-ବିଳାସର କୌଣସି ସ୍ଥିତି ଏଥିରେ ନଥାଏ । ବିଜ୍ଞାନର ବିସ୍ତାର ହିଁ ମାନବଜୀବନରୁ ବହୁ ଅନ୍ଧବିଶ୍ୱାସ ତଥା ଅକାରଣ ଭୟକୁ

ଦୂରେଇଦେଇଛୁ । ଯୁକ୍ତିର ବିକାଶ ଏହାର ଏକ ବିଶେଷ ଅବଦାନ । ଉପନିଷଦ୍‌ର ମନ୍ତ୍ରଦ୍ରଷ୍ଟା ଋଷି ଥରେ ଈଶ୍ୱରଙ୍କୁ ପ୍ରାର୍ଥନା କରି କହିଥିଲେ :

"ଅସତୋ ମାଂ ସଦ୍‌ଗମୟ,
ତମସୋ ମାଂ ଜ୍ୟୋତିର୍ଗମୟ
ମୃତ୍ୟୋର୍ମାଂ ଅମୃତଂଗମୟ"

ଆଜି ବିଜ୍ଞାନହିଁ ଈଶ୍ୱରଙ୍କର ଭୂମିକା ଗ୍ରହଣ କରି ଅଜ୍ଞତାର ଅନ୍ଧକାରଗର୍ଭରୁ ଆମକୁ ଆଲୋକିତ ଜ୍ଞାନରାଜ୍ୟରେ ନେଇ ପହଞ୍ଚାଇଦେଇଛୁ । ଅସତ୍ୟ ଏବଂ ସତ୍ୟର ପାର୍ଥକ୍ୟ ଆମେ ଆଜି ବୁଝିପାରୁଛୁଁ । ମୃତ୍ୟୁରୁ ଦ୍ରୁତଗତିରେ ଅମୃତତ୍ୱ ଆଡ଼କୁ ଆଗେଇ ଯାଉଛୁଁ । ଉଭୟ ଆଧ୍ୟାତ୍ମିକ ତଥା ଜାଗତିକ ଦୃଷ୍ଟିରୁ ଆମର ଏ ଯେଉଁ ପରିବର୍ତ୍ତନ ହୋଇଛି ବା ହେଉଛି, ସେଥିନିମନ୍ତେ ଆମେ ବିଜ୍ଞାନ ନିକଟରେ ଚିରକୃତଜ୍ଞ ରହିବୁଁ । ତେଣୁ ମାନବ-ସଭ୍ୟତାର ବିକାଶରେ, ଜୀବନର ଉତ୍ତରଣରେ ବିଜ୍ଞାନର ଭୂମିକାକୁ ଆମେ ଶିବ, ମଙ୍ଗଳପ୍ରଦ ରୂପରେ ସ୍ୱୀକୃତି ଦେବାକୁ ପଶ୍ଚାତ୍‌ପଦ ହେବୁନାହିଁ ।

ଏହିର ଅପର ଦିଗ ବିଷୟରେ ଏବେ ଆଲୋଚନା କରାଯାଉ । ସମ୍ପ୍ରତି ସମଗ୍ର ମାନବଜୀବନରେ ଏ ଯେଉଁ ଅସ୍ଥିରତା, ଅଶାନ୍ତି, ସନ୍ଦେହ, ଅବିଶ୍ୱାସ ଇତ୍ୟାଦି ଦେଖା-ଦେଇଛି, ଏଥି ନିମନ୍ତେ ବିଜ୍ଞାନକୁ ଦାୟୀ କରିବା ବ୍ୟତୀତ ଉପାୟ ନାହିଁ । ବୈଷୟିକ ଉନ୍ନତିର ତୀବ୍ର ପ୍ରତିଦ୍ୱନ୍ଦ୍ୱିତା, ଭୌତିକ ବିକାଶର ଆକୁଳ କାମନା ଆଜି ମଣିଷକୁ ଲକ୍ଷ୍ୟ-ଚ୍ୟୁତ କରିଛି । ଜୀବନର ପ୍ରକୃତ ଉଦ୍ଦେଶ୍ୟ ସେ ବିସ୍ମୃତ ହୋଇ ଅନ୍ଧଭାବରେ କେବଳ ଅନ୍ୟକୁ ପଛରେ ପକାଇଦେଇ ଆଗକୁ ଦୌଡ଼ିବାରେ ଅହରହ ବ୍ୟସ୍ତ । ଜୀବନ କ୍ଷେତ୍ରରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି ହୋଇଛି । ସମାଜରେ ଶ୍ରେଣୀ ସୃଷ୍ଟି ହୋଇ, ସଂଘର୍ଷ ଅନିବାର୍ଯ୍ୟ ହୋଇଉଠିଛି । ଉଭୟଙ୍କର ଅସ୍ତ୍ରଶସ୍ତ୍ରର ନିର୍ମାଣ ତଥା ସଞ୍ଚୟ ମାନବ-ସଭ୍ୟତାକୁ ଏକ ଗଭୀର ଖାତ ମୁହଁରେ ନେଇ ଠିଆ କରାଇଦେଇଛି । ଅଣୁ-ଅସ୍ତ୍ରର ଧ୍ୱଂସକାରୀ ଶକ୍ତି ସହିତ ପରିଚିତ ହୋଇସାରିବାପରେ, ମଣିଷର ସନ୍ଦେହ ଏବଂ ଅବିଶ୍ୱାସ କ୍ରମଶଃ ବୃଦ୍ଧିପାଇଛି । ଜୀବନ ହେଉଛି ଅନିଶ୍ଚିତ ଶିଳ୍ପ ସଭ୍ୟତାର କ୍ରମିକ ବିସ୍ତାର । କେବଳ ଯେ ବାୟୁମଣ୍ଡଳକୁ ଦୂଷିତ କରି ମଣିଷ ସ୍ୱାସ୍ଥ୍ୟରେ ଅବନତି ଘଟାଇଛି ତାହା ନୁହେଁ, ଏହାଦ୍ୱାରାହିଁ ମଣିଷର ନୈତିକ ମାନଦଣ୍ଡ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଛି । ଯେକୌଣସି ଶିଳ୍ପାଞ୍ଚଳରେ ହେଉଥିବା ଘନଘନ ଚୋରି, ଡକାୟତି, ଠକାମି, ଧର୍ଷଣ, ଲୁଣ୍ଠନ ଇତ୍ୟାଦିକୁ ଦେଖିଲେ, ମଣିଷଜାତି ଯେ କେତେ ତଳକୁ ଓହ୍ଲାଇଗଲାଣି, ତାହା ଉତ୍ତମରୂପେ ବୁଝିହେବ । ସ୍ୱାର୍ଥପରାୟଣ, ବ୍ୟକ୍ତି-କେନ୍ଦ୍ରିକ ଏ ଯେଉଁ ଜୀବନ ଆମ ଆଗରେ ଖୋଲା ହୋଇ ପଡ଼ିଛି, ମାନବଜାତି ଯେଉଁଥିରୁ ସମ୍ପୂର୍ଣ୍ଣରୂପେ ବିଦାୟ ଗ୍ରହଣ କରିଛି, ସେ ଜୀବନକୁ ବିଜ୍ଞାନର ଅବଦାନ ବୋଲି ନ କହି ଉପାୟ ନାହିଁ । ଶକ୍ତି ଏବଂ କୌଶଳର ଏ ଯେଉଁ ନଗ୍ନ ପ୍ରଦର୍ଶନୀ ଅହରହ ଚାଲିଛି, ତାହା ସଭ୍ୟତାକୁ କେଉଁ ଆଡ଼କୁ ଟାଣିନେଉଛି ?

ବର୍ତ୍ତମାନ ତେଣୁ ବିଜ୍ଞାନର ଧ୍ୱଂସକାରୀ ଶକ୍ତିକୁ କଲ୍ୟାଣମୟୀ ରୂପରେ ପରିବର୍ତ୍ତନ କରିବାର ସମୟ ଆସିଯାଇଛି । ଅବଶ୍ୟ ବିଶ୍ୱ ଜାତିସଂଘ ଏ ଦିଗରେ ଉଦ୍ୟମ ଆରମ୍ଭ କରିଛି, ମାତ୍ର ନୈତିକତା, ଆଧ୍ୟାତ୍ମିକତା ସହିତ ବିଜ୍ଞାନର ଏକ ମଧୁର ସମନ୍ୱୟରେ ସେହି ଆଧୁନିକ ସଭ୍ୟତାର ସାମୂହିକ କଲ୍ୟାଣ ସମ୍ଭବପର । ଏଥିରୁ ଅନ୍ୟଥା ହେଲେ ସଭ୍ୟତା ଧ୍ୱଂସ ପାଇଯିବ; ବିଜ୍ଞାନ କେବଳ ନିମିତ୍ତ ମାତ୍ର ହୋଇ ରହିବ ।

## ସାହିତ୍ୟ ଓ ସମାଜ

ଯହିଁ ସାହାଯ୍ୟରେ ସାର୍ବିକ ହିତ ସାଧନ କରାଯାଇପାରେ, ତାହାହିଁ ସାହିତ୍ୟ । ବିଶ୍ୱ-ମାନବର ସାମୂହିକ କଲ୍ୟାଣ ବା ହିତ ସାଧନ ନିମନ୍ତେ ସାହିତ୍ୟ ଉଦ୍ଦିଷ୍ଟ । ଏହି ଦୃଷ୍ଟିରୁ ସମାଜ ସହିତ ସାହିତ୍ୟର ଏକ ନିବିଡ଼ ସମ୍ପର୍କ ରହିଛି । ସାହିତ୍ୟର ସୃଷ୍ଟି ସମାଜରୁ ଏବଂ ଏହା ପୁଣି ସମାଜର ସେବାରେ ନିବେଦିତ । ସମାଜ-ଜୀବନର ଦୋଷତ୍ରୁଟି, ସଫଳତା ବିଫଳତାକୁ ନିଜ ଅଙ୍ଗରେ ସ୍ଥାନ ଦେଇ ସାହିତ୍ୟ ସମାଜକୁ ଦେଖାଇଦେଉଛି । ତେଣୁ ସାହିତ୍ୟ ସମାଜ ପାଇଁ ହୋଇଯାଇଛି ଏକ ଦର୍ପଣ । 'Literature is the mirror of society' ବୋଲି ସମାଲୋଚକ ମାଥ୍ୟୁ ଆର୍ଣ୍ଣୋଲଡ଼ ଯାହା କହିଛନ୍ତି, ତାହା ଅକ୍ଷରେ ଅକ୍ଷରେ ସତ୍ୟ । ସମାଜ-ଜୀବନର ପ୍ରତିଫଳନ ସାହିତ୍ୟରେ ଘଟୁଥିବାରୁ, ସାହିତ୍ୟକୁ 'Criticism of life' ବୋଲି ମଧ୍ୟ କୁହାଯାଉଛି ।

ସମାଜ-ଜୀବନର ବିବର୍ତ୍ତନର ଧାରା ସାହିତ୍ୟ ମଧ୍ୟରେ ଲିପିବଦ୍ଧ ହୋଇ ରହିଛି । ଜୀବନ ଯେତେବେଳେ ଅଧ୍ୟାତ୍ମ ବିଳାସର ଲୀଳାଭୂମି ଥିଲା, ସାହିତ୍ୟରେ ମଧ୍ୟ ତା'ର ରୂପାୟନ ଘଟିଛି । ସପ୍ତଦଶ ଶତାବ୍ଦୀ ବେଳକୁ ଯନ୍ତ୍ର-ସଭ୍ୟତାର କ୍ରମିକ ପ୍ରସାର ଜୀବନକୁ ଯେତେବେଳେ ବାସ୍ତବମୁଖୀ କରିପକାଇଲା, ସାହିତ୍ୟରେ ତତ୍‌କ୍ଷଣାତ୍ ତାହା ସ୍ଥାନ କରିନେଲା । ଶିଳ୍ପ-ବିପ୍ଳବ, ବିଶ୍ୱଯୁଦ୍ଧ, ବିଭିନ୍ନ ବାଦର ଉନ୍ମେଷ, ରୁଷ୍-ବିପ୍ଳବ ଇତ୍ୟାଦି ସମାଜ-ଜୀବନର ଧାରାକୁ ଯେତେବେଳେ ଯେଉଁ ରୂପରେ ବଦଳାଇଛି, ସାହିତ୍ୟରେ ତାହା ସେହିଭଳି ଭାବରେ ରୂପ ପାଇଛି । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜୀବନର ମୂଲ୍ୟବୋଧ ଯେତେବେଳେ ବଦଳିବାକୁ ଆରମ୍ଭ କଲା; ପାରସ୍ପରିକ ସନ୍ଦେହ, ଅବିଶ୍ୱାସ, ଅସ୍ଥିରତା, ଅଶାନ୍ତି ଯେତେବେଳେ ଜୀବନର ପରିଧିରେ ଗୋଟିକ ପରେ ଗୋଟିଏ ମୁଣ୍ଡ ଟେକିଉଠିଲା, ସାହିତ୍ୟ ମଧ୍ୟ ଏଥିରୁ ନିଜକୁ ଦୂରେଇ ରଖି ପାରିଲା ନାହିଁ । ଜୀବନ ହେଲା ଯନ୍ତ୍ରଣାମୟ—ପୁଣି ଜଟିଳ ସାହିତ୍ୟରେ ଏହି ଜୀବନଯନ୍ତ୍ରଣାର ରୂପ ନିଃସଙ୍ଗତା-ବୋଧ, ଆତ୍ମପୀଡ଼ନ ତଥା ବୌଦ୍ଧିକତାର ଆବରଣ ମଧ୍ୟରେ ପ୍ରକାଶିତ ହୋଇଛି ।

ଏଥିରୁ ଏହାହିଁ ପ୍ରମାଣିତ ଯେ, ସାହିତ୍ୟ ସମାଜକୁ ଛାଡ଼ି ସ୍ୱାଧୀନ ଭାବରେ ଉଡ଼ି ପାରିବ ନାହିଁ ।

ସାହିତ୍ୟିକ ଆପଣାର କାଳ, ସ୍ଥାନ, ପରମ୍ପରା, ପରିପାର୍ଶ୍ୱ ଏବଂ ପରିବେଶଠାରୁ ନିଜକୁ ମୁକ୍ତ ରଖିପାରିବ ନାହିଁ । ଜଣେ ଦରିଦ୍ର ହିଁ ଦାରିଦ୍ର୍ୟର ଦୁଃଖ ଅନୁଭବ କରିପାରିବ । ଯେ କେବେ ଥରେ ପାଦରେ ଚାଲିନାହିଁ, କ୍ଷୁଧା କାହାକୁ କୁହାଯାଏ ଜାଣିନାହିଁ, ତାହାର କଳ୍ପନାବିଳାସ ଯେତେ ଦୂରଗାମୀ ହେଲେ ମଧ୍ୟ, ତତ୍‌ସମ୍ପର୍କୀୟ ତା'ର ବର୍ଣ୍ଣନା କଦାପି ମନୋହାରୀ ହୋଇ ନପାରେ । ଅନୁଭୂତ ଏବଂ କଳ୍ପନା ମଧ୍ୟରେ ଯଥେଷ୍ଟ ବ୍ୟବଧାନ ରହିଛି । ଏହିଭଳି ସାହିତ୍ୟିକ ସମାଜଦ୍ୱାରା ପ୍ରଭାବିତ ହୁଏ, ସମାଜକୁ ମଧ୍ୟ ପ୍ରଭାବିତ କରିବାର ଶକ୍ତି ଧାରଣ କରେ । ଫକୀରମୋହନ ସେନାପତି ଗ୍ରାମ୍ୟ ସମାଜର ଶୋଷକ ସମ୍ପ୍ରଦାୟଙ୍କୁ ଭଲକରି ଅନୁଧ୍ୟାନ କରିନଥିଲେ 'ରାମଚନ୍ଦ୍ର ମଙ୍ଗରାଜ' ଭଳି ଚରିତ୍ରଟିଏ ଆଣିଥାନ୍ତେ କେଉଁଠୁ ? ତେଣୁ ସମାଜ ବ୍ୟକ୍ତିକୁ ପ୍ରଭାବିତ କରିବା ଯେଉଁଭଳି ସତ୍ୟ, ବ୍ୟକ୍ତି ମଧ୍ୟ ସାହିତ୍ୟ ଉପରେ ପ୍ରଭାବ ବିସ୍ତାର କରିବା ଠିକ୍ ସେଭଳି ସତ୍ୟ । ଦୋହା କାଳରୁ ଆମ ଭାଷାରେ ଯେତେ ପ୍ରକାର ସାହିତ୍ୟ ସୃଷ୍ଟି ହୋଇଛି, ସେଥିରେ ସମସାମୟିକ ସମାଜଜୀବନରେ ଯେଉଁ ଛବି ଫୁଟିଉଠିଛି, ତାହା ଆଦୌ ଅସ୍ପଷ୍ଟ ନୁହେଁ ।

ସାହିତ୍ୟ ସମାଜକୁ ପ୍ରଭାବିତ କରିଥାଏ । ଯେଉଁ ସାହିତ୍ୟ ସମାଜକୁ ଯେତେ ଗଭୀର ଭାବରେ ପ୍ରଭାବିତ କରିପାରିଲା, ତାହାର ସ୍ଥାୟିତ୍ୱ ସେତେ ବେଶୀ । ଦାସ-ବ୍ୟବସାୟ ବିରୁଦ୍ଧରେ ଔପନ୍ୟାସିକା ଷ୍ଟୋଏ ଖଣ୍ଡିଏ ଉପନ୍ୟାସ ଲେଖିଲେ; ଫଳରେ ସେ ସମୟରେ ଦାସ-ବ୍ୟବସାୟ ବିରୁଦ୍ଧରେ ଏତେ ତୀବ୍ର ଆନ୍ଦୋଳନ ହେଲା ଯେ ତାହା ସମ୍ପୂର୍ଣ୍ଣରୂପେ ଉଠିଯାଇଥିଲା । ଉପନ୍ୟାସଟି ହେଉଛି 'Uncle Tom's Cabin' । ସେହିଭଳି ନୀଳଚାଷୀଙ୍କ ଦୁର୍ଦ୍ଦଶାକୁ ନେଇ ବଙ୍ଗଳାର ନାଟ୍ୟକାର ଦୀନବନ୍ଧୁ ମିତ୍ର 'ନୀଳଦର୍ପଣ' ନାମକ ଖଣ୍ଡିଏ ନାଟକ ଲେଖିଲେ । ଫଳରେ ସମଗ୍ର ଦେଶରେ ନୀଳକରମାନଙ୍କ ବିପକ୍ଷରେ ଦୃଢ଼ ଜନମତ ଗଢ଼ିଉଠିଥିଲା ଏବଂ ପରିଣାମରେ ନୀଳଚାଷ ବନ୍ଦ ହୋଇଯାଇଥିଲା ମଧ୍ୟ । ଏଥିରୁ କ'ଣ ଜଣାପଡ଼ୁଛି ?

ସାହିତ୍ୟ ସାମାଜିକ ଜୀବନର ଦୋଷତ୍ରୁଟି ନିବାରଣ କରି, ତାକୁ ନୂତନ ପଥରେ ପରିଚାଳିତ କରିଥାଏ । ଗୋଟିଏ ସାଧାରଣ ଉଦାହରଣ ନିଆଯାଉ । ଆଜି ବିଂଶ ଶତାବ୍ଦୀର ଅନ୍ତିମ ଭାଗରେ ସମଗ୍ର ବିଶ୍ୱରେ ଯେତେବେଳେ ବିଜ୍ଞାନର ଜୟଯାତ୍ରା ଚାଲିଛି, ବିଜ୍ଞାନକୁ ସମର୍ଥନ କରି ମଧ୍ୟ ଭାରତ ଆଧ୍ୟାତ୍ମିକତାକୁ ସମ୍ପୂର୍ଣ୍ଣ ବିସର୍ଜନ ଦେଇପାରିନାହିଁ । ଏହା କିଭଳି ସମ୍ଭବ ହୋଇଛି ? ଆମର ସଂସ୍କାର, ଆମର ପରମ୍ପରା ଏବଂ ବିଶେଷକରି ଆମର ସାହିତ୍ୟହିଁ ଏ ଦିଗରେ ଆମକୁ ସାହାଯ୍ୟ କରିଛି । ସେନାପତି ଫକୀରମୋହନ ନିଜ ସାହିତ୍ୟ ସାହାଯ୍ୟରେ ସମାଜକୁ ଶୋଷଣମୁକ୍ତ ଏକ ନୂତନ କ୍ଷେତ୍ର ଆଡ଼କୁ ବାଟ ଦେଖାଇଦେଇ-

ଥିଲେ । ଶୋଷଣର ଭୟଙ୍କର ପରିଣାମ ମଧ୍ୟ ପ୍ରଦର୍ଶିତ ହୋଇଥିଲା । ଯୁଗେ ଯୁଗେ କାଳେ କାଳେ ସାହିତ୍ୟ ଅତ୍ୟାଚାରିତର ପକ୍ଷ ସମର୍ଥନ କରିଆସିଛି । ଫରାସୀମାନଙ୍କର ତତ୍କାଳୀନ ଦୁର୍ଦ୍ଦଶା ରୁଷୋ, ଭଲ୍‌ଟେୟାର ଏବଂ ମଣ୍ଟେସ୍କୁ ପ୍ରଭୃତି ମନୀଷୀମାନଙ୍କ ମନରେ ଯେଉଁ ପ୍ରତିକ୍ରିୟା ପ୍ରକାଶ କରାଇଥିଲା, ତାହାହିଁ ସାହିତ୍ୟ ମାଧ୍ୟମରେ ଆତ୍ମପ୍ରକାଶ କରିଥିଲା । ଜାଗରଣର ସ୍ରୋତରେ ଫରାସୀ ରାଜତନ୍ତ୍ର କାହିଁ କୁଆଡ଼େ ଭାସିଯାଇଥିଲା । ଏହିଭଳି ଭାବରେ ଆଜି ସାମାଜିକ ଜୀବନରେ ବୈଷମ୍ୟର ପ୍ରାୟ ଅନ୍ତ ଘଟିଛି । କୃଷକମାନଙ୍କର ସାମାଜିକ ସ୍ଥିତି ଉନ୍ନତ ହୋଇଛି । ଗ୍ରାମର ଅନେକ ଉନ୍ନତି ହୋଇଛି, ସାଧାରଣଙ୍କ ନିମନ୍ତେ ରାଜନୈତିକ ତଥା ସାମାଜିକ ଅଧିକାର ମିଳିପାରିଛି । ଏହା ପଛରେ ରହିଛି ସାହିତ୍ୟର ସ୍ମରଣୀୟ ଅବଦାନ ।

ନାରୀଶିକ୍ଷା, ଅସ୍ପୃଶ୍ୟତା ଦୂରୀକରଣ, ବିଧବା ବିବାହ, ଜମିଦାରୀ ଏବଂ ସାମନ୍ତ ପ୍ରଥାର ଲୋପ, ଆଦିବାସୀମାନଙ୍କର ଉଦ୍ଧାରଣ ପ୍ରଭୃତି ପ୍ରତ୍ୟେକ ସାମାଜିକ ପରିବର୍ତ୍ତନ ନିମନ୍ତେ ସାହିତ୍ୟର ଭୂମିକାକୁ ଅସ୍ୱୀକାର କରିହେବନାହିଁ । ଗୋଟିଏ ବୁଦ୍ଧର କାହାଣୀ ହିଁ ଆଉ ଜଣେ ଗାନ୍ଧୀ ସୃଷ୍ଟି କରିପାରେ । ଜଣେ ରାଣାପ୍ରତାପ ଆଉ ଜଣେ ଭଗତ୍ ସିଂ ସୃଷ୍ଟି ନିମନ୍ତେ ପରିବେଶ ସୃଷ୍ଟି କରିପାରେ । ସାହିତ୍ୟ ତେଣୁ ସମାଜକୁ ନିର୍ମାଣ କରିଛି, ତାହାକୁ ନୂତନ ଦିଗନ୍ତ ସନ୍ଧାନ ଦେଇଛି । ସାହିତ୍ୟିକର ବୃତ୍ତି ହେଉଛି ହଂସବୃତ୍ତି । ଭଲ ଆଉ ମନ୍ଦ—ଏ ଉଭୟ ମଧ୍ୟରୁ କେବଳ ଭଲଟିକୁ ଗ୍ରହଣ କରିନଇ ସେ ତା'ର ମହତ୍ତ୍ୱ ପାଠକମାନଙ୍କୁ ଦେଖାଇଦେଉଛି । ମନ୍ଦର ଦୟନୀୟତା ଆପେ-ଆପେ ପ୍ରକଟିତ ହୋଇଯାଉଛି । ସାହିତ୍ୟିକ ତାକୁ ଦେଖାଇ ଆଦର୍ଶ ଆଡ଼କୁ ପାଠକମାନଙ୍କୁ ନେଇଯାଉଛି । ସାହିତ୍ୟିକ ସ୍ରଷ୍ଟା; ବ୍ରହ୍ମାଙ୍କ ପରି ଶକ୍ତିଧର । ସମାଜକୁ ଉପଯୁକ୍ତ ମାର୍ଗ ପ୍ରଦର୍ଶନହିଁ ହେଉଛି ତା'ର ଦାୟିତ୍ୱ । କେବଳ ମାତ୍ର ମନୋରଞ୍ଜନ ସାହିତ୍ୟର ଲକ୍ଷ୍ୟ ନୁହେଁ; ତା' ସହିତ ଶିକ୍ଷା ମଧ୍ୟ ରହିଛି । ତେଣୁ ସାହିତ୍ୟିକ ଏ ଉଭୟ ଦିଗ ପ୍ରତି ସଚେତନ ରହିବେ । ସାହିତ୍ୟରେ 'ସତ୍ୟ'କୁ 'ମଙ୍ଗଳ' ଦୃଷ୍ଟିରେ ଦେଖି 'ସୁନ୍ଦର' ରୂପରେ ତାକୁ ଉପସ୍ଥାପିତ କରିବା ହେଉଛି ସାହିତ୍ୟିକର ଦାୟିତ୍ୱ । ସମାଜମଧ୍ୟରୁ ଏହାର ସୃଷ୍ଟି ହେଲେ ମଧ୍ୟ ଏହା ତା'ର ପଥପ୍ରଦର୍ଶକ ହୋଇପାରେ । ଯେ ଏହା କରିପାରିବ ତାକୁହିଁ ପ୍ରକୃତ ସାହିତ୍ୟ କୁହାଯିବ ।

## ସାହିତ୍ୟପାଠର ଉପାଦେୟତା

କର୍ମମୟ ଜୀବନରେ ବହୁ କଷ୍ଟଲବ୍ଧ ଅବସରକୁ ବିଭିନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ ଉପାୟରେ ବିନିଯୋଗ କରିଥାନ୍ତି । କେହି ସିନେମା ଦେଖି, କେହି ବୃକ୍ଷଲତାର

ପରିଚର୍ଯ୍ୟା କରି, କେହି ଗୋଧନ ବୃଦ୍ଧି କରି, କେହି ବା ଦୂରଦେଶ ପରିଭ୍ରମଣ କରି ନିଜର ଅବସର ସମୟ କଟାଇଥାନ୍ତି । ବହୁତ କମ୍ ଲୋକ ଅଛନ୍ତି ଯେଉଁମାନେ କି କିଛି ପଢ଼ି ବା ଲେଖି ନିଜର ସମୟ କଟାଇଥାନ୍ତି । ଆଜିକାଲି ଅବଶ୍ୟ ଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ଲୋକଙ୍କର ପଠନ ଏବଂ ମନନ ପ୍ରବୃତ୍ତି ବୃଦ୍ଧି ପାଉଛି । ପଠନତୁଲ୍ୟ ନିର୍ଦ୍ଦୋଷ ଏବଂ ତଥାପି ଜ୍ଞାନପ୍ରଦ ଅବସର-ବିନୋଦନର ଏଭଳି ସୁନ୍ଦର ଉପାୟ ଆଉ ନାହିଁ । ବିଶେଷରେ ସାହିତ୍ୟପାଠ ପାଠକକୁ ଲୋକଚରିତ୍ର, ସାମାଜିକତା, ସଂସ୍କାର, ସାଂସାରିକ ଜୀବନର ଭଲ ମନ୍ଦ ଇତ୍ୟାଦି ସମ୍ପର୍କରେ ବିସ୍ତୃତି ଜ୍ଞାନ ଏକାବେଳେକେ ଦେଇଥାଏ । ଏ ଦୃଷ୍ଟିରୁ ସାହିତ୍ୟ ମାନବର ପ୍ରକୃତ ହିତକାଂକ୍ଷୀ ବନ୍ଧୁ । ଗୋଟିଏ ସମୟ ଆସେ ଯେତେବେଳେ ସମାଜ ତାକୁ ତ୍ୟାଗକରେ, ଜାତି ତାକୁ ଉପେକ୍ଷାକରେ, ଏପରିକି ପରିବାର ମଧ୍ୟ ତାକୁ ଅସ୍ୱୀକାର କରିପାରେ; ମାତ୍ର ଜୀବନର ଉତ୍ଥାନ ପତନରେ, ସୁଖରେ ଦୁଃଖରେ ତଥା ଆନନ୍ଦ ବିଷାଦରେ; ପ୍ରତ୍ୟେକ ମୁହୂର୍ତ୍ତରେ ଯେ ତାକୁ ସୌଖ୍ୟ, ସାହଚର୍ଯ୍ୟ ପ୍ରଦାନ କରିପାରେ, ସେ ହେଉଛି ସାହିତ୍ୟ— ଏ ଦୃଷ୍ଟିରେ ପ୍ରକୃତରେ ସାର୍ଥକନାମା ।

ସାହିତ୍ୟ ହେଉଛି ଜ୍ଞାନର ଅଫୁରନ୍ତ ଭଣ୍ଡାର । ବିଶେଷକରି ସାମାଜିକ ଜ୍ଞାନର ଏତେ ବିସ୍ତୃତ ଆଲୋଚନା ଏଥିରେ ହୋଇଥାଏ ଯେ ସମଗ୍ର ସମାଜ ତା'ର ଦୋଷ, ତ୍ରୁଟି, ସବଳତା ଏବଂ ଦୁର୍ବଳତା ପାଠକଙ୍କମାନେ ପାଠକର ସମ୍ମୁଖରେ ଉଦ୍ଭାସିତ ହୁଏ । ଯେଉଁ ଅଭିଜ୍ଞତା ତାହାର ଏହିଠାରୁ ହୁଏ ତା' ପରବର୍ତ୍ତୀ ଜୀବନରେ ପ୍ରଚୁର ସାହାଯ୍ୟ କରିଥାଏ । ଲୋକଚରିତ୍ର ସମ୍ପର୍କରେ ତାହାର ବିଧିବଦ୍ଧ ଧାରଣା ହୁଏ, ସାମାଜିକ ଜୀବନର ରୀତି, ନୀତି, ଆଗ୍ରହ ବ୍ୟବହାର ସମ୍ପର୍କରେ ଠିକଣାଟି ବିବରଣୀ ମିଳେ । ସବୁଠାରୁ ବଡ଼କଥା, ଯେଉଁ ଆଦର୍ଶ ନଥିଲେ ଜୀବନ ଗୁଳକଣ୍ଠାନ ନୌକାତୁଲ୍ୟ ହୋଇ ସମସ୍ୟା-ସାଗରରେ ଲୀନ ହୋଇଯାଏ ସେଇ ଆଦର୍ଶର ସନ୍ଧାନ ପାଠକକୁ ସାହିତ୍ୟରୁହିଁ ମିଳିପାରିବ । ମୋଟ ଉପରେ ଏତିକି କୁହାଯାଇପାରେ ଯେ, ସାହିତ୍ୟ ଶିକ୍ଷକ ନୁହେଁ; ତଥାପି ସେ ପାଠକକୁ ଶିକ୍ଷାଦେଇପାରେ । ସେ ଚିକିତ୍ସକ ନୁହେଁ; ତଥାପି ପାଠକର ମାନସିକ ରୋଗ ଦୂରକରିପାରେ । ତାହା କୌଣସି ସମାଜନେତା ନୁହେଁ; ତଥାପି ତାହାଠୁ ସମାଜତତ୍ତ୍ୱର ବିବରଣୀ ମିଳିପାରିବ । ସାହିତ୍ୟ କୌଣସି ନର୍ତ୍ତକ, ଗାୟକ ବା ଅଭିନେତା ନୁହେଁ; ତଥାପି ତାହା ବେଶ୍ ଭଲଭାବରେ ପାଠକର ମନୋରଞ୍ଜନର ବ୍ୟବସ୍ଥା କରିପାରିବ । ଏତେଗୁଡ଼ିଏ ଗୁଣ ଏକାଧାରରେ ଯାହା ନିକଟରେ ବିଦ୍ୟମାନ; ତାକୁ ଅସ୍ୱୀକାର କରିହେବ କି ?

ଆନନ୍ଦଦାନ ଅବଶ୍ୟ ସାହିତ୍ୟର ମୁଖ୍ୟ ଉଦ୍ଦେଶ୍ୟ । ଏହାର ଏକ ବିସ୍ତୃତ ଅର୍ଥ ମଧ୍ୟ ରହିଛି । ସମସ୍ତ ଲିଖିତ ବାଙ୍ମୟକୁ ସାହିତ୍ୟ ବୋଲି କୁହାଯାଇଥାଏ । କାବ୍ୟ କବିତା, କାହାଣୀ, ଉପନ୍ୟାସ, ପ୍ରବନ୍ଧ, ଇତିହାସ, ଧର୍ମଗ୍ରନ୍ଥ— ଏ ସମସ୍ତ ବାଙ୍ମୟ ସାହିତ୍ୟଶ୍ରେଣୀଭୁକ୍ତ ହୋଇପାରେ । ଆଜି ତ 'ବିଜ୍ଞାପନ'କୁ ସୁଦ୍ଧା 'ଲିଟରେଚର୍' ବୋଲି କୁହାଗଲାଣି; ମାତ୍ର କୌଣସି ପ୍ରକାରର ସ୍ଥାୟିତ୍ୱ ନଥିବାରୁ ସମ୍ବାଦପତ୍ର କିମ୍ବା ବିଜ୍ଞାପନ-ଜାତୀୟ ରଚନାକୁ

ସାହିତ୍ୟଶ୍ରେଣୀଭୁକ୍ତ କରାଯାଇନପାରେ । ଲୋକହିତ ସାଧନ ସାହିତ୍ୟର ମୂଳ ଉଦ୍ଦେଶ୍ୟ ହୋଇଥିବାରୁ ଏଥିରେ ମୁଖ୍ୟତଃ ଆଦର୍ଶର କଥା, ସମାଜଜୀବନର ବାସ୍ତବ ଅବସ୍ଥା କଥାଠୁଁ ଅଧିକ କୁହାଯାଇଥାଏ ।

ଆମେ ସମସ୍ତେ ଜାଣୁ ଯେ, ମୁଦ୍ରଣ ଯନ୍ତ୍ରର ପ୍ରସାର ପୂର୍ବରୁ ତାଳପତ୍ର, ବୃକ୍ଷର ବଲ୍କଳ ଇତ୍ୟାଦିରେ ଲେଖାଲେଖି କରାଯାଉଥିଲା ଏବଂ ତା' ପୂର୍ବରୁ ତ ଶୁଣି ଶୁଣି ସାହିତ୍ୟକୁ ମନେରଖାଯାଉଥିଲା । ଭାରତୀୟ ସାହିତ୍ୟର ପ୍ରାଚୀନତମ ରୂପ 'ବେଦ'ର 'ଶ୍ରୁତି' ନାମ-କରଣରୁ ପୂର୍ବୋକ୍ତ ମତର ସତ୍ୟତା ପ୍ରତିପାଦିତ ହୁଏ । ଯାହାହେଉ, ପୂର୍ବେ ଜ୍ଞାନର ପ୍ରସାର ଏକ ଅତ୍ୟନ୍ତ ଆୟାସ ସାଧ୍ୟ ବ୍ୟାପାର ଥିଲା । ମାତ୍ର ମୁଦ୍ରଣଯନ୍ତ୍ର ଓ କାଗଜର ଆବିଷ୍କାର ହୋଇଯିବା ଫଳରେ ଗ୍ରନ୍ଥ ପ୍ରକାଶନ ଅତ୍ୟନ୍ତ ସହଜ ଓ ସୁନ୍ଦର ହୋଇଗଲା । ଏହା କାଳକ୍ରମେ ଏକ ସୁନ୍ଦର ବ୍ୟବସାୟରେ ମଧ୍ୟ ପରିଣତ ହେଲା । ସହଜ ଉପାୟରେ ଅର୍ଥ ଉପାର୍ଜନ କରିବା ନିମନ୍ତେ ବହୁ ଅସାଧୁ ବ୍ୟବସାୟୀ ଶତ ଶତ ଅଶ୍ଳୀଳ, ଆବର୍ଜନାପୂର୍ଣ୍ଣ ପୁସ୍ତକ ଛପାଇବାକୁ ଲାଗିଲେ । କିନ୍ତୁ ଆର୍ଥିକ ଲାଭ ତଥା ସାମୟିକ ଉତ୍ତେଜନା ନିମନ୍ତେ କେତେକ ନୀତିହୀନ ଲେଖକ ବାହାରିପଡ଼ି ସେମାନଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ କଲେ । ଏହି ଧରଣର ତରଳ ସାହିତ୍ୟ ସାମାଜିକ ଜୀବନକୁ କେଉଁ-ଭଳି ବିପନ୍ନ କରାଇଦେଲା, ସେ କଥା ଏହି ଅଜ୍ଞ ଲୋକେ ବୁଝିବାକୁ ଚାହିଁଲେ ନାହିଁ । ଦୀର୍ଘ କାଳରୁ ଏହି ବ୍ୟବସାୟ ଚାଲିଆସୁଛି ଏବଂ ଯେପର୍ଯ୍ୟନ୍ତ ପାଠକମାନେ ଏହା ପ୍ରତି ସହାନୁଭୂତି ଦେଖାଉଥିବେ, ତାହା ଚାଲୁରହିଥିବ ମଧ୍ୟ । ଆଇନକାନୁନ୍ ଯେତେ ଶକ୍ତିଶାଳୀ ହେଉନା କାହିଁକି, ତା' ଦ୍ୱାରା ଏହି ବ୍ୟବସ୍ଥାକୁ ଉଚ୍ଛେଦ କରିବା ଆଦୌ ସମ୍ଭବପର ନୁହେଁ । ଏ ଧରଣର ପୁସ୍ତକ ହୁଏତ କିଛି ସାମୟିକ ଉତ୍ତେଜନା ଦେଇଥାଏ; ମାତ୍ର ବୁଦ୍ଧିବୃତ୍ତିକୁ ସମ୍ପୂର୍ଣ୍ଣ କଳୁଷିତ କରିଦିଏ । ତେଣୁ ଏହି ଧରଣର ଅପସାହିତ୍ୟଠାରୁ ଦୂରରେ ରହିବା ସର୍ବଦା ବାଞ୍ଛନୀୟ ।

ଜୀବନଗଠନରେ ସତ୍‌ସାହିତ୍ୟର ବିଶେଷ ଅବଦାନ ରହିଛି । ସାଧାରଣ ମଣିଷ ନିଜପାଇଁ ସର୍ବଦା ଏକ ଆଦର୍ଶର ସନ୍ଧାନରେ ଥାଏ । ସମସ୍ତଙ୍କ ସହିତ ପରିଚିତ ହୋଇ ସେମାନଙ୍କ ସମ୍ପର୍କରେ ଜ୍ଞାନ ଆହରଣ କରିବା କିମ୍ବା ଦେଶବିଦେଶର ଲୋକାଚାର, କୁଳାଚାର, ସଭ୍ୟତା, ସଂସ୍କୃତି, ଖାଦ୍ୟ, ବସ୍ତ୍ର ଇତ୍ୟାଦି ସମ୍ପର୍କରେ ଜାଣିବାନିମନ୍ତେ ସାହିତ୍ୟ ହିଁ ହେଉଛି ଏକମାତ୍ର ମାଧ୍ୟମ ।

ଜୀବନକାଳର ସ୍ୱଳ୍ପତା ଏବଂ ଜ୍ଞାନର ବିପୁଳତା ଦୃଷ୍ଟିରୁ ଆମେ ସାହିତ୍ୟ ସାହାଯ୍ୟରେ ହିଁ ବିଶାଳ ଜ୍ଞାନଭଣ୍ଡାରର ଅନେକ ଅଂଶ ଉପରେ ଦୃକ୍‌ପାତ କରିପାରିବା । କିନ୍ତୁ ଜାଣିବା ଏବଂ ତାହା ଦ୍ୱାରା ନିଜେ ପ୍ରୟୋଜନବୋଧରେ ପରିଚାଳିତ ହେବା ଅର୍ଥାତ୍ ଶିଖିବା ଯଦି ମଣିଷର ଲକ୍ଷ୍ୟ ହୁଏ, ତେବେ ଏଥିରେ ସଫଳତା ଲାଭ ନିମନ୍ତେ ସାହିତ୍ୟ ତୁଲ୍ୟ ବିଶେଷ ସଫଳ ମାଧ୍ୟମ ଆଉ ନାହିଁ । ସାହିତ୍ୟ ଯେହେତୁ ଅଜ୍ଞାନକୁ ଜ୍ଞାନ ଦାନକରେ, ଦୁର୍ବଳ

ହୃଦୟରେ ସାହସର ସଞ୍ଚାର କରେ, ନୈରାଶ୍ୟଜର୍ଜରିତ ପ୍ରାଣକୁ ଆଶାର ମନ୍ଦାକିନୀ-ଧାରାରେ ପ୍ଳାବିତ କରିଦିଏ; ଏହି କାରଣରୁ ହିଁ ସାହିତ୍ୟପାଠ ତୁଲ୍ୟ ଅବସର ବିନୋଦନର ଏତେ ଚମତ୍କାର ସାଧନ ଆଉ ନାହିଁ ।

## ଆଧୁନିକ ସାହିତ୍ୟ ବନାମ ପ୍ରାଚୀନ ସାହିତ୍ୟ

ସାହିତ୍ୟର ସୃଷ୍ଟି ଗଦ୍ୟ ମାଧ୍ୟମରେ । ଆଧ୍ୟାତ୍ମିକତା ହିଁ ଥିଲା ଏହାର ମୂଳପିଣ୍ଡ । ବର୍ଣ୍ଣନା-ବାହୁଲ୍ୟ, ସୁଦୂରପ୍ରସାରୀ, କଳ୍ପନାବିଳାସ, ବିସ୍ମୟ-ଉଦ୍ରେକକାରୀ କପୋଳକଳ୍ପିତ ବିଷୟବସ୍ତୁର ଅବତାରଣା, ଛନ୍ଦ ଏବଂ ଅଳଙ୍କାରର ପ୍ରାଧାନ୍ୟ ମଧ୍ୟଦେଇ ପ୍ରାଚୀନ ସାହିତ୍ୟ ଆତ୍ମପ୍ରକାଶ କରିଥିଲା । ନିଜ ପାଇଁ କେବେ ମଣିଷ ଏହି ଅଦ୍ଭୁତ କଳ୍ୟାଣମୟୀ ବିଷୟଟିକୁ ସୃଷ୍ଟିକଲା, ତାହା ଆଜି ଆଉ ସଠିକ୍ କହିହେବ ନାହିଁ । ତେବେ ମାନବଜାତିର ସୃଷ୍ଟି ସହିତ ଏହାର ସୃଷ୍ଟି ଏବଂ ଉନ୍ମେଷ ସହିତ ଉନ୍ମେଷ ବ୍ୟାପାରଟି ଜଡ଼ିତ । ଏହାକୁ ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞାବନ୍ତ ମାନବର ବିଦଗ୍ଧ ଅଭିବ୍ୟକ୍ତି ବୋଲିଯାଇପାରେ । ବିଧିବଦ୍ଧ ଭାବରେ ଲିପି ସୃଷ୍ଟିହୋଇ ଏହାର ଲିଖିତ ରୂପ ଆତ୍ମପ୍ରକାଶ କରିବା ପୂର୍ବରୁ ମଣିଷର ସ୍ମୃତିଶକ୍ତିକୁ ଆଶ୍ରୟ କରି ଏହା ବଞ୍ଚିରହିଥିଲା । ହିନ୍ଦୁମାନଙ୍କର ବେଦ ହେଉଛି ଏହାର ଉଦାହରଣ । ଏହାକୁ ଶୁଣି ଶୁଣି ମନେରଖାଯାଉଥିବାରୁ ଏହାର ଅପରନାମ ହେଉଛି 'ଶ୍ରୁତି' । ତା'ପରେ ସମୟ ସହିତ ତାଳଦେଇ କଳ୍ପନାଶକ୍ତିର ଅଭିନବ କାରିଗରିରେ ବୁଦ୍ଧିମନ୍ତ ହୋଇ ଏହା ବାସ୍ତବ-ଅଭିମୁଖୀ ହୋଇପଡ଼ିଛି । ସମାଜକୁ ଅବଲମ୍ବନ କରି ଏହାର ବିକାଶ ହୋଇଥିବାରୁ ଏହା ସମାଜାଶ୍ରୟୀ ହୋଇପଡ଼ିବା ସ୍ୱାଭାବିକ ।

ଦେବୀ-ଦେବତାଙ୍କର ମହିମା କୀର୍ତ୍ତନ, ପାପପୁଣ୍ୟର ସ୍ୱରୂପବର୍ଣ୍ଣନ, ପୁଣ୍ୟର ପ୍ରତିଷ୍ଠା ଏବଂ ପାପର ବିଳୟ, ବିଶ୍ୱପ୍ରକୃତିର ବୈଚିତ୍ର୍ୟ ବର୍ଣ୍ଣନା ଇତ୍ୟାଦି ପ୍ରାଚୀନ ସାହିତ୍ୟର ଧ୍ୟେୟ ଥିଲା । ଏହା ସହିତ ସ୍ଥାନପାଉଥିଲା ରାଜା ଓ ସାମନ୍ତମାନଙ୍କର ବୀରତ୍ୱର ଅପୂର୍ବ କାହାଣୀ, ସେମାନଙ୍କର ପ୍ରେମ-ପ୍ରଣୟର ବିବରଣୀ ଇତ୍ୟାଦି । ସାଧାରଣ ଜନତା, ସେମାନଙ୍କର ସୁଖ-ଦୁଃଖ ଇତ୍ୟାଦି ସାହିତ୍ୟଗର୍ଭିତ ହୋଇପାରୁନଥିଲା । ବର୍ଣ୍ଣନାର ବିଷୟବସ୍ତୁ ଥିଲା ଅଧ୍ୟାତ୍ମଭିତ୍ତିକ । ସଙ୍ଗୀତ ଏହାର ପ୍ରାଣ ଥିଲା । ଏପରିକି ଏହି କାଳରେ ସାମାନ୍ୟ ଯେଉଁ କେତେକ ଗଦ୍ୟ ରଚନା କରାଯାଇଛି, ଏଥିରେ ସୁଦ୍ଧା ଗୀତିରସିକତାର ପ୍ରୟୋଗ ଲକ୍ଷଣୀୟ ଭାବରେ କରାଯାଇଛି । ପ୍ରାଚୀନ ଭାରତୀୟ ସାହିତ୍ୟରେ 'ରସ'କୁ ପ୍ରାଧାନ୍ୟ ଦିଆଯାଇଥିଲେ ମଧ୍ୟ ଏଥିରେ ବକ୍ରୋକ୍ତି, ଧ୍ୱନି, ରୀତି ପ୍ରଭୃତିକୁ ପୁରାପୁରି ଅବହେଳା କରାଯାଇନାହିଁ । ପରବର୍ତ୍ତୀ କାଳରେ କାବ୍ୟ-ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଏଥିରେ ଅଳଙ୍କାର ମଧ୍ୟ ଯୁକ୍ତ

ହୋଇଛି । ଶବ୍ଦାଳଙ୍କାର ଏବଂ ଅର୍ଥାଳଙ୍କାର ପ୍ରୟୋଗ ଏହାକୁ ସମୟସମୟରେ ଏକ କସରତ ବ୍ୟାପାରରେ ପରିଣତ କରିଛି । ଯାହା ଦେଖାଯାଉଛି, ସୃଷ୍ଟିଲଗ୍ନରେ ସାହିତ୍ୟ ବକ୍ତବ୍ୟରେ ଏବଂ ଭାଷାରେ ଅତ୍ୟନ୍ତ ସରଳ ଥିଲା । ଭାରତବର୍ଷରେ ସଂସ୍କୃତ ନାମକ ଭାଷା ବିଜ୍ଞଜନମାନଙ୍କ ନିମନ୍ତେ ସୃଷ୍ଟି ହେବା ପରେ ପରେ କ୍ରମଶଃ ତାହାର ପ୍ରଭାବରେ ପ୍ରାନ୍ତୀୟ ଭାଷାଗୁଡ଼ିକ ମଧ୍ୟ ଶବ୍ଦଯୋଜନାର କୌଶଳକୁ ସାହିତ୍ୟର ଏକ ଗୁଣ ରୂପରେ ଗ୍ରହଣ କରିନେଲେ । ଫଳରେ କ୍ଲିଷ୍ଟ ପଦଯୋଜନା ସାହାଯ୍ୟରେ ଭାଷାର ଆଡ଼ମ୍ବର ସୃଷ୍ଟିକରି ପାଠକମାନଙ୍କୁ ମୁଗ୍ଧ ଚକିତ କରିଦେବାର ଏକ ପ୍ରଚେଷ୍ଟା ବେଶ୍ କିଛି କାଳ ଚାଲିଲା । ଓଡ଼ିଆ ସାହିତ୍ୟରେ ଅବଶ୍ୟ ଏହା ଘଟିଲା ଖୁବ୍ ବିଳମ୍ବରେ, ସପ୍ତଦଶ ଶତକର ମଧ୍ୟଭାଗରେ । ବ୍ରାହ୍ମଣ ପଣ୍ଡିତମାନଙ୍କର ଏକଦେଶଦର୍ଶିତା ହେତୁହିଁ ଓଡ଼ିଆ ସାହିତ୍ୟରେ ଏହା ଅନୁପ୍ରବେଶ କରିଥିଲା । ତଥାପି ଏହା ଦୀର୍ଘକାଳ ସ୍ଥାୟୀ ହୋଇ ନାହିଁ । ରସବାଦୀ ଭାରତୀୟ ସାହିତ୍ୟିକବୃନ୍ଦ ଶୃଙ୍ଗାରରସର ପ୍ରାଧାନ୍ୟ ସ୍ୱୀକାର କରିନେଇ ସାହିତ୍ୟ-ତତ୍ତ୍ୱରେ ତାକୁ ମୁଖ୍ୟରସ ବୋଲି ଉପସ୍ଥାପିତ କରିଦେଇଥିଲେ । ତେଣୁ ସାହିତ୍ୟିକବୃନ୍ଦ ଏହାର ପ୍ରଭାବରେ ନରନାରୀଙ୍କର ଦୈହିକ ପ୍ରେମର ଯେଉଁ ସାଡ଼ମ୍ବର ବର୍ଣ୍ଣନା ନିଜନିଜ କାବ୍ୟରେ ଦେଲେ, ତାହାକୁ ଆଧୁନିକ ଯୁଗରେ ଅଶ୍ଳୀଳ ବୋଲି କୁହାଗଲା ।

ଭାରତବର୍ଷରେ ଆଧୁନିକ ସାହିତ୍ୟ ସୃଷ୍ଟିହେଲା ଇଂରେଜମାନେ ଏ ଦେଶକୁ ଆସିବା ପରେ । ସେହି ହିସାବରେ ଆଧୁନିକ ଭାରତୀୟ ସାହିତ୍ୟର ସୃଷ୍ଟି ଅଷ୍ଟାଦଶ ଶତକର ପୂର୍ବବର୍ତ୍ତୀ ନୁହେଁ । ଇଂରେଜୀ ପ୍ରଭାବରେ ଏ ଦେଶର ସାହିତ୍ୟର ରୂପ ବଦଳିଗଲା । ଯେଉଁ ପ୍ରାଚୀନ ସାହିତ୍ୟ ଏ ଦେଶର ଜନତାଙ୍କର ଏତେ ଆଦରର ବସ୍ତୁ ଥିଲା, ତାକୁ 'ଅଗ୍ରାହ୍ୟ', ଅପାଠ୍ୟ, ଅଶ୍ଳୀଳ ଓ ଜଘନ୍ୟ କଳ୍ପନାମାନଙ୍କର ଜନନୀ' ବୋଲି କହି ଦୂରେଇଦିଆଗଲା । କଳ୍ପନାରେ ବିଚିତ୍ର ବିଳାସ ବଦଳରେ ସ୍ୱାଭାବିକତାକୁ ହିଁ ଅଧିକ ଗୁରୁତ୍ୱ ଦିଆଗଲା । ପ୍ରାଚୀନ ସାହିତ୍ୟ ଥିଲା ମୁଖ୍ୟତଃ ଆଦର୍ଶବାଦୀ । ଆଧୁନିକ ସାହିତ୍ୟରେ ଆଦର୍ଶବାଦ ସ୍ଥାନରେ ବାସ୍ତବବାଦକୁ ଗ୍ରହଣ କରିନିଆଗଲା । ଏହି ସମୟରେ ସୃଷ୍ଟି ହେଲା ଗଦ୍ୟର । ଉପନ୍ୟାସ, କ୍ଷୁଦ୍ରଗଳ୍ପ, ଏକାଙ୍କିକା, କବିତା, ରମ୍ୟରଚନା ପ୍ରଭୃତି ବହୁରୂପରେ ସାହିତ୍ୟ ପୁଷ୍ଟ ହେବାକୁ ଲାଗିଲା । ସବୁଠାରୁ ବଡ଼ କଥା ହେଲା, ଏଯାବତ୍ ଅବହେଳିତ ସାଧାରଣ ଜନତା ସେମାନଙ୍କର ଅଭାବ ଅଭିଯୋଗ ନେଇ ସାହିତ୍ୟର ଆସରକୁ ପ୍ରବେଶର ଛାଡ଼ପତ୍ର ପାଇଗଲେ । ଗଦ୍ୟର ବିପୁଳ ପ୍ରସାର, ପଦ୍ୟକୁ ମଧ୍ୟ ଗୀତିମୟ ତାକୁ ଦୂରକୁ ଠେଲିଦେଲା । କବିତା ହେଲା ଗଦ୍ୟମୟୀ, ଅଳଙ୍କାରହୀନା କିମ୍ବା ସ୍ୱଳ୍ପଅଳଙ୍କାରବିଶିଷ୍ଟା । ପ୍ରତୀକ-ଧର୍ମିତାକୁ ଚନ୍ଦ୍ରାର କଳାତ୍ମକ ରୂପଭାବରେ ଗ୍ରହଣ କରିନିଆଗଲା । ଏ ମଧ୍ୟରେ ସାହିତ୍ୟକୁ ଲୋକପ୍ରିୟ କରାଇବା ନିମନ୍ତେ ଭାଷାର ସାରଲ୍ୟ ଉପରେ ଅଧିକ ଗୁରୁତ୍ୱ ଦିଆଗଲା । କ୍ରମଶଃ ଆସିଲା ବିଭିନ୍ନ 'ବାଦ' (ism) । ଦେଶର ଶିଳ୍ପାୟନ, ଦୁଇ ଦୁଇଟା ବିଶ୍ୱଯୁଦ୍ଧ, ଫ୍ରଏଡ଼ଙ୍କର ଅଦ୍ଭୁତ ଆବିଷ୍କାର, ରାଜନୈତିକ ଜୀବନରେ ବିଚିତ୍ର

ପରିବର୍ତ୍ତିନ, ଏସବୁ ଇତିମଧ୍ୟରେ ସାହିତ୍ୟକୁ ଗଭୀର ଭାବରେ ପ୍ରଭାବିତ କରିବାକୁ ଆରମ୍ଭ କରିଛି । ଜୀବନଯାତ୍ରା କ୍ରମଶଃ ଯେଉଁଭଳି ଜଟିଳ ହୋଇଯାଉଛି; ସନ୍ଦେହ, ଛଳନା, ଅବିଶ୍ୱାସ,ପ୍ରବଞ୍ଚନା ମଧ୍ୟଦେଇ ମାନବଜାତି ଯେମିତି ଧକେଇ ଧକେଇ ଚାଲିଛି, ସାହିତ୍ୟରେ ଠିକ୍ ସେହିଭଳି ତା'ର ପ୍ରତିଫଳନ ଘଟୁଛି । ଭାଷାର କ୍ଲିଷ୍ଟତା କେଉଁକାଳରୁ ବିଦାୟ ନେଲାଣି । ତା' ସ୍ଥାନରେ 'ବୌଦ୍ଧିକତା' ନାମଧେୟ ଏକ ନୂତନ ଉତ୍ପାତର ଆମଦାନି ହୋଇ ପାଠ୍ୟ ଓ ପାଠକ ମଧ୍ୟରେ ଦୁର୍ଲଂଘ୍ୟ ପ୍ରାଚୀର ତୁଲ୍ୟ ଦଣ୍ଡାୟମାନ ।

ପ୍ରାଚୀନ ହେଉ ବା ଆଧୁନିକ ହେଉ, ଉଭୟେ ଉଭୟ ସମୟର ପ୍ରତିନିଧି । ଉଭୟଙ୍କଠାରେ ନିନ୍ଦା ଓ ପ୍ରଶଂସାର ଅନେକ ଉପାଦାନ ରହିଛି; ତାକୁ ସେହି ଦୃଷ୍ଟିରୁ ହିଁ ଗ୍ରହଣ କରାଯିବା ଉଚିତ ।

# ଓଡ଼ିଆ ସାହିତ୍ୟର ରୂପ-ବିଭବ

ସାହିତ୍ୟ ଓ ସଙ୍ଗୀତ ମଣିଷର ମନକୁ ଯୁଗେ ଯୁଗେ ପ୍ରଭାବିତ କରିଆସିଛି । ଏପରି ମନୁଷ୍ୟ ଖୋଜି ପାଇବା ବିରଳ; ଯେ ସାହିତ୍ୟ ଓ ସଙ୍ଗୀତର ଯାଦୁକରୀ ପ୍ରଭାବଦ୍ୱାରା ପ୍ରଭାବିତ ହୁଏ ନାହିଁ । ତେଣୁ ଏକ ସଂସ୍କୃତ ଶ୍ଳୋକରେ କୁହାଯାଇଛି ଯେ ସାହିତ୍ୟ ଏବଂ ସଙ୍ଗୀତ ପ୍ରତି ଯାହାର ଅନୁରକ୍ତି ନାହିଁ, ସେ ପୁଚ୍ଛ ଏବଂ ଶୃଙ୍ଗହୀନ ପଶୁ ସହିତ ତୁଳନୀୟ । ଅଶାନ୍ତ ମାନବ ମନରେ ଶାନ୍ତିର ପ୍ରଲେପ ବୋଳିଦେବା ନିମନ୍ତେ ସାହିତ୍ୟ ହେଉଛି ବିଶ୍ୱସ୍ରଷ୍ଟାଙ୍କର ଅମୃତମୟ ଦାନ ।

ଓଡ଼ିଆ ଜାତି ଭାରତବର୍ଷର ଏକ ପ୍ରାଚୀନ ଜାତି ହେଲେ ମଧ୍ୟ ନବମ ଶତକ ପୂର୍ବରୁ ଏହାର ସାହିତ୍ୟର କୌଣସି ଉପଲବ୍ଧ ରୂପ ଆମ ପାଖରେ ନାହିଁ । ଅଶୋକ ଖାରବେଳ କାଳରୁ ଯେଉଁ ଜାତି କେବଳ ମାତ୍ର ଭାରତରେ ନୁହେଁ, ଭାରତ ବାହାରେ ସୁଦ୍ଧା ପରିଚିତ ହୋଇସାରିଥିଲା, ତାହାର ସାହିତ୍ୟ ନଥିବ, ଏହା ସହଜରେ ବିଶ୍ୱାସ କରିହୁଏ ନାହିଁ । ବିଶେଷକରି କଳାକ୍ଷେତ୍ରରେ ନିଜର ଅପୂର୍ବ ପଟୁତା ପ୍ରଦର୍ଶନ କରି ଯେଉଁ ଜାତି 'ଉତ୍କଳ' ରୂପରେ ପରିଚିତ ହୋଇଥିଲା, ସାହିତ୍ୟ-କଳା ସମ୍ପର୍କରେ ତାହାର ନୀରବତା ବିସ୍ମୟ-ଜନକ । ଖାରବେଳଙ୍କ କାଳରୁ ଓଡ଼ିଆମାନଙ୍କର ନୃତ୍ୟ-ସଙ୍ଗୀତ-କୁଶଳତା ପ୍ରତିଷ୍ଠିତ ହୋଇସାରିଥିଲା । ସ୍ୱୟଂ ସମ୍ରାଟ୍ ନିଜକୁ 'ଗନ୍ଧର୍ବବେଦବିଦ୍ୟାନିପୁଣ' ବୋଲି ସଗର୍ବରେ ପରିଚିତ କରାଇଛନ୍ତି । ସେ ପୁଣି ନିୟମିତ 'ସମାଜ' (ନାଟକ) ଅଭିନୟର ବ୍ୟବସ୍ଥା କରାଉଥିଲେ । କାହିଁ ସେ ନାଟକ ? କାହିଁବା ସେ ସମୟର ସଙ୍ଗୀତ ?

ଯାହାହେଉ, ସହଜିୟା ସିଦ୍ଧମାନଙ୍କର ଦୋହାବଳୀ ପୂର୍ବରୁ ଏଠାରେ କେବଳ କେତେକ ଶିଳାଲେଖ (ଧଉଳି, ହାତୀଗୁମ୍ଫା, ଜଉଗଡ଼ ପ୍ରଭୃତି ସ୍ଥାନରେ), କେତେକ ତମ୍ବାପଟା ମାତ୍ର

ସେକାଳର ଭାଷା'ର ନମୁନା ସ୍ୱରୂପ ଆମ ପାଖରେ ରହିଛି । ଏ ସବୁର ଭାଷା ପୁଣି ଓଡ଼ିଆ ନୁହେଁ—କେଉଁଠି ପାଲି ତ, କେଉଁଠି ପ୍ରାକୃତ । ସର୍ବପ୍ରାଚୀନ ଏକାଦଶ ଶତାବ୍ଦୀର ହିଁ ଓଡ଼ିଆ ଶିଳାଲେଖ ମିଳୁଛି । ତାହାର ଭାଷା ସମ୍ପୂର୍ଣ୍ଣ ଓଡ଼ିଆ ନୁହେଁ । ଏକାଦଶଠାରୁ ଚତୁର୍ଦ୍ଦଶ ଶତକ ମଧ୍ୟରେ ରୁଦ୍ରସୁଧାନିଧି, ସୋମନାଥ ବ୍ରତକଥା, ନାଗଲ ଚଉଠି କଥା, ମାଦଳା ପାଞ୍ଜି ପ୍ରଭୃତି ଗଦ୍ୟ ରଚନା ତଥା ମାର୍କଣ୍ଡ ଦାସଙ୍କର କେଶବ କୋଇଲି ନାମଧେୟ ପଦ୍ୟରଚନା ଉପଲବ୍ଧ ହୋଇଛି । ଏହିସବୁ ପଦ୍ୟ ଏକାନ୍ତଭାବରେ ଗୀତଧର୍ମୀ । ପଦ୍ୟଗୁଡ଼ିକରେହିଁ ଏଥିରେ ଛନ୍ଦ, ଅଲଙ୍କାର, ଶବ୍ଦବିନ୍ୟାସ ଇତ୍ୟାଦି କରିଯାଇଛି । ଶୁଦ୍ରମୁନି ସାରଳା ପଞ୍ଚଦଶ ଶତକର ବିସ୍ମୟଜନକ ପ୍ରତିଭା । ଅଠର ଖଣ୍ଡରେ 'ମହା-ଭାରତ' ରଚନା କରି ସେ ଭାଷା-ସାହିତ୍ୟର ଯେଉଁ ଅପୂର୍ବ କୋଣାର୍କ ଗଢ଼ିଦେଇଗଲେ, ତହିଁରୁ ଓଡ଼ିଆ ଭାଷାର ବଳିଷ୍ଠତା ପ୍ରମାଣିତ ହେଉଛି । ତାଙ୍କ ସମୟକୁ ଓଡ଼ିଆ ସାହିତ୍ୟରେ 'ସାରଳାଯୁଗ' ବୋଲି ନାମିତ କରାଯାଇଛି । ଭାଷାର ସାରଲ୍ୟ ହେଉଛି ତାଙ୍କ ସାହିତ୍ୟର ପ୍ରଧାନ ବିଭବ । ଏହା ପରେ ଷୋଡ଼ଶ ଶତକରେ ବୈଷ୍ଣବଧର୍ମ ପ୍ରଚାରକ ଶ୍ରୀଚୈତନ୍ୟ ଓଡ଼ିଶାକୁ ଆସିଲେ । ଗଜପତି ପ୍ରତାପରୁଦ୍ର ସେ ସମୟରେ ଓଡ଼ିଶାର ଶାସକ । ସେ ଚୈତନ୍ୟଙ୍କଠାରୁ ଦୀକ୍ଷା ଗ୍ରହଣ କରିବା ଫଳରେ ସମଗ୍ର ରାଜ୍ୟରେ ବୈଷ୍ଣବଧର୍ମର ପ୍ଲାବନ ଖେଳିଗଲା । ଏହି ସମୟର ପାଞ୍ଚଜଣ କବି ଏ ଧର୍ମପ୍ରତି ଆକୃଷ୍ଟ ହେଲେ । ଏହି ପାଞ୍ଚଜଣ ବୈଷ୍ଣବ କବି ହେଲେ ବଳରାମ, ଜଗନ୍ନାଥ, ଅନନ୍ତ, ଅଚ୍ୟୁତ ଓ ଯଶୋବନ୍ତ । ପରବର୍ତ୍ତୀ କାଳରେ ଏମାନେ ହିଁ 'ବୈଷ୍ଣବ ପଞ୍ଚସଖା' ନାମରେ ପରିଚିତ ହେଲେ ଏବଂ ଏମାନଙ୍କର ସମୟକୁ ସାହିତ୍ୟରେ 'ପଞ୍ଚସଖାଯୁଗ' ବୋଲି କୁହାଗଲା । ଏମାନଙ୍କ ମଧ୍ୟରୁ ବଳରାମ ଦାସ ଓଡ଼ିଆରେ 'ଦାଣ୍ଡି ରାମାୟଣ' ରଚନା କଲେ ଏବଂ ଜଗନ୍ନାଥ ଦାସ ଲେଖିଲେ ଓଡ଼ିଆ ଭାଗବତ, ନବାକ୍ଷରୀ ବୃତ୍ତରେ, ଯାହା ଭିତରଦେଇ ଓଡ଼ିଆର ନିଃଶ୍ୱାସ ପ୍ରଶ୍ୱାସ ଏବେ ମଧ୍ୟ ପ୍ରବାହିତ । ଭାଷାର ସାରଲ୍ୟ ଏବଂ ଆଧ୍ୟାତ୍ମିକତାର ଚିତ୍ରଣ—ଏ ଯୁଗର ସାହିତ୍ୟିକ ଆଦର୍ଶ ହୋଇ ରହିଲା ।

ଏହା ପରେ ସପ୍ତଦଶ ଏବଂ ଅଷ୍ଟାଦଶ ଶତକକୁ 'ରୀତିଯୁଗ' ବା 'ଭଞ୍ଜଯୁଗ' ବୋଲି ନାମିତ କରାଯାଇଛି । ଏହି ସମୟର ପ୍ରଧାନ କବି ଉପେନ୍ଦ୍ର ଶୃଙ୍ଗାରରସାତ୍ମକ, ଗୀତମୟ ଆଲଙ୍କାରିକ କାବ୍ୟମାନ ରଚନା କରି ଏକ ନୂତନ ସାହିତ୍ୟିକ ଚେତନା ସୃଷ୍ଟି କଲେ । ଦୀନକୃଷ୍ଣ, ଧନଞ୍ଜୟ ପ୍ରଭୃତି ଏହାଙ୍କ ପୂର୍ବରୁ ତଥା କବିସୂର୍ଯ୍ୟ ବଳଦେବ, ଅଭିମନ୍ୟୁ, ବନମାଳୀ, ଗୋପାଳକୃଷ୍ଣ ପ୍ରଭୃତି ଏହାଙ୍କ ପରେ 'ରୀତି-ସାହିତ୍ୟ'ର ଆଦର୍ଶ ବଜାୟ ରଖିଛନ୍ତି । ଏହି ସାହିତ୍ୟକୁ ବ୍ରାହ୍ମଣାଧିପତ୍ୟ ବିରୁଦ୍ଧରେ ଏକ ମୌନ ପ୍ରତିବାଦ ବୋଲି କୁହାଯାଇପାରେ ।

ପ୍ରାଚୀନ ସାହିତ୍ୟ ମୁଖ୍ୟତଃ ଅଧ୍ୟାତ୍ମଭିତ୍ତିକ ଥିଲା । ଏଥିରେ ଛନ୍ଦ, ଅଲଙ୍କାର, ରସ, ଶବ୍ଦ ବିନ୍ୟାସର କାରିଗରି, ପ୍ରକୃତିବର୍ଣ୍ଣନା ସବୁ ପାରମ୍ପରିକ ରୀତିରେ କରାଯାଉଥିଲା ।

ଊନବିଂଶ ଶତକର ପ୍ରଥମ ପାଦରେ ବ୍ରିଟିଶ ଶାସକ ଓଡ଼ିଶା ଅଧିକାର କଲେ । ସେମାନଙ୍କ ପ୍ରଭାବରେ ଓଡ଼ିଶାର ଆମୂଳଚୂଳ ପରିବର୍ତ୍ତନ ଘଟିଲ । ସାହିତ୍ୟ କ୍ଷେତ୍ରରେ ମଧ୍ୟ ଏହି ପରିବର୍ତ୍ତନର ରୂପ ଦେଖିବାକୁ ମିଳିଲ । କବିବର ରାଧାନାଥ ଏହାର ଆଦିପ୍ରବର୍ତ୍ତକ ହୋଇ-ଥିବାରୁ ଏହି ସମୟକୁ 'ରାଧାନାଥଯୁଗ' ବୋଲି କୁହାଯାଇଛି । ମଧୁସୂଦନ, ଗଙ୍ଗାଧର, ନନ୍ଦକିଶୋର, ଫକୀରମୋହନ ପ୍ରଭୃତି ଏହି କାଳର ସ୍ମରଣୀୟ ସ୍ରଷ୍ଟା । ଗଦ୍ୟର ବିକାଶ ଏହି ସମୟର ଏକ ଉଲ୍ଲେଖଯୋଗ୍ୟ ଘଟଣା ।

କାବ୍ୟକ୍ଷେତ୍ରରୁ ରାଧାନାଥୀ ପ୍ରଭାବର ଅପସାରଣ ନିମନ୍ତେ ପ୍ରଥମେ ସ୍ୱର ଉତ୍ତୋଳନ କଲେ ଉତ୍କଳମଣି ଗୋପବନ୍ଧୁ । ଭାଷାର ସାରଲ୍ୟ ଏବଂ ଦେଶଜ ପ୍ରେମର ବର୍ଣ୍ଣନା ପ୍ରତି ତୀବ୍ର ଘୃଣା ଏହି ସାହିତ୍ୟର ମୂଳ ବକ୍ତବ୍ୟ ହେଲ । ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ପ୍ରଭୃତି ଗୋପବନ୍ଧୁଙ୍କ ଅନୁସରଣ କଲେ । ସାହିତ୍ୟରେ ଏମାନଙ୍କ କାଳକୁ 'ସତ୍ୟବାଦୀଯୁଗ' ବୋଲି କୁହାଯାଉଛି । ୧୯୨୦-୨୧ ମସିହା ବେଳକୁ ସାହିତ୍ୟକ୍ଷେତ୍ରରେ ଏକ ନୂତନ ପ୍ରବୃତ୍ତି ଆତ୍ମପ୍ରକାଶ କଲ । ବିଶ୍ୱକବି ରବୀନ୍ଦ୍ରନାଥ ଏ ଦେଶର ପାଞ୍ଚଜଣ ତରୁଣଙ୍କୁ ପ୍ରେରଣା ଯୋଗାଇଲେ । ଅନ୍ନଦାଶଙ୍କର, କାଳିନ୍ଦୀଚରଣ, ବୈକୁଣ୍ଠନାଥ, ହରିହର ଏବଂ ଶରତ୍‌ଚନ୍ଦ୍ର 'ସବୁଜଗୋଷ୍ଠୀ'ର ସ୍ରଷ୍ଟା । ତେଣୁ ସେମାନଙ୍କ ସାହିତ୍ୟ 'ସବୁଜଯୁଗ'ର ସାହିତ୍ୟ ନାମରେ ପରିଚିତ ।

ଏହାପରେ ସେଭଳି କୌଣସି କବିଙ୍କ ନାମାନୁସାରେ ଯୁଗର ନାମକରଣ ହୋଇନାହିଁ । ୧୯୫୦ ମସିହା ପରେ ଏ ଦେଶର ସାହିତ୍ୟିକବୃନ୍ଦ ଯାହା ସୃଷ୍ଟି କରୁଛନ୍ତି ତାହା ବିଶ୍ୱ-ସାହିତ୍ୟର ଏକ ସମାନ୍ତରାଳ ରୂପ ଭାବରେ ଗଢ଼ିଉଠୁଛି । କାବ୍ୟ-କବିତା କ୍ଷେତ୍ରରେ କୁନ୍ତଳାକୁମାରୀ, ମାୟାଧର, ରାଧାମୋହନ, ସଚ୍ଚିଦାନନ୍ଦ ୧୯୬୦ ମସିହା ମଧ୍ୟରେ; ତଥା ରମାକାନ୍ତ, ସୀତାକାନ୍ତ, ସୌଭାଗ୍ୟ କୁମାର, ବ୍ରଜନାଥ ପ୍ରମୁଖ ତାହାପରେ ବେଶ୍ କୃତିତ୍ୱ ଦେଖାଇଛନ୍ତି । ଏମାନଙ୍କ ମଧ୍ୟରୁ କବି ଜୟନ୍ତ ଏବଂ ସୀତାକାନ୍ତଙ୍କର କିଛି ଆନ୍ତର୍ଜାତିକ ଖ୍ୟାତି ମଧ୍ୟ ରହିଛି ।

ଗଳ୍ପ ଉପନ୍ୟାସ କ୍ଷେତ୍ରରେ ଏହି ସମୟ ମଧ୍ୟରେ କାହ୍ନୁଚରଣ, ଗୋପିନାଥ, ଶାନ୍ତନୁକୁମାର, କିଶୋରୀଚରଣ, ସୁରେନ୍ଦ୍ର, ଅଖିଳମୋହନ, ମନୋଜ ପ୍ରମୁଖ ବହୁ କଥାକାର ନିଜନିଜର ସ୍ମରଣୀୟ ସୃଷ୍ଟିରେ ସାହିତ୍ୟକୁ ପୁଷ୍ଟ କରିଚାଲିଛନ୍ତି । ଏମାନଙ୍କ ମଧ୍ୟରୁ ମନୋଜ ଦାସ ପୁଣି ଆନ୍ତର୍ଜାତିକ କ୍ଷେତ୍ରରେ ବେଶ୍ ଜଣାଶୁଣା ।

ଓଡ଼ିଆ ନାଟକ ଆରମ୍ଭ ହୋଇଥିଲ ଜଗନ୍ମୋହନଙ୍କଠାରୁ । ରାମଶଙ୍କର, ଅଶ୍ୱିନୀକୁମାର କାଳୀଚରଣ, ରାମଚନ୍ଦ୍ର, ଗୋପାଳ ଛୋଟରାୟ ପ୍ରଭୃତିଙ୍କ ବାଟଦେଇ ଆଜି ତାହା ମନୋରଞ୍ଜନଙ୍କ ନିକଟରେ ସହଜ ପୂର୍ଣ୍ଣତା ଲଭ କରିଛି । ଏ କ୍ଷେତ୍ରଟି ସମ୍ପ୍ରତି ମୌଳିକତାହୀନ ହୋଇପଡ଼ୁଛି । ପ୍ରବନ୍ଧ କ୍ଷେତ୍ରରେ ନଟବର ସାମନ୍ତରାୟ, ଚିତ୍ତରଞ୍ଜନ ଦାସ ପ୍ରମୁଖ ବହୁ ପ୍ରବୀଣ ସମାଲୋଚକ କଲମଚାଳନା କରିଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟର

ବୟସ ଶହେବର୍ଷରୁ କିଞ୍ଚିତ୍ ଅଧିକ । ଏହାର ଭିତରେ ଏହା ଯେତେ ଅଗ୍ରଗତି କରିଛି ତାହା ସନ୍ତୋଷଜନକ । କାଳର କଷଟିରେ ଏମାନଙ୍କ ପରୀକ୍ଷିତ ହେଲେ, ଏହାର ପ୍ରକୃତ ମୂଲ୍ୟ ନିରୂପିତ ହେବ ।

## ତୁମ ଜୀବନର ଏକ ସ୍ମରଣୀୟ ଘଟଣା

ଅନେକ ଦିନ ତଳର କଥା । ସେତେବେଳେ ଆମେସବୁ ସ୍କୁଲରେ ପଢ଼ୁଥାଉଁ । ନୂଆ ନୂଆ ସ୍ୱାଧୀନତା ମିଳିଥାଏ । ସମଗ୍ର ଦେଶରେ ଏଥିଜନମନ୍ତେ ଏକ ଅଭୂତପୂର୍ବ ଉତ୍ସାହ ଏବଂ ଉଦ୍ଦୀପନା ଦେଖାଯାଇଥାଏ । ସ୍ୱାଧୀନତା ଯେ କି ବସ୍ତୁ ଏବଂ କିଭଳି ଭାବରେ ତା'ର ଉପଯୋଗ କରାଯିବା ଉଚିତ. ସେ ସମ୍ପର୍କରେ ଆମର କୌଣସି ନିର୍ଦ୍ଦିଷ୍ଟ ଧାରଣା ଆସିନଥାଏ । ମଫସଲର ସ୍କୁଲ, କେବଳ ପଢ଼ିବା ବ୍ୟତୀତ ସେଠାରେ ଅନ୍ୟ କୌଣସି ବ୍ୟାପାରର ସୁଯୋଗ ନଥାଏ । ଜୀବନ ଗଡ଼ିଚାଲିଥାଏ ମନ୍ଥର ଗତିରେ । ରୁଟିନ୍ ଭିତରେ ଜୀବନର ଗତି ଯେପରି ନିସ୍ତରଙ୍ଗ । ଆଖପାଖ ଗାଁମାନଙ୍କରୁ ସ୍କୁଲକୁ କେତୋଟି ଛାତ୍ର ଆସନ୍ତି । ଆମେ ଯେଉଁମାନେ ଛାତ୍ରାବାସରେ ଥାଉଁ, ସେମାନଙ୍କଠାରୁ ସେମାନଙ୍କ ଗାଁରେ ଘଟୁଥିବା କିଛି କିଛି ଖବର ପାଉଁ । କେଉଁଠି କାହାକୁ ସାପ କାମୁଡ଼ିଲା, କାହାକୁ ଡାହାଣୀ ଲାଗିଲା, କାହା ଗାଁରେ ମଶାଣି ପାଖ ବରଗଛରେ ଏକ ଭୟଙ୍କର ବ୍ରହ୍ମରାକ୍ଷସ ଅଛି—ଏ ସମସ୍ତ କାହାଣୀ ଶୁଣି ଶୁଣି ଆମର ଦିନର ଶାନ୍ତି ଓ ରାତିର ନିଦ ହଜିଯାଏ । ତଥାପି ବାହାର ଦୁନିଆଁ ସାଙ୍ଗରେ ଆମର ସେତିକି ହିଁ ଯୋଗସୂତ୍ର ।

ଏତିକିବେଳେ ସ୍କୁଲ ତରଫରୁ ସ୍ଥିର ହେଲା, କୋଣାର୍କ ଦେଖିବାକୁ ଗୋଟିଏ ଦଳ ଶୀଘ୍ର ଯାତ୍ରା କରିବେ । ଯେଉଁ ସମୟର କଥା କହୁଛି, ସେ ସମୟରେ ରାସ୍ତାଘାଟ ସେମିତି କିଛି ନଥାଏ । ଯାନବାହନ କହିଲେ ସେଇ ସନାତନ ଆଉ ଅକୃତ୍ରିମ ବଳଦଗାଡ଼ି । ଏଣେ ଦୂରତ୍ୱ ମଧ୍ୟ ଶହେ ମାଇଲରୁ ଅଧିକ । ଯାଉଣୁ ଆସୁଣୁ ଖୁବ୍ କମ୍‌ରେ ଗୋଟିଏ ସପ୍ତାହ ଲାଗିଯିବ । ଗୋରୁଗାଡ଼ିରେ ଧକଡ଼-ଚକଡ଼ ହୋଇ ଏତେ ରାସ୍ତା ଯିବା-ଆସିବାରେ ବହୁତ କଷ୍ଟ ହେବ । ତଥାପି ନୂତନ ସ୍ଥାନ ଦେଖିବାର ଆଗ୍ରହ ଓ ଉଦ୍ଦୀପନା ମଧ୍ୟରେ ବାଟର ସମ୍ଭାବ୍ୟ ଅସୁବିଧାମାନ କାହିଁ କୁଆଡ଼େ ହଜିଗଲା । ଯିବାର ଦିନ ଯେତେ ପାଖେଇ ଆସୁଥାଏ, ମନର ଉଦ୍ଦୀପନା ସେତେ ବୃଦ୍ଧି ପାଉଥାଏ । ଶେଷକୁ ଯାଇହେବ କି ନାହିଁ, ଏ ବିଷୟରେ ସନ୍ଦେହ ମଧ୍ୟ ଦେଖାଯାଉଥାଏ । ଅବଶେଷରେ କିନ୍ତୁ ଯିବାର ମୁହୂର୍ତ୍ତଟି ଆସିଗଲା । ଜିନିଷପତ୍ର ସବୁ ଗୋରୁଗାଡ଼ିରେ ଲଦାଗଲା । ଆଜିଭଳି ହୋଟେଲ ଇତ୍ୟାଦିର ସୁବିଧା ସେତେବେଳେ ତ ନଥାଏ—ତେଣୁ ରୋଷେଇବାସ କରି ଖାଇବାକୁ ପଡ଼ିବ ।

ଚାଉଳ, ଡାଲି, ପରିବା ସବୁ ସାଥିରେ ନେବାକୁ ହେଲା । ଛାତ୍ରାବାସର ପୂଜାରୀ ସାଙ୍ଗରେ ଯାଉଛି । ସାଙ୍ଗରେ ଦୁଇଜଣ ଶିକ୍ଷକ ମଧ୍ୟ ଅଛନ୍ତି, ଆଉ ପଚିଶ ଜଣ ପିଲା । ଯେତେ ପାରିବେ ଚାଲିବେ, ଇଚ୍ଛା ହେଲେ ଶଗଡ଼ ଗାଡ଼ିରେ ବସିବେ । ଦିନକୁ ଅନ୍ତତଃ ପଚିଶ ମାଇଲ ଯାଇପାରିଲେ, ଚତୁର୍ଥଦିନ କୋଣାର୍କରେ ପହଞ୍ଚିଯାଇହେବ ।

କୁମାରପୂର୍ଣ୍ଣିମୀ ପାଖେହୋଇ ଆସୁଥାଏ । ବର୍ଷାର ଘନଘଟା ସମ୍ପୂର୍ଣ୍ଣରୂପେ ଦୂର ହୋଇଯାଇଥାଏ । ଶରତ୍‌କାଳର ଚକ୍ ଚକ୍ ମେଘମୁକ୍ତ ସୁନେଲି ଖରା, ଦିଗହଜା ଧାନକ୍ଷେତ ଉପରେ ପବନର ଖିଲ୍ ଖିଲ୍ ଖେଳ, ପୂର୍ଣ୍ଣଗର୍ଭା ନଦୀ ଆଉ ପୁଷ୍କରିଣୀର ନୀଳଜଳ, ନଦୀପଠାର ଶୁଭ୍ର ଧବଳ କାଶତଣ୍ଡି ଆଉ ଚଳପାଟରେ ପ୍ରସ୍ଫୁଟିତ ପଦ୍ମକୁମୁଦବନର ଶୋଭା ଉପଭୋଗ କରି କରି ଆମେ ପଥ ଚାଲୁଥାଉ । ଅବଶେଷରେ ଆମେ ଚତୁର୍ଥ ଦିନ ଲାଙ୍ଗୁଳା ନରସିଂହଙ୍କର ସେହି ଅପୂର୍ବ କୀର୍ତ୍ତି ନିକଟରେ ଉପସ୍ଥିତ ହୋଇଗଲୁଁ ।

ପୃଥିବୀର ଏହି ଅଷ୍ଟମ ଆଶ୍ଚର୍ଯ୍ୟ କୋଣାର୍କ ମନ୍ଦିର ନିକଟରେ ପହଞ୍ଚି ଆମର ସମସ୍ତ କ୍ଲାନ୍ତି ସମସ୍ତ କ୍ଳେଶ ମୁହୂର୍ତ୍ତକ ମଧ୍ୟରେ ଦୂର ହୋଇଗଲା ଭଳି ଲାଗିଲା । ପ୍ରଶସ୍ତ ବାଲିବନ୍ତ ମଧ୍ୟରେ ଉତ୍କଳୀୟମାନଙ୍କର କଳା-ପାଟବତାର ଅପୂର୍ବ ନିଦର୍ଶନ ଏହି ଅପୂର୍ବ ମନ୍ଦିରଟି ଆକାଶକୁ ମଥାଟେକି ଦଣ୍ଡାୟମାନ । ମୂଳ ମନ୍ଦିରଟି ଭାଙ୍ଗିଯାଇଛି, ବାକୀ ଅଛି କେବଳ ଚଳସ୍ଥାନ ନୃତ୍ୟଶାଳା ଏବଂ ଅର୍ଦ୍ଧଭଗ୍ନ ନାଟମଣ୍ଡପଟି । ମନ୍ଦିର ଦେହ ମୋଟା ଶିଉଳିରେ ଆଚ୍ଛାଦିତ । ବେଢ଼ା ନାନାପ୍ରକାରର ଅରଣ୍ୟ ଗୁଳ୍ମରେ ପୂର୍ଣ୍ଣ । ପ୍ରାୟ ଭଗ୍ନ କିମ୍ବା ଅର୍ଦ୍ଧଭଗ୍ନ ମୂର୍ତ୍ତି, ସୂକ୍ଷ୍ମ କାରୁକାର୍ଯ୍ୟ ହୋଇଥିବା ପଥରଖଣ୍ଡ ଚାରିଆଡ଼େ ଇତସ୍ତତଃ ବିକ୍ଷିପ୍ତହୋଇ ପଡ଼ିଛି । ଅଦୂରସ୍ଥ ଘଞ୍ଚ ଝାଉଁବଣରୁ ପବନର ସାଇଁ ସାଇଁ ଶବ୍ଦ ଶୁଣାଯାଉଛି । ଶରତ୍ ଅପରାହ୍ନର ସେହି ନିସ୍ତବ୍ଧ ମୁହୂର୍ତ୍ତ, ଦିବସ ଶେଷର ରକ୍ତବର୍ଣ୍ଣ ଆକାଶର ପୃଷ୍ଠଭୂମିରେ ପୂର୍ବପୁରୁଷମାନଙ୍କ ସେଇ କୃତ୍ତିକାସ୍ତ ଅପୂର୍ବ ସ୍ମୃତିଚିହ୍ନ ମନକୁ କିଭଳି ଉଦାସ କରିଦେଲା । କିଛି ବୁଝି ନପାରିଲେ ମଧ୍ୟ କଳାର ଏହି ହତଶ୍ରୀ ରୂପ ଦର୍ଶନରେ ମନ ବିଷଣ୍ଣ ହୋଇଉଠିଲା ।

ସାର୍‌ଙ୍କଠାରୁ ଶୁଣିଲୁ ତ୍ରୟୋଦଶ ଶତକରେ ଗଜପତି ନରସିଂହଦେବ ଚନ୍ଦ୍ରଭାଗା ନଦୀ ଏବଂ ସମୁଦ୍ରର ମୁହାଣ ପୋତାଇ ସେକାଳର ଓଡ଼ିଶାର ଷୋହଳ ବର୍ଷର ରାଜସ୍ୱ ଖର୍ଚ୍ଚ କରି ସୂର୍ଯ୍ୟପୂଜା ନିମନ୍ତେ ଏହି ଅପୂର୍ବ ଦେଉଳଟି ତିଆରି କରାଇଥିଲେ । ସମଗ୍ର ମନ୍ଦିରଟି ତିଆରି ହୋଇଥିଲା ଏକ ରଥ ରୂପରେ । ଉଦିତ ସୂର୍ଯ୍ୟର ପ୍ରଥମ କିରଣ ମନ୍ଦିରଗର୍ଭରେ ଥିବା ସୂର୍ଯ୍ୟବିଗ୍ରହର ପାଦ ସ୍ପର୍ଶ କରୁଥିଲା । କିମ୍ବଦନ୍ତୀ କହେ ମନ୍ଦିରର ଚୂଳ ବସାଇଥିଲା ଧର୍ମପଦ ନାମରେ ଗୋଟିଏ ଦ୍ୱାଦଶ ବର୍ଷୀୟ କିଶୋର ଏବଂ ଶିଳ୍ପୀକୁଳର ସମ୍ମାନ ରକ୍ଷା କରିବା ନିମନ୍ତେ ମନ୍ଦିରଚୂଳରୁ ସମୁଦ୍ର ମଧ୍ୟକୁ ଡେଇଁପଡ଼ି ପ୍ରାଣ ବିସର୍ଜନ ଦେଇଥିଲା । ସେଥିପାଇଁ ଏବେ ମଧ୍ୟ ଲୋକୋକ୍ତି ରହିଛି : 'ବାରଶହ ବଢ଼େଇରେ ଦାସ୍ତ ନା ପୁଅରେ ଦାସ୍ତ' । ପ୍ରସିଦ୍ଧ କୋଣାର୍କ ଚକର ଅଙ୍ଗସଜ୍ଜା ଦେଖିଲୁ । ଏଗୁଡ଼ିକ ନିହାଣରେ ଖୋଳାଯାଇଛି କିମ୍ବା ଛୁଞ୍ଚିରେ ଖୋଳାଯାଇଛି, ତାହା ହଠାତ୍ ବୁଝିହୁଏ ନାହିଁ । କୋଣାର୍କର ବିଶ୍ୱ ପ୍ରସିଦ୍ଧ, ପଥରରେ ନିର୍ମିତ ଘୋଡ଼ା ଆଉ ହାତୀର ଅପୂର୍ବ ସଜୀବତା ଆମକୁ ମୁଗ୍ଧ କରିଦେଲା ।

ମନ ଗୃହକୁ ନଥାଏ, ତଥାପି ଫେରିବାକୁ ହେବ । ରାତିରେ ଆମ ଚାରିପଟେ ଗୋରୁଗାଡ଼ି-ଗୁଡ଼ିକୁ ଘେରାଇଦେଇ ଉନ୍ମୁକ୍ତ ପ୍ରାନ୍ତରରେ ବିଶ୍ରାମ ନେଲୁ । ଏଣେତେଣେ ଗଳ୍ପ ଚାଲିଥାଏ । ଉପରେ ଆକାଶରେ ପୂର୍ଣ୍ଣଚନ୍ଦ୍ର ସହ ତଯାବାଦଲର ଲୁଚକାଳି ଖେଳ ଦେଖୁ ଦେଖୁ କେତେବେଳେ ଟିକିଏ ତନ୍ଦ୍ରା ଆସିଯାଇଥିଲା । ହଠାତ୍ ଅଦୂରରୁ ଏକ ଅସ୍ୱାଭାବିକ ଗର୍ଜନ ଶୁଣି ନିଦ କାହିଁ କୁଆଡ଼େ ପଳାଇଲା । ଚୁପା ଆଲୋଚନା ଶୁଣାଗଲା – ବାଘ, ବାଘ । ଆମ ଭିତରୁ ଜଣେଅଧେ ହୁଏତ ସର୍କସରେ ବା କଲିକତା ଚିଡ଼ିଆଖାନାରେ ବାଘ ଦେଖିଥିବେ; ମାତ୍ର ଅଧିକାଂଶ ବିଲୁଆ ବ୍ୟତୀତ ଅନ୍ୟ ବନ୍ୟପ୍ରାଣୀ ଦେଖିନାହାନ୍ତି । ବ୍ୟାଘ୍ରର ଘନ ଘନ ଗର୍ଜନ ସେତେବେଳେ ତେଣୁ ଆମ ଭିତରେ କି ପ୍ରତିକ୍ରିୟା ସୃଷ୍ଟି କରିଥିବ, ତାହା ଅନୁମାନସାପେକ୍ଷ ।

ବାଘ ନିଆଁକୁ ଡ଼ରେ । ନିଆଁହୁଳା ଦେଖିଲେ ସେ କଦାପି ପାଖକୁ ଆସିବ ନାହିଁ । ଆମ ପାଖରେ ମିଞ୍ଜିମିଞ୍ଜି ଜଳୁଥିବା ଦୁଇ ଚାରିଟା ଲଣ୍ଠନ ରହିଛି; ସେଥିରେ କାମ ଚଳିବ ନାହିଁ । ପ୍ୟାଣ୍ଟ, ସାର୍ଟ, ଚଦର, ଗାମୁଛା, ଯିଏ ଯାହା ପାରିଲା ଗୁଡ଼ାଇ ନେଇ ତତ୍‌କ୍ଷଣାତ୍ ନିଆଁହୁଳାମାନ ପ୍ରସ୍ତୁତ କରିପକାଇଲୁ । ଗାଡ଼ି ଯୋଚି ସାଙ୍ଗେ ସାଙ୍ଗେ ନିଆଁ-ହୁଳାମାନ ହାତରେ ଧରି ଆମେ ସ୍ଥାନ ତ୍ୟାଗକଲୁ । ମଝିରେ ମଝିରେ ବ୍ୟାଘ୍ରର ଗର୍ଜନ ଶୁଣାଯାଉଥାଏ ।

ସମୟର ପ୍ରଭାବରେ ସବୁ ଭୁଲିହୋଇଯାଏ । ମାତ୍ର ସେଦିନ ସେଇ ରାତିର ନିର୍ଜନତା, ଆମର ଅସହାୟ ଅବସ୍ଥା, ଆତ୍ମରକ୍ଷା ନିମନ୍ତେ ବ୍ୟାକୁଳ ପ୍ରଚେଷ୍ଟା ଏ ସମସ୍ତ ଆଜି ପର୍ଯ୍ୟନ୍ତ ଟିକିନିଖି ମନେରହିଛି । ବାଘକୁ ଆମେ ଦେଖିନାହୁଁ । ଯଦିବା ସେ ଆସି ଆମ ଭିତରୁ କାହାକୁ ଧରିନେଇଥାନ୍ତା, ଆମେ କ'ଣ କରିଥାଆନ୍ତୁ ? ଆଖି ବୁଜିଲେ ସେ ଦିନର ସେହି ଭୟଙ୍କର ଚେହେରାଗୁଡ଼ିକ ମନ ଭିତରେ ଝଲସିଯାଏ । କେବଳ ମାତ୍ର ଈଶ୍ୱରଙ୍କ କରୁଣାରୁ ହିଁ ଆମେ ସେଦିନ ନିରାପଦ ଭାବରେ ଫେରିଆସିପାରିଥିଲୁ । ଏ ଘଟଣା ଭୁଲିନାହିଁ କିମ୍ବା ମରଣ ପର୍ଯ୍ୟନ୍ତ ଭୁଲିପାରିବି ନାହିଁ ମଧ୍ୟ ।

## ତୁମର ପ୍ରିୟ ପୁସ୍ତକ

ଅନ୍ୟର ଅଭିଜ୍ଞତାରୁ ଶିକ୍ଷା କରିବା ନିମନ୍ତେ, ସମାଜ-ଜୀବନ ସହିତ ଭଲ ଭାବରେ ପରିଚିତ ହେବା ନିମନ୍ତେ ତଥା ଅବସର ବିନୋଦନ ନିମନ୍ତେ ଆମେ ପୁସ୍ତକ ପାଠ କରିଥାଉଁ । କବି ବା ଲେଖକ ଏଥିରେ କୌଣସି ଘଟଣା, କିଛି ଚରିତ୍ର ବା ପରିବେଶ, ନିଜ ଅନୁଭୂତିର ବର୍ଣ୍ଣନା କରିଥାଆନ୍ତି । ପାଠକ ତାକୁ ପଢ଼େ । ବର୍ଣ୍ଣିତ ଘଟଣା, ଚରିତ୍ର ବା ପରିବେଶ ସହିତ ଏକାତ୍ମ ହୋଇଯାଏ । ତା'ର ବାରମ୍ବାର ମନେହୁଏ, ବର୍ଣ୍ଣିତ ଘଟଣା

ତା' ନିଜ ଜୀବନର ମଧ୍ୟ ହୋଇପାରେ କିମ୍ବା ଚରିତ୍ର ସହ ତା' ନିଜର ଅନେକ ସାମଞ୍ଜସ୍ୟ ରହିଛି । ଏଇଠି ଲେଖକର ସମସ୍ତ ପରିଶ୍ରମ ସାର୍ଥକ ହୋଇଯାଏ । ପାଠକର ମନରେ ସେ କାଳକାଳକୁ ଅମର ହୋଇଯାଏ । ତେଣୁ କବି ବା ଲେଖକଙ୍କୁ 'ସ୍ରଷ୍ଟା' ବୋଲି କୁହାଯାଇଥାଏ ।

ଏହିଭଳି ଖଣ୍ଡିଏ ଯୁଗାନ୍ତକାରୀ ପୁସ୍ତକ ମୁଁ ଥରେ ପଢ଼ିଥିଲି, ଯାହାର ପ୍ରତ୍ୟେକଟି ବର୍ଣ୍ଣନା ଏବେ ମଧ୍ୟ ମୋ ସ୍ମୃତିରେ ଉଜ୍ଜ୍ୱଳ ରହିଛି । ପଥରରେ ଟଣାହୋଇଥିବା ଗାର ଭଳି ତାହା କାଳକାଳକୁ ରହିଥିବ । ତା'ପରେ ମଧ୍ୟ କେତେ ଉପାଦେୟ ପୁସ୍ତକ ପଢ଼ିଛି ଯାହା ମାନ ଦୃଷ୍ଟିରୁ ହୁଏତ ମୋର ପ୍ରିୟ ପୁସ୍ତକକୁ ଅତିକ୍ରମ କରିଯିବେ । ମାତ୍ର ମୋର ସେହି ପ୍ରଥମ ଅନୁଭୂତିକୁ ମୁଁ ଆଜି ମଧ୍ୟ ଭୁଲିପାରୁନାହିଁ । ହୁଏତ ଏହା ସମୟର ପ୍ରଭାବ ହୋଇପାରେ; ହୋଇପାରେ ବା ଅନ୍ୟ କିଛି; ତଥାପି ମୋର ସେହି ପୁସ୍ତକ ଏବେ ମଧ୍ୟ ମୋ ଜୀବନର ପ୍ରିୟତମ ବସ୍ତୁ ହୋଇ ରହିଛି । ଏବେ ମଧ୍ୟ ସମୟ ମିଳିଲେ ମୁଁ ତାର ସେଇ ଜୀର୍ଣ୍ଣ ପୃଷ୍ଠା ଭିତରେ ନିଜକୁ ହଜାଇଦିଏ । ଯେତେ ପଢ଼େ ସେତେ ନୂଆ ଲାଗେ । ମୁଁ ନିଜକୁ ଭୁଲିଯାଏ । ଭୁଲିଯାଏ ବିଶ୍ୱ ସଂସାରକୁ । ପୁସ୍ତକର ଚରିତ୍ର ସବୁ ଜୀବନ୍ତ ହୋଇ ମୋ ଚକ୍ଷୁପଟରେ ଦୁଲି ବୁଲନ୍ତି । ମୁଁ ଆତ୍ମହରା ହୋଇଯାଏ ।

କଲେଜକୁ ନୂଆ ନୂଆ ଆସିଥାଏ । କେଜାଣି କେମିତି ଥରେ ଏକ ଶୀର୍ଣ୍ଣକାୟ ପୁସ୍ତକ ମୋ ହାତକୁ କେଉଁଠୁ ଆସିଲା । ତା'ର ମଲାଟରେ କୃଷ୍ଣବର୍ଣ୍ଣ ରେଖାରେ ଏକ କୃଷକର ସିଲହଟ୍ ଚିତ୍ର । ତା'ର କାନ୍ଧରେ ଗୋଟାଏ କୋଦାଳ । ତା' ପରେ ଉତ୍ସର୍ଗ ପତ୍ରରେ ଲେଖାଥିଲା—

'ଦୁନିଆର ହାଟେ କୋଟି ହୀରା ନୀଳା, ମଣି ମାଣିକର ରୁଲି,
ମାଟିର ପିତୁଳା ଗଢ଼ି ଥୋଇଦେଲି କିଏ ପରୀବର ମୂଲ ।'

ତା'ପରେ ପୁଣି କବି ବୈକୁଣ୍ଠନାଥଙ୍କ କବିତାର ଏକ ପଙ୍‌କ୍ତି—

ଜୀବନର ଯଜ୍ଞେ ହୀନ ଅକିଞ୍ଚନ,
ଲଭନ୍ତି ଆହୁତି ତହିଁ ପାତିଛ ଆସନ ।
ହେ ଦରିଦ୍ର ସଖା ନିଖିଳର ରାଜେଶ୍ୱର,
କରିବାକୁ ଏ ଜୀବନ ସୁନ୍ଦର ଅମର
ବରିନେଇଅଛ ଆପେ ଦୈନ୍ୟ ନିଯାତନ ।

ତା'ପରେ ଉପନ୍ୟାସର ଆରମ୍ଭ—ଆମର ଏଇ ଅତି ଜଣାଶୁଣା ଅତି ପୁରୁଣା ସୂର୍ଯ୍ୟପର କୋଟି କୋଟି ସକାଳ ଇତ୍ୟାଦି । ପୁସ୍ତକଟିର ମଲାଟଚିତ୍ର, ଉତ୍ସର୍ଗପତ୍ର ବୈକୁଣ୍ଠନାଥଙ୍କର କବିତା ଏବଂ ଶେଷକୁ ପ୍ରଥମ ଧାଡ଼ିଟି ମୋ ମନରେ ଏଭଳି ଭାବରେ ଲାଗିଗଲା ଯେ, ମୁଁ ପୁସ୍ତକଟି ଭିତରେ ବୁଡ଼ିଗଲି । ତା'ପରେ କେତେବେଳେ ଛକଡ଼ି ଆଜ

ନେଳମଣିର ଆଚରଣରେ ହସିଛୁ, ଧରମା ଭାଇର ଅସହାୟତାରେ ଆଖି ଛଳଛଳ ହୋଇ ଉଠିଛି। ଶେଷରେ ସମସ୍ତ ମାୟା ମମତା ତୁଟାଇ ପଥରର ମଣିଷ ବରଜୁ ଘରଦ୍ୱାର ଛାଡ଼ି ରାସ୍ତାକୁ ବାହାରିଆସିଛୁ, ସେତେବେଳେ ମୁଁ ସ୍ତବ୍ଧ ହୋଇଯାଇଛୁ। ପୁଣି ଯେତେବେଳେ ହରିପୁର ସେଣ ଘର ପିଣ୍ଡାରେ ଛକଡ଼ିକୁ ଅସହାୟ ଭାବରେ ବସିଥିବାର ଦେଖିଛୁ, ଆଉ ବରଜୁ ତାକୁ ପଚାରୁଛୁ, "କରେ, ତୁ କୁଆଡ଼େ ଆସିଗଲୁ?" ଛକଡ଼ିର ସଂକ୍ଷିପ୍ତ ଉତ୍ତର— "ମୁଁ ଯିବି।" ଏହାରି ଭିତରେ ସମଗ୍ର ବିଶ୍ୱସଂସାର ଭୁଲିହୋଇଯାଇଛି ବରଜୁର : 'ଛି ଛି, ମାଇଚିଆ ଟୋକାଟା'—ଆଉ ଦୁଇଟୋପା ଲୁହ ମୋ ଆଖିର ସମୁଦ୍ରରେ ଲୁହର ଢେଉକୁ ଉଦ୍‌ବେଳିତ କରିପକାଇଛି। ପରାଜୟରେ ଯେ ଏତେ ଆନନ୍ଦ ଥାଏ, ତାହା ମୁଁ ସେଇ ପ୍ରଥମ ଥର ପାଇଁ ଅନୁଭବ କରିଛୁ।

କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ 'ମାଟିର ମଣିଷ' ଉପନ୍ୟାସ ୧୯୩୧ ମସିହାରେ ପ୍ରକାଶିତ ହୋଇଛି। ଏଥିରେ ପଲ୍ଲୀମାଳିନୀ ଉତ୍କଳର ବିରୂପା ନଦୀ କୂଳର ଅତି ଗୋଟିଏ ଶ୍ରେଷ୍ଠ ଗାଁ ପଧାନ ପଡ଼ା—ଆଉ ସେଇ ଗାଁର ଶ୍ୟାମ ପଧାନର ପରିବାର ବିଷୟରେ ହିଁ ବର୍ଣ୍ଣନା କରାଯାଇଛି। ଶାମ ପଧାନର ଦୁଇପୁଅ - ବରଜୁ ଆଉ ଛକଡ଼ି। ବରଜୁ ଆଦର୍ଶବାଦୀ, ପରୋପକାରୀ। ଆଉ ବଡ଼ଭାଇର ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ନିକଟରେ ଛକଡ଼ି କେମିତି ଅସହାୟ, ଅନୁଜ୍ଜ୍ୱଳ ଏବଂ ମ୍ଳାନ। ତା'ର ନିଜର କିଛି ଚିନ୍ତା କରିବାର ଶକ୍ତି ନାହିଁ। ମତାଇଦେଲେ ମାତିଯାଏ। ଘରେ ନେଳମଣି ଆଉ ବାହାରେ ହରି ମିଶ୍ର—ତାକୁ ଉତ୍ତେଜିତ କରିବାକୁ ରହିଛନ୍ତି। ଶାମ ପଧାନର ମୃତ୍ୟୁ ପରେ, ଏମାନଙ୍କ ପ୍ରେରଣାରେ ଛକଡ଼ି ଯେତେବେଳେ ଭାଇଠୁଁ ଭିନ୍ନେ ହେବାକୁ ଚାହିଁଲା, ବରଜୁ ବହୁତ ଚେଷ୍ଟା କଲା ପରିବାରର ସଦ୍‌ଭାବ ବଜାୟ ରଖିବାକୁ। ମାତ୍ର ଅସଫଳ ହୋଇ ଶେଷରେ ଘର ଛାଡ଼ି ବାହାରିଗଲା। ବାପ କହିଛି, ଭାଲରେ ହାଡ଼ ପଡ଼ିବ ନାହିଁ, ଦୁଆରେ ପାଚେରି ଉଠିବ ନାହିଁ। ଛକଡ଼ିର ପୃଥିବୀ ଶୂନ୍ୟ ହୋଇଗଲା। ବରଜୁର ଆଶ୍ରୟ ବିନା ଏ ପୃଥିବୀ ଯେ ଠିକ୍ ଭାବରେ ଚାଲିପାରେ, ଏହା ସେ ଆଉ ମୋଟେ ବିଶ୍ୱାସ କରିପାରିଲା ନାହିଁ। ସେ ଅପେକ୍ଷା କଲା, ଶେଷରେ ଏହି ଭୟଙ୍କର ଶୂନ୍ୟତା ପାଖରୁ ସତେ ଯେମିତି ପଳାଇଯାଇ ବରଜୁର ସେଇ ବିଶାଳ ଛାୟାରେ ଠିଆ ହେଲା। ଏଥର ସେ ନିଶ୍ଚିନ୍ତ। ନେଳମଣି ଯେତେ ଝିଙ୍ଗାସୁ, ହରି ମିଶ୍ର ଯାହା କହନ୍ତୁ, ସେଥିରେ ତାର କଣ ଥାଏ? ଏତିକିମାତ୍ର ହେଉଛି ଉପନ୍ୟାସର କଥାବସ୍ତୁ। ମଣିଷ-ଚରିତ୍ରର ବିଭିନ୍ନ ଦିଗ ଔପନ୍ୟାସିକ ଯେମିତି ନିପୁଣ ଭାବରେ ଦେଖାଇଦେଇଛନ୍ତି, ଉତ୍କଳୀୟ ପଲ୍ଲୀ-ଜୀବନର ଯେଉଁ ବାସ୍ତବ କଲାତ୍ମକ ଚିତ୍ର ଏଥିରେ ଅଙ୍କିତ ହୋଇଛି, ତାହା ଗୋଟିଏ କଥାରେ ଅନବଦ୍ୟ ବୋଲି କୁହାଯାଇପାରେ। ଗ୍ରାମ-ଉତ୍କଳ, ତାହାର ଅଜସ୍ର ସମସ୍ୟା ସତେ ଯେପରି ଏହି ଉପନ୍ୟାସଟି ମଧ୍ୟରେ ସାକାର ହୋଇଛି। ବର୍ଣ୍ଣନା ପାଇଁ ଲେଖକ ଯେଉଁ ମନଛୁଆଁ ଭାଷାର ବ୍ୟବହାର କରିଛନ୍ତି, ସେ ସବୁ ପରିବେଶ ଆଉ ଚରିତ୍ର ସହିତ ମିଶିଯାଇଛି। ତେଣୁ ଉପନ୍ୟାସଟି ମୋର ଏତେ ପ୍ରିୟ।

ତା'ପରେ କାଳିନ୍ଦୀଚରଣଙ୍କର ଲୁହାର ମଣିଷ, ଆଜିର ମଣିଷ, ମୁକ୍ତାଗଡ଼ର କ୍ଷୁଧା ପ୍ରଭୃତି ଉପନ୍ୟାସ ମୁଁ ପଢ଼ିଛି । ମାତ୍ର ପ୍ରଥମ ଉପନ୍ୟାସଟିର ରୋମାଞ୍ଚକର ଆନନ୍ଦ ଅନ୍ୟ କେଉଁଥିରୁ ପାଇନାହିଁ । ଉପନ୍ୟାସଟିର ପ୍ରତ୍ୟେକ ବର୍ଣ୍ଣନା ମନରେ ମୋର ସ୍ଥାୟୀ ଭାବରେ ଦାଗ କାଟିଦେଇଛି । ସମୟ ଆସିବ, ଯେତେବେଳେ ଆମର ସାମାଜିକ ଜୀବନ ସମ୍ପୂର୍ଣ୍ଣ ଭାବରେ ବଦଳିଯିବ । ବରଜୁ ଆଉ ଛକଡ଼ିର ସମସ୍ୟା ଲୋକଙ୍କ ହାସ୍ୟମୁଖର କରାଇବ । ଯୌଥ-ପରିବାରରେ ବାସକରିବାର ଯେଉଁ ଆନନ୍ଦ, ଅପରର ନିମନ୍ତେ କିଛି କରିପାରିବାରେ ଯେଉଁ ରୋମାଞ୍ଚ ତା' କେବଳ ସ୍ମୃତିର ଉପାଦାନ ହୋଇ ରହିବ । ତଥାପି ସଂସାରର ସ୍ୱାର୍ଥପରତାରେ ଅନ୍ତବ୍ୟସ୍ତ ହୋଇ ମଣିଷ ଯେତେବେଳେ ଶାନ୍ତି ଅନ୍ୱେଷଣ କରୁଥିବ, ସେତେବେଳେ 'ମାଟିର ମଣିଷ' ଉପନ୍ୟାସ ହିଁ ତାକୁ ଶାନ୍ତି ଦେଇ ପାରିବ ।

## ଜୀବନର ଲକ୍ଷ୍ୟ

ମଣିଷ-ଜୀବନ ଚିରସ୍ଥାୟୀ ନୁହେଁ । ବୁଦ୍ ବୁଦ ଭଳି ଏହା ଆଖିପିଛୁଳାକେ ସୃଷ୍ଟି ହୋଇ ପୁଣି ମହାକାଳଗର୍ଭରେ ମିଳାଇଯାଏ । ଯୋଗୀ ଶଙ୍କର ତେଣୁ ଜୀବନକୁ 'ପଦ୍ମପତ୍ରରେ ବାରିବିନ୍ଦୁ' ସହିତ ତୁଳନା କରି ଲେଖିଥିଲେ—

'ନଳିନୀ ଦଳଗତ ଜଳମତି ତରଳମ୍,
ତଦ୍‌ବତ ଜୀବନମତିଶୟ ଚପଳମ୍ ।'

ମୃତ୍ୟୁ ପରେ ଜୀବନର କ'ଣ ହୁଏ, ତାହା କେଉଁଆଡ଼େ ଯାଏ, ସେକଥା ସଠିକ୍ କେହି ଜାଣନ୍ତି ନାହିଁ । ଏ ବିଷୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଅଧ୍ୟାତ୍ମବାଦୀବୃନ୍ଦ ସ୍ୱତନ୍ତ୍ର ମତ ପୋଷଣ କରନ୍ତି । ନଶ୍ୱର ଜୀବନକୁ ଅବିନଶ୍ୱର ରୂପ ଦେବାର କାମନା ମନୁଷ୍ୟର ଏକ ଚିରନ୍ତନ ପ୍ରବୃତ୍ତି । ସ୍ୱାମୀ ବିବେକାନନ୍ଦ ତେଣୁ ବାରମ୍ବାର କହୁଥିଲେ ସମୟ ବାଲୁକା ବେଳାରେ ସ୍ଥାୟୀ 'ପଦଚିହ୍ନ' ଅଙ୍କନ କରିଦେଇଯିବା ନିମନ୍ତେ । ଏହି ସ୍ଥାୟିତ୍ୱ ଆସେ ମଣିଷର କର୍ମରୁ । ସେଇ କର୍ମ ଯାହା ମାନବଜାତିର ମଙ୍ଗଳ ନିମନ୍ତେ ଅଭିପ୍ରେତ, ସେଇ କର୍ମ ଯାହା ଭିତର ଦେଇ ମାନବିକତାର ଦୁଗ୍ଧ-ଧବଳଧାରା କରୁଣାର ସ୍ରୋତ ରୂପରେ ବହିଆସେ, ତାହା ହିଁ ମଣିଷକୁ 'ପଥରର ଗାର' ଭଳି ଚିରସ୍ଥାୟୀ କରିଦିଏ । ଉତ୍କଳମଣି ଗୋପବନ୍ଧୁ ତେଣୁ 'କର୍ମ'ର ଜୟଗାନ କରି ଲେଖିଥିଲେ—

"ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ,
କର୍ମେ ଜୀଏଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।"

କର୍ମ ହିଁ ଜୀବନ । ଆଳସ୍ୟର ଅନ୍ୟ ନାମ ମୃତ୍ୟୁ । ସତ୍‌କର୍ମ ପୁଣି ମାନବକୁ ଯୁଗ-ଯୁଗ ପାଇଁ ଅମର କରିଦିଏ । ଆମର ଗୀତା, ଭାଗବତ ପ୍ରଭୃତି ଏହି 'କର୍ମଯୋଗ'ର ମହତ୍ତ୍ୱ ପ୍ରଚ୍ୱାର କରିଛନ୍ତି । କର୍ମ ନିମନ୍ତେ ଦୀର୍ଘଜୀବନ ଲୋଡ଼ା ହୁଏନାହିଁ । ଏ ସମ୍ପର୍କରେ ଗୋପବନ୍ଧୁଙ୍କ ମନ୍ତବ୍ୟ, "ସୁଗୁଣ ବିକଶି ନିମିଷେ ମରଣ ଶ୍ରେୟ, କର୍ମହୀନ ଏ ଦୀର୍ଘ ଜୀବନ ବିଶ୍ୱରେ ଅତି ହେୟ"—ପ୍ରଣିଧାନଯୋଗ୍ୟ । ଯିଶୁଖ୍ରୀଷ୍ଟ, ଶଙ୍କରାଚାର୍ଯ୍ୟ, ଆଲେକ୍‌ଜାଣ୍ଡାର, ବିବେକାନନ୍ଦ—ଏମାନେ କେହି ଦୀର୍ଘଜୀବୀ ନଥିଲେ । ବଞ୍ଚିଥିବା ପର୍ଯ୍ୟନ୍ତ ପ୍ରତିଟି ମୁହୂର୍ତ୍ତକୁ 'କର୍ମ'ରେ ବିନିଯୋଗ କଲେ ହିଁ ମାନବଜୀବନ ସଫଳ ହୁଏ । 'କର୍ମ'କୁ ତେଣୁ ଜୀବନର ଲକ୍ଷ୍ୟ ରୂପରେ ଗ୍ରହଣ କରିନେବା ପ୍ରତ୍ୟେକ ମାନବର ଉଚିତ ।

ଜୀବନ ସଂକ୍ଷିପ୍ତ—ତେଣୁ ଏହା ମହା ମୂଲ୍ୟବାନ । ଶୁଣାଯାଏ ଯେ, ମାନବଜୀବନର ଆକର୍ଷଣ ସ୍ୱର୍ଗର ଦେବତାମାନଙ୍କୁ ମଧ୍ୟ ମର୍ତ୍ତ୍ୟକୁ ଟାଣିଆଣେ । ଏଭଳି ଜୀବନକୁ କେବଳ ମାତ୍ର ଖିଆଲ୍ ଖୁସିରେ କଟାଇ ନଦେଇ ତାହାର ସଦୁପଯୋଗ କରିଣୀୟ । ଚଳ୍ୟାଣନ୍ତେ ଜାତ ହେଲା ପରେ, ମଣିଷ ତା' ଆଗରେ ଥିବା ଜୀବନର ବର୍ଣ୍ଣାଢ଼୍ୟ ରୂପକୁ ନିରୀକ୍ଷଣ କରିବାକୁ ଆରମ୍ଭ କରେ । ଏଥିମଧ୍ୟରୁ ସେ ନିଜପାଇଁ କେଉଁ ଜୀବନଟି ବାଛିନେବ, ଏହାର ନିଷ୍ପତ୍ତି ଭାର ତା' ନିଜର । ଅବଶ୍ୟ ଅଭିଭାବକ, ଶିକ୍ଷକ, ଶୁଭଚିନ୍ତକ ପ୍ରଭୃତି ତାକୁ ଏ ବିଷୟରେ ସାହାଯ୍ୟ କରିପାରନ୍ତି; ମାତ୍ର ନିଜ ବାଟରେ ଚାଲିବାର ପୂର୍ଣ୍ଣ ସ୍ୱାଧୀନତା ତା'ର ଥାଏ ।

ତା' ସମ୍ମୁଖରେ ଯେଉଁ ଆଦର୍ଶ ସବୁ ଥାଏ, ସେଥିରୁ ହିଁ ସେ ନିଜପାଇଁ ଗୋଟିଏ ଆଦର୍ଶ ଗ୍ରହଣ କରିନିଏ । ଯେମିତି ପୂର୍ବରୁ ସୂଚିତ ହୋଇଛି, ଏହି ଆଦର୍ଶଟି ସାଧୁ ବା ସତ୍ ହୋଇପାରିଲେ ହିଁ ତା'ର 'ପଦଚିହ୍ନ' ଛାଡ଼ିଯିବାର ଯୋଗ୍ୟତା ଆସିଯାଏ । ଆହାର, ନିଦ୍ରା, ମୈଥୁନ ପ୍ରଭୃତି ପ୍ରବୃତ୍ତିକୁ 'ପଶୁ ପ୍ରବୃତ୍ତି' ବୋଲି କୁହାଯାଇଥାଏ । ମଣିଷ ଯେହେତୁ ବିବେକୀ, ବୁଦ୍ଧିମାନ୍, ତାକୁ ଏହାର ଊର୍ଦ୍ଧ୍ୱକୁ ଉଠିବାକୁ ହେବ । ଏଥିପାଇଁ 'ଶାସ୍ତ୍ର' ତାକୁ ସତର୍କ କରାଇଦେଇ କୁହେ—

ଆପଦାଂ କଥିତ ପନ୍ଥା ଇନ୍ଦ୍ରିୟାଣାମ୍ ସଂଯମଃ
ତଜ୍ଜୟଃ ସମ୍ପଦାଂ ମାର୍ଗଂ ଯେନେଷ୍ଟ ତେନ ଗମ୍ୟତାମ୍ ।

ଇନ୍ଦ୍ରିୟପରତନ୍ତ୍ର ବ୍ୟକ୍ତି ଆପାତରମ୍ୟ ଜୀବନର ଆକର୍ଷଣରେ ଧ୍ୱଂସ ଆଡ଼କୁ ଗତିକରେ । ଯେ ସଂଯମର ରଜ୍ଜୁରେ ଚିତ୍ତବୃତ୍ତିକୁ ବାନ୍ଧିରଖିପାରେ, ସେ ହିଁ ଜୀବନ କ୍ଷେତ୍ରରେ 'ସମ୍ପଦ' ଲାଭକରିପାରେ । ଯୁକ୍ତିବାଦୀମାନେ କହନ୍ତି, 'ଈଶ୍ୱର ସର୍ବଭୂତାନାଂ ହୃଦ୍‌ଦେଶେ ତିଷ୍ଠତି ଅର୍ଜୁନ'—ଅର୍ଥାତ୍ 'ହେ ଅର୍ଜୁନ ! ଈଶ୍ୱର ସର୍ବଘଟରେ ବିଦ୍ୟମାନ ।' ଏହା ତ ସ୍ୱୟଂ କୃଷ୍ଣଙ୍କର ମୁଖନିଃସୃତ ବାଣୀ । ତେଣୁ—

ଜାନାମି ଧର୍ମଂ ନ ଚ ମେ ପ୍ରବୃତ୍ତି. ଜାନାମ୍ୟଧର୍ମଂ ନ ଚ ମେ ନିବୃତ୍ତିଃ ।
ତ୍ୱୟା ହୃଷୀକେଶ ହୃଦସ୍ଥି ତେନ, ଯଥା ନିଯୁକ୍ତୋଽସ୍ମି ତଥା କରୋମି ॥

ସଂସାରରେ ପାପପୁଣ୍ୟ ସମସ୍ତ ତାଙ୍କର ସୃଷ୍ଟି । ପୁଣ୍ୟ ପାଇଁ ଯଦି ଭଗବାନଙ୍କ ପ୍ରଶଂସା କରାଗଲା, ତେବେ ପାପ ନିମନ୍ତେ 'ସୟତାନ'ର ପରିକଳ୍ପନା କାହିଁକି ? ମାତ୍ର ପାପର ପ୍ରଲୋଭନ, ପୁଣ୍ୟ ନିମନ୍ତେ ଏକ ସାବଧାନୀ ପରୀକ୍ଷା ବ୍ୟତୀତ ଅନ୍ୟ କିଛି ନୁହେଁ । ବିବେକ ବୁଦ୍ଧି ସାହାଯ୍ୟରେ ପାପପୁଣ୍ୟର ବିଚାର କରି ନିଜର ମାର୍ଗ ସ୍ଥିର କରିବାକୁ ହୁଏ । କୌଣସି କର୍ମ ସାନ ନୁହେଁ । ରତ୍ନାକର ଦସ୍ୟୁ ଥିଲେ, ଲିଙ୍କନ୍ ଥିଲେ କାଠୁରିଆ, ଜୋଆନ୍ ଅଫ୍ ଆର୍କ ମେଣ୍ଢା ଚରାଉଥିଲେ । ମନ୍ତ୍ରୀ, ବୈଜ୍ଞାନିକ, ଶାସକଙ୍କ ତୁଳନାରେ କିରାଣିଟିର ମଧ୍ୟ ମହତ୍ତ୍ୱ ରହିଛି । ନିଜ ନିଜ ପଦବୀରେ ପ୍ରତ୍ୟେକ ମହାନ୍ । ସାମାନ୍ୟ ଗୋଟିଏ 'ନଟ୍' ନଥିଲେ ମେସିନ୍ ମଧ୍ୟ ଅଚଳ ହୋଇଯାଏ ।

ଜୀବନ ପୁଷ୍ପମୟ ନୁହେଁ—ଏହା ସଂଘର୍ଷର ଏକ କଣ୍ଟକିତ କ୍ଷେତ୍ର । ସଂଘର୍ଷ ହିଁ ଜୀବନକୁ ପୂର୍ଣ୍ଣତା ଆଡ଼କୁ ଆଗେଇଦିଏ । ଜୀବନରେ ହତାଶା ଆସୁ, ବ୍ୟର୍ଥତା ଆସୁ—ସେସବୁକୁ ଡେଇଁ ସ୍ଥିର ଲକ୍ଷ୍ୟରେ ଅତିକ୍ରମ କରିଯିବାକୁ ହେବ । ସନ୍ତ ବିନୋବା ଆଜିର ମଣିଷ ସମାଜକୁ ତିନି ଶ୍ରେଣୀରେ ବିଭକ୍ତ କରିଛନ୍ତି । ପ୍ରଥମ ଶ୍ରେଣୀର ବ୍ୟକ୍ତି—ସେ କେବଳ ଦେଇଯାଏ, ଅନ୍ୟଠାରୁ ତା'ର ପାଇବାର କାମନା କିଛି ନ ଥାଏ । ଏମାନଙ୍କ ପାଇଁ ସମସ୍ୟା କିଛି ନଥାଏ । ଦୁଃଖର କଥା, ସମାଜରେ ଖୁବ୍ ବେଶି ଏହି ଶ୍ରେଣୀର ସାଧୁ ସନ୍ଥ ବ୍ୟକ୍ତି ନଥାନ୍ତି । ଏମାନେ ହିଁ ପୃଥିବୀକୁ ସ୍ୱର୍ଗରେ ପରିଣତ କରିପାରନ୍ତି । ଦ୍ୱିତୀୟ ଶ୍ରେଣୀର ବ୍ୟକ୍ତିମାନେ ହେଉଛନ୍ତି 'ବଣିକ' ଶ୍ରେଣୀୟ । ଏମାନେ ଦିଅନ୍ତି, ନିଅନ୍ତି । ଉପକାର କରନ୍ତି, ବଦଳରେ କିଛି କାମନା କରନ୍ତି । ଡାକ୍ତର, ଅଧ୍ୟାପକ, ଓକିଲ ଇତ୍ୟାଦି ଗୋଷ୍ଠୀ ଏହି ଶ୍ରେଣୀର । ତୃତୀୟ ଶ୍ରେଣୀ ହେଉଛି 'ତସ୍କରଗୋଷ୍ଠୀ' । ଏମାନଙ୍କ ପାଇଁ ସମାଜର ସମସ୍ତ ସମସ୍ୟା । କାରଣ ଏମାନଙ୍କର ଅପରକୁ ଦେବା ନିମନ୍ତେ କିଛି ନଥାଏ; ଅଥଚ କାମନାଟି ଥାଏ ଷୋଳଅଣା । ଏଥିମଧ୍ୟରୁ ଜଣେ ନିଜପାଇଁ କେଉଁ ଜୀବନ ବାଛିବ, ସେ ଦାୟିତ୍ୱ ତା'ର ନିଜର ।

ଲକ୍ଷ୍ୟ ସ୍ଥିରକରି, ସମସ୍ତ ବାଧାବିଘ୍ନ ଅତିକ୍ରମକରି, ଏକମନରେ ସେଠାରେ ପହଞ୍ଚିବାର ଉଦ୍ୟମରେ ହିଁ ଜୀବନର ସଫଳତା । ଏହାକୁ ହିଁ ଗୋପବନ୍ଧୁ 'ଗିରୀଶେ ଲକ୍ଷ୍ୟ ରଖି ଗୁଳିବ ମୁକୁର' ବୋଲି କହିଛନ୍ତି ।

## ଏକ ଦର୍ଶନୀୟ ସ୍ଥାନ

ନୂଆ ନୂଆ ସ୍ଥାନ ଦେଖିବା, ନୂଆ ପରିବେଶ ସହିତ ପରିଚିତ ହେବା, ନିଜର ଜଣାଶୁଣାର ସୀମା ବଢ଼ାଇବାର ପ୍ରବୃତ୍ତି ମଣିଷର ସହଜାତ । ଏହି ପ୍ରବୃତ୍ତି ହିଁ ତାକୁ ଚନ୍ଦ୍ର ପୃଷ୍ଠକୁ ନେଇ-

ଯାଉଛି; ଉଚ୍ଚତମ ଶୃଙ୍ଗ ଉପରେ ପତାକା ପୋତିବାକୁ ପ୍ରେରଣା ଯୋଗାଉଛି । ଅପରିଚିତର ଆହ୍ୱାନ କାନରେ ବାଜିଲମାତ୍ରେ ମଣିଷ ଉଦ୍‌ଭ୍ରାନ୍ତ ସ୍ୱରରେ ତାକୁ ଲକ୍ଷ୍ୟକରି ଧାଉଁଛି । ନୂତନ ସହିତ ପରିଚିତ ହୋଇ, ତାହାର ଜ୍ଞାନର ଦିଗନ୍ତକୁ ବିସ୍ତୃତ କରୁଛି । ଅପର ପାଇଁ ନିଜର ଅନୁଭୂତିକୁ ବାଣ୍ଟିଦେଉଛି । ନୂଆ ପୁରୁଣା ହେଉଛି ଏବଂ ପୁଣି ତା' ସ୍ଥାନରେ ଆତ୍ମପ୍ରକାଶ କରୁଛି ନୂଆ । ହଜାର ପୁସ୍ତକ ପଢ଼ିଲେ ମଧ୍ୟ ଯେଉଁ ଅନୁଭୂତି ତା'ର ଅସୁନାହିଁ, ଥରେ ମାତ୍ର ଦେଖିଦେଲେ ହିଁ ତାହା ହୋଇଯାଉଛି । ଶୁଣି ଜାଣିବା ବା ପଢ଼ି ଜାଣିବା ଅପେକ୍ଷା ତେଣୁ ଦେଖି ଜାଣିବାକୁ ଚିରକାଳ ଜ୍ଞାନ ଅର୍ଜନର ଶ୍ରେଷ୍ଠ ମାର୍ଗ ବୋଲି କୁହାଯାଇଛି । ଏହି କାରଣରୁ ହିଁ 'ଭ୍ରମଣ'କୁ ପ୍ରାଚୀନକାଳରୁ ଶିକ୍ଷାର ଏକ ଅଙ୍ଗ ରୂପେ ଗ୍ରହଣ କରିନିଆଯାଇଛି ।

ପ୍ରକୃତି ଦେବୀଙ୍କର ଗନ୍ତାଘର ଉତ୍କଳ ବହୁ ଦର୍ଶନୀୟ ସ୍ଥାନରେ ପରିପୂର୍ଣ୍ଣ । ଏହାର ପ୍ରତ୍ୟେକ ଅଞ୍ଚଳରେ କିଛି ନା କିଛି ଦର୍ଶନୀୟ ସ୍ଥାନ ରହିଛି । ବାଲେଶ୍ୱରର ଚନ୍ଦନେଶ୍ୱର, ମୟୂରଭଞ୍ଜର ଶିମିଳିପାଳ, ଖିଚିଂ, ଢେଙ୍କାନାଳର ସାତକୋଶିଆ, କଟକର ଅଂଶୁପା, ପୁରୀର କଣ୍ଟିଲୋ, ପୁରୀ ଭୁବନେଶ୍ୱର, କୋଣାର୍କ, ଚିଲିକା, ଜଉଗଡ଼, ସମ୍ବଲପୁରର ହୀରାକୁଦ, ହୁମା, ବଲାଙ୍ଗୀରର ନୃସିଂହନାଥ, କୋରାପୁଟର ଗୁପ୍ତେଶ୍ୱର—କେହି ଇତିହାସ ଦୃଷ୍ଟିକୋଣରୁ, କେହି ବା ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ, କେହି ପୁଣି ପ୍ରାକୃତିକ ସୌନ୍ଦର୍ଯ୍ୟ ନିମନ୍ତେ ଯୁଗଯୁଗ ଧରି ଖ୍ୟାତି ଲାଭ କରିଆସୁଛନ୍ତି ।

ଏହିଭଳି ଗୋଟିଏ ସ୍ଥାନ ହେଉଛି ପୁରୀ ଜିଲ୍ଲାର 'କଣ୍ଟିଲୋ' । ଭୂଗୋଳରେ ଏହା ପ୍ରସିଦ୍ଧ କଂସା-ବାସନ ନିମନ୍ତେ । ପୂର୍ବର ସେହି ପ୍ରସିଦ୍ଧି ଏବେ ମଧ୍ୟ ରହିଛି । ତେବେ ପରିଦର୍ଶକର ଲକ୍ଷ୍ୟ ଏହାର ଉତ୍କୃଷ୍ଟ କଂସା ପିତ୍ତଳ ବାସନ ଉପରେ କ୍ୱଚିତ୍ ପଡ଼ିଥାଏ । କଟକରେ ବସି ମଧ୍ୟ ଜଣେ ଏହିସବୁ ପଦାର୍ଥ ପାଇପାରେ । ଯାହା ଜଣେ ପରିବ୍ରାଜକ ନିମନ୍ତେ ପ୍ରକୃତରେ ଆକର୍ଷଣୀୟ, ତାହା ହେଉଛି କଣ୍ଟିଲୋର ନୀଳମାଧବ ମନ୍ଦିର ।

ମନ୍ଦିର ସମ୍ପର୍କରେ କିଛି କହିବା ପୂର୍ବରୁ ପ୍ରଥମେ ଏହି ସ୍ଥାନର ଭୌଗୋଳିକ ଅବସ୍ଥିତି ସମ୍ପର୍କରେ କିଛି କୁହାଯିବା ଉଚିତ । କଣ୍ଟିଲୋ ଖଣ୍ଡପଡ଼ାର ଅତ୍ୟନ୍ତ ନିକଟବର୍ତ୍ତୀ; ୧୦।୧୨ କି: ମି: ଦୂରତ୍ୱ ଉଭୟ ସ୍ଥାନ ମଧ୍ୟରେ ହୋଇପାରେ । ତେଣୁ ନୟାଗଡ଼ ଆଡ଼ୁ ଆସିଲେ ଖଣ୍ଡପଡ଼ା ଦେଇ କଣ୍ଟିଲୋରେ ପହଞ୍ଚିବେ । ଦ୍ୱିତୀୟ ରାସ୍ତା ହେଉଛି ଖୋର୍ଦ୍ଧାଠାରୁ କଳାପଥର ଦେଇ । ମଟର ଯିବା ଆସିବା କରିପାରିବା ଭଳି ରାସ୍ତା ରହିଛି । ମହାନଦୀ ପାରି ହୋଇ ବଡ଼ମ୍ବା ଆଡ଼ୁ ମଧ୍ୟ କଣ୍ଟିଲୋକୁ ଆସିହୁଏ । ମନ୍ଦିରର ଅଦୂରରେ ସମୃଦ୍ଧ କଣ୍ଟିଲୋ ଗ୍ରାମ । ଏଠାରେ ଏକ ସରକାରୀ ଡାକବଙ୍ଗଳା ମଧ୍ୟ ରହିଛି ।

ନୀଳମାଧବ ମନ୍ଦିର ମହାନଦୀ ଖଣ୍ଡିରେ ଏକ ନାତିଉଚ୍ଚ ପାହାଡ଼ ଉପରେ ଗଢ଼ିଉଠିଛି । ନଦୀ ଆଡ଼କୁ ବେଢ଼ା ମଧ୍ୟରେ ଦଣ୍ଡାୟମାନ ହେଲେ, ଗୋଟିଏ ଦିଗରେ ବେଢ଼ାର ଉଚ୍ଚତା

ତଥା ଅପର ଦିଗରେ ନଦୀର ଗମ୍ଭୀରତା ଜଣାଯାଏ । ମନ୍ଦିର ପାଖରେ ନଦୀଧାର ଅତ୍ୟନ୍ତ ଗମ୍ଭୀର ।

ବିସ୍ତୃତ ସୋପାନଶ୍ରେଣୀ ଆରୋହଣ କରି ମନ୍ଦିର ନିକଟରେ ପହଞ୍ଚିବାକୁ ହୁଏ । ସମଗ୍ର ମନ୍ଦିରଟିର ପରିକଳ୍ପନା ଶ୍ରୀମନ୍ଦିର ଆଦର୍ଶରେ । ଶ୍ରୀମନ୍ଦିର ଏକ ପାହାଡ଼ ଉପରେ ପ୍ରତିଷ୍ଠିତ ହେଲାଭଳି ଏ କ୍ଷେତ୍ରରେ ମଧ୍ୟ ମନ୍ଦିରକୁ ଏକ ନାତିଉଚ୍ଚ ପାହାଡ଼ ଉପରେ ହିଁ ନିର୍ମାଣ କରାଯାଇଛି । କଣ୍ଟିଲୋରେ ଜଗନ୍ନାଥ ହିଁ ଉପାସ୍ୟ ଦେବତା । କଥିତ ଅଛି, ଏହିଠାରେ ଶବର ବିଶ୍ୱାବସୁ ନୀଳମାଧବଙ୍କ ଉପାସନା କରୁଥିଲେ । ଏ ମନ୍ଦିରର ସେବା, ପୂଜାବିଧି ସମସ୍ତ ଶ୍ରୀମନ୍ଦିରର ପୂଜାପଦ୍ଧତିର ଅନୁସରଣରେ କରାଯାଇଛି । ପୂର୍ବେ ବଙ୍କେଶ୍ୱରୀ ଖଣ୍ଡପଡ଼ା ରାଜ୍ୟର ଅନ୍ତର୍ଭୁକ୍ତ ଥାଇ ରାଜାଙ୍କର ସମ୍ପତ୍ତି ରୂପେ ଗଣାଯାଉଥିଲା । ସ୍ୱାଧୀନତା ପରେ ରାଜପଦ ଲୋପ ହେଲା ପରେ ଏହା ହେଉଛି ସର୍ବସାଧାରଣଙ୍କର । ମନ୍ଦିର ବେଢ଼ାରେ ସାନ ସାନ କେତୋଟି ମନ୍ଦିରରେ ପାର୍ଶ୍ୱଦେବତାମାନେ ଉପାସିତ ହେଉଛନ୍ତି । ସାଧୁସନ୍ଥମାନଙ୍କ ନିମନ୍ତେ ବେଢ଼ା ମଧ୍ୟରେ ଗୁମ୍ଫା ଭଳି କିଛି ଆଶ୍ରୟସ୍ଥଳର ବ୍ୟବସ୍ଥା କରାଯାଇଛି । ମନ୍ଦିରର ସେବା-ପୂଜା ତୁଲାଇବା ନିମନ୍ତେ ସେବାୟତଗୋଷ୍ଠୀ ରହିଛନ୍ତି ।

ଏହି ସ୍ଥାନରେ ପ୍ରାକୃତିକ ଦୃଶ୍ୟ ପୂର୍ବେ କିଭଳି ଥିଲା, ତାହା ଅନୁମାନ ମାତ୍ର କରାଯାଇ ପାରିଲେ ହେଁ, ବର୍ତ୍ତମାନ ଯାହା ଅଛି, ଗୋଟିଏ କଥାରେ ତାହା ଅନବଦ୍ୟ । ମହାନଦୀର କଳନାଦୀ ଜଳପ୍ରବାହହିଁ ଏ ସୌନ୍ଦର୍ଯ୍ୟର ମୂଳ ହେତୁ । ଶୁଣାଯାଏ, ପ୍ରାଚୀନ କାଳରେ ଏ ସ୍ଥାନ ଘନବନାକୀର୍ଣ୍ଣ ଏବଂ ଦୁର୍ଗମ ଥିଲା । ବର୍ତ୍ତମାନ ତା'ର ପତ୍ତା ମିଳୁନାହିଁ । ଯେଉଁ କେତୋଟି ସାଧାରଣ ବୃକ୍ଷ ଇତସ୍ତତଃ ରହିଛି, ତଦ୍ୱାରା ବିଶେଷ କୌଣସି ସୌନ୍ଦର୍ଯ୍ୟର ସୃଷ୍ଟି ହେଉନାହିଁ— ଏଗୁଡ଼ିକ ଗମନାଗମନର ମାର୍ଗକୁ ଛାୟାଚ୍ଛନ୍ନ କରି ରଖିଛନ୍ତି ମାତ୍ର । ନଦୀଗର୍ଭରେ ନୌକା-ବିହାର, ସ୍ୱଚ୍ଛନ୍ଦ ସ୍ନାନ ଏବଂ ଅପର ପାର୍ଶ୍ୱସ୍ଥ ବିସ୍ତୀର୍ଣ୍ଣ ବାଲୁକାଶଯ୍ୟାରେ ଉପବେଶନ, ଜୀବନର ଏକ ଅବିସ୍ମରଣୀୟ ଅନୁଭୂତି ।

ଲୋକାଳୟଠାରୁ ଦୂରରେ ରହିଥିବାରୁ ମନ୍ଦିରର ପରିବେଶ ବେଶ୍ ଭାବଗମ୍ଭୀର ଏବଂ ଭକ୍ତି ଉଦ୍ରେକକାରୀ । ଅନ୍ୟାନ୍ୟ ତୀର୍ଥକ୍ଷେତ୍ର ଭଳି ଏହା ସେତେ ଜନାକୀର୍ଣ୍ଣ ହୋଇନଥିବାରୁ ସ୍ୱଚ୍ଛନ୍ଦରେ ଦର୍ଶନ ଇତ୍ୟାଦିର ସୁଯୋଗ ମିଳେ । ମନ୍ଦିର ବେଢ଼ାରେ ଦଣ୍ଡେ ବସିଲେ ମନ ଏକ ସ୍ୱର୍ଗୀୟ ଭାବରେ ପୂରିଯାଏ, ଅସ୍ଥିର ମନ ଶାନ୍ତ ହୋଇଯାଏ । ନୀଳଆକାଶରୁ ପଟ୍ଟଭୂମିରେ ସୁଉଚ୍ଚ ଦେଉଳର ସିଲହଟ୍ଟି ଦେଖାଯାଏ । ଭକ୍ତି ଆଉ ପ୍ରକୃତିର ସମନ୍ୱୟିତ ଦୃପ୍ତରୂପ ଭଳି; ଯାହା ଦୂରରୁ ପାନ୍ଥକୁ ଆକର୍ଷଣ କରେ ଏବଂ ଏହାର ଚରଣରେ ମସ୍ତକ ଅବନତ କରାଇଥାଏ । କଣ୍ଟିଲୋ ଏବଂ ଏହାର ନୀଳମାଧବ ମନ୍ଦିରକୁ ତେଣୁ ଓଡ଼ିଶାର ପ୍ରସିଦ୍ଧ ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରୁ ଅନ୍ୟତମର ଗୌରବ ଦିଆଯାଇଛି ।

# ଧୀର ପାଣି ପଥର କାଟେ

ଜୀବନରେ ସଫଳତା ଲାଭ କରିବାକୁ ହେଲେ ଧୈର୍ଯ୍ୟ ସହକାରେ ଅଗ୍ରସର କରିବାକୁ ହୋଇଥାଏ । କେବଳ ମାତ୍ର ବ୍ୟାକୁଳତା କିମ୍ବା ଉଦ୍‌ବେଗ ଦ୍ୱାରା କୌଣସି କାର୍ଯ୍ୟରେ ସଫଳତା ମିଳେନାହିଁ, ବରଂ ମନର ଶୃଙ୍ଖଳ୍ୟ ପ୍ରକୃତ ପନ୍ଥା ନିର୍ଣ୍ଣୟରେ ବାଧା ସୃଷ୍ଟି କରି କାର୍ଯ୍ୟ ବିନଷ୍ଟ କରିଥାଏ । ତେଣୁ କାର୍ଯ୍ୟରେ ସଫଳତା ଲାଭ କରିବାକୁ ହେଲେ ଅଖଣ୍ଡ ଧୈର୍ଯ୍ୟର ପ୍ରୟୋଜନ ହୋଇଥାଏ । ଜଡ଼ବୁଦ୍ଧି ବୋପଦେବଙ୍କ ବିଷୟ ସମସ୍ତେ ଜାଣନ୍ତି । ଗୁରୁ ଗୃହରେ ବୁଦ୍ଧିର ସ୍ଥୂଳତା ନିମନ୍ତେ ସେ ସର୍ବଦା ଉପହସିତ ହେଉଥିଲେ । ଶେଷରେ ସେ ଠିକ୍ କଲେ ଯେ ବିଦ୍ୟାଶିକ୍ଷା ତାଙ୍କ ଶକ୍ତିର ବହିର୍ଭୂତ କାର୍ଯ୍ୟ । ତେଣୁ ସେ ଗୁରୁଙ୍କଠାରୁ ବିଦାୟ ନେଇ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିବାର ନିଷ୍ପତ୍ତି ଗ୍ରହଣ କଲେ । ଫେରୁଥିବା ସମୟରେ ତୃଷାର୍ତ୍ତ ହୋଇ ସେ ଏକ କୂପ ନିକଟକୁ ଗଲେ । ସେଠାରେ ଖଣ୍ଡିଏ ପଥର ତାଙ୍କ ନିଷ୍ପତ୍ତିକୁ ବଦଳାଇ ଦେଇଥିଲା । ସେ ଦେଖିଲେ, ପଥର ଉପରେ ସୁନ୍ଦର ଗର୍ତ୍ତ ଖୋଦିତହୋଇ ରହିଛି । ଏହାର କାରଣ ଅନୁସନ୍ଧାନ କରି ସେ ଜାଣିପାରିଲେ ଯେ, ଯେଉଁମାନେ ଜଳ ସଂଗ୍ରହ କରିବାକୁ ଆସୁଛନ୍ତି, ସେମାନେ ଜଳପୂର୍ଣ୍ଣ ପାତ୍ରଟିକୁ ପ୍ରଥମେ ସେହି ପଥର ଉପରେ ସ୍ଥାପନ କରୁଛନ୍ତି । ପାତ୍ର ସହିତ ପଥରର ନିୟମିତ ଘର୍ଷଣ ଫଳରେ ସେଥିରେ ଗୋଟିଏ ସୁନ୍ଦର ଗର୍ତ୍ତ ହୋଇଯାଇଛି । ବୋପଦେବ ଚିନ୍ତାକଲେ, ଯଦି ନିୟମିତ ଘର୍ଷଣ ପ୍ରସ୍ତର ଦେହରେ ସୁନ୍ଦର ଗର୍ତ୍ତ ସୃଷ୍ଟି କରିପାରେ, ତେବେ ନିୟମିତ ଅଭ୍ୟାସ ବୁଦ୍ଧିର ସ୍ଥୂଳତା ଦୂର କରିନପାରିବ କାହିଁକି ? ଏହା ପରେ ସେ ଗୁରୁଗୃହକୁ ଫେରିଆସିଲେ ଏବଂ ପ୍ରକୃତ ଅଧ୍ୟବସାୟ ଦ୍ୱାରା ପୃଥିବୀର ଶ୍ରେଷ୍ଠ ବୈୟାକରଣିକ ହୋଇପାରିଥିଲେ । ତେଣୁ କୁହାଯାଇଛି—"ଶନୈଃ ପନ୍ଥା ଶନୈଃ କନ୍ଥା, ଶନୈଃ ପର୍ବତ ଲଙ୍ଘନମ୍ ।" କାର୍ଯ୍ୟରେ ସଫଳତା ପାଇଁ ଧୈର୍ଯ୍ୟ ହିଁ ଏକମାତ୍ର ଆବଶ୍ୟକ ପଦାର୍ଥ ।

ଧୈର୍ଯ୍ୟ ଦ୍ୱାରା ବୁଦ୍ଧିର ବିକାଶ ହୁଏ । ବୁଦ୍ଧିମାନ୍ ସେହି ବାନର ଉପାଖ୍ୟାନ ସମସ୍ତେ ଜାଣିଥିବେ, ଯାହାର ଉପସ୍ଥିତ ବୁଦ୍ଧି ଭୀଷଣ କୁମ୍ଭୀର ମୁଖରୁ ତାହାର ଜୀବନ ରକ୍ଷା କରିପାରିଥିଲା । ଅଖଣ୍ଡ ଧୈର୍ଯ୍ୟ ଧାରଣ କରି ସହାୟହୀନ ରାମଚନ୍ଦ୍ର ସୁବର୍ଣ୍ଣଲଙ୍କାର ପ୍ରବଳ-ପରାକ୍ରାନ୍ତ ରାବଣକୁ ସବଂଶେ ନିଧନ କରିଥିଲେ । ଧୈର୍ଯ୍ୟ ହିଁ ମହାଭାରତ ଯୁଦ୍ଧରେ ପାଣ୍ଡବ ପକ୍ଷର ଏକମାତ୍ର ସହାୟ ଥିଲା । ମୋଗଲ ସମ୍ରାଟ୍ ବାବର ଧୈର୍ଯ୍ୟଦ୍ୱାରା ହିଁ ଭାରତରେ ସାମ୍ରାଜ୍ୟର ଭିତ୍ତି ସ୍ଥାପନ କରିପାରିଥିଲେ । ପଲାସୀର ଯୁଦ୍ଧ-ପ୍ରାଙ୍ଗଣରେ ଏହି ଧୈର୍ଯ୍ୟ ହିଁ ଇଷ୍ଟ ଇଣ୍ଡିଆ କମ୍ପାନୀର ତରୁଣ ସୈନିକ-ନେତା କ୍ଲାଇଭଙ୍କୁ ସାହାଯ୍ୟ କରିଥିଲା । ଏହିଭଳି ପୁରାଣ ଏବଂ ଇତିହାସରୁ ଧୈର୍ଯ୍ୟର ଅଜସ୍ର ଦୃଷ୍ଟାନ୍ତ ମିଳିବ, ଯେଉଁଠି ସଫଳତା ନିମନ୍ତେ ତାହାର ବ୍ୟବହାର କରାଯାଇଛି ।

ଅଧୈର୍ଯ୍ୟଭାବ ବିଚାର-ବୁଦ୍ଧିର ସ୍ଥିରତାକୁ ସମୂଳେ ବିନାଶ କରିଥାଏ । ଅସ୍ଥିର ମସ୍ତିଷ୍କର ମନ କ୍ରୋଧଭାବର ଉର୍ବର କ୍ଷେତ୍ର । କ୍ରୋଧାବିଷ୍ଟ ହୋଇପଡ଼ିଲେ ମସ୍ତିଷ୍କରେ ଭଲମନ୍ଦ ଜ୍ଞାନ ରହେନାହିଁ । ସେ ଯାହା ପାରେ ତାହା କରିଯାଏ ଏବଂ ଫଳରେ କାର୍ଯ୍ୟନାଶ ହୋଇଯାଏ । ରାବଣ ଭଳି ପଣ୍ଡିତ ଧୈର୍ଯ୍ୟବନ୍ତ ରାଜା ମୁଦ୍ଧା ବିଭୀଷଣର ସତ୍‌ପରାମର୍ଶରେ କ୍ରୋଧରେ ଅଧୀର ହୋଇପଡ଼ି ତାକୁ ଅପମାନିତ କରି ରାଜ୍ୟରୁ ତଡ଼ିଦେଇଥିଲେ । ବିଭୀଷଣ ଶତ୍ରୁପକ୍ଷ ସହିତ ଯୋଗାଯୋଗ କରି ରାବଣର ପତନକୁ ତ୍ୱରାନ୍ୱିତ କରିଦେଇଥିଲେ । ଧୈର୍ଯ୍ୟହୀନ କଂସ ଓ ଶିଶୁପାଳର ପତନର କାହାଣୀ ସମସ୍ତେ ଜାଣନ୍ତି ।

ସୁନା ଅଣ୍ଡା ଦେଉଥିବା ସେଇ କୁକୁଡ଼ାଟିର ମାଲିକାଣୀ ବିଷୟରେ ଚିନ୍ତା କରାଯାଉ । ପ୍ରତ୍ୟେକ ଦିନ ଗୋଟିଏ ସୁନା ଅଣ୍ଡାରେ ତା'ର ଲୋଭ ଦୂର ହୋଇନଥିଲା । ଏକାବେଳକେ ଅନେକଗୁଡ଼ିଏ ସୁନା ଅଣ୍ଡା ପାଇବାର ଲୋଭ ତାକୁ ଏତେ ଘାରିଲା ଯେ, ସେ କୁକୁଡ଼ାଟିକୁ ହତ୍ୟା କରିଦେଲା; ପରିଣାମରେ ତା'ର ସମସ୍ତ ଅବଲମ୍ବନ ନଷ୍ଟ ହୋଇଗଲା । ଗଛଟିଏ ଲଗାଇ ସେଥିରେ ପ୍ରଚୁର ପରିମାଣରେ ଖତ ସାର କିମ୍ବା ଜଳ ପ୍ରୟୋଗ କଲେ, ରାତାରାତି ସେଥିରୁ ଫଳ ମିଳିଯାଏ ନାହିଁ । ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ହୁଏ । ସମୟ ହେଲେ ହିଁ ସେଥିରେ ପ୍ରଥମେ ପୁଷ୍ପ, ଆଉ ତା' ପରେ ଫଳାଗମ ହୋଇଥାଏ ।

ଛାତ୍ରମାନଙ୍କ ନିମନ୍ତେ ଏହି ଧୈର୍ଯ୍ୟଶୀଳତା ପ୍ରଚୁର ପ୍ରୟୋଗ ହୋଇଥାଏ । ଧୀର ମନ ସ୍ଥିର ଚିତ୍ତରେ କେବଳ ମାତ୍ର ନିୟମିତ ଅଭ୍ୟାସ ବଳରେ ହିଁ ସେମାନେ ଜୀବନରେ ସଫଳତା ପାଇପାରନ୍ତି । ଅଧୈର୍ଯ୍ୟ, ଅସ୍ଥିର ଭାବରେ କେବଳ ସ୍ୱାସ୍ଥ୍ୟନାଶ, ଅପରିମିତ ପରିଶ୍ରମ ଦ୍ୱାରା କୃତକାର୍ଯ୍ୟତା ମିଳେନାହିଁ । ତେଣୁ ଧୈର୍ଯ୍ୟକୁ ହିଁ ମାନବିକତାର କଷଟି ପଥର ବୋଲି କୁହାଯାଇଥାଏ ।

ଶାସ୍ତ୍ରରେ କୁହାଯାଇଛି ଯେ, ବିପଦ ସମୟରେ ହିଁ ଧୈର୍ଯ୍ୟ, ଧର୍ମ, ମିତ୍ର ଏବଂ ନାରୀ—ଏହି ଚାରୋଟି ଗୁଣାଗୁଣ ପରୀକ୍ଷା କରାଯାଇଥାଏ । ବିପଦକାଳରେ ଯେ ଅସ୍ଥିର ହୋଇ-ପଡ଼ି ନିଜର ଧର୍ମ ବା ପ୍ରକୃତିକୁ ତ୍ୟାଗ କରିଦିଏ, ତାକୁ କେହି ରକ୍ଷା କରିପାରନ୍ତି ନାହିଁ । ସେଇଭଳି ବିପଦକାଳରେ ହିଁ ନାରୀ ତଥା ବନ୍ଧୁର ଯୋଗ୍ୟତା ପରୀକ୍ଷିତ ହୋଇଥାଏ ।

ଜ୍ଞାନଲାଭ ନିମନ୍ତେ ଧୈର୍ଯ୍ୟର ପ୍ରୟୋଜନ ଏବଂ ପୁଣି ସେଇ ଜ୍ଞାନ ହିଁ ଧୈର୍ଯ୍ୟର ଜନ୍ମଦାତା । ଏକାଗ୍ର ଅଧ୍ୟୟନ; ଅନୁଭୂତିର ବ୍ୟାପକତା ତଥା ଆତ୍ମ-ଚିନ୍ତନର ନିମଗ୍ନତା ଏ ସବୁ ହେଉଛି ଧୈର୍ଯ୍ୟଶୀଳମାନଙ୍କର ଧ୍ୟେୟ । ଅହଂକାର, ପଲ୍ଲବଗ୍ରାହୀ କୂପମଣ୍ଡୂକତା, ଅନୁଭୂତିଶୂନ୍ୟତା ଏବଂ ଅପରିଣାମଦର୍ଶିତା ମନରେ ଅସ୍ଥିରତା ସୃଷ୍ଟି କରେ । ଏହାଦ୍ୱାରା ବିଚାର-ବୁଦ୍ଧି ଲୋପ ପାଇ ପତନର ପଥ ପ୍ରଶସ୍ତ ହୋଇଯାଏ । ତେଣୁ ପାଣ୍ଡବପକ୍ଷର ସମସ୍ତେ ଯେତେବେଳେ ପ୍ରତିଶୋଧ ନିମନ୍ତେ ଅଧୀର ହୋଇପଡ଼ି ଅଚିରେ ଯୁଦ୍ଧ ଘୋଷଣା କରିବାକୁ ଯୁଧିଷ୍ଠିରଙ୍କ ଉପରେ ଚାପ ପକାଇଲେ, ଧୈର୍ଯ୍ୟବନ୍ତ ଯୁଧିଷ୍ଠିର ସେମାନଙ୍କୁ ସ୍ଥିରବୁଦ୍ଧିରେ ବ୍ୟାପାରଟିକୁ

ଭଲଭାବେ ବିଚାରକରି ଦେଖିବା ନିମନ୍ତେ ଅନୁରୋଧ ଜଣାଇଥିଲେ । ମହାକବି ଭାରବି ଏ ବିଷୟରେ ଏକ ସୁନ୍ଦର ବର୍ଣ୍ଣନା ଦେଇ ଲେଖିଛନ୍ତି—

"ସହସା ବିଦଧୀତ ନ କ୍ରିୟାମ୍ ଅବିବେକଃ ପରମାପଦାଂପଦମ୍,
ବୃଣୁତେ ହି ବିମୃଶ୍ୟକାରିଣମ୍, ଗୁଣଲୁବ୍ଧାଃ ସ୍ୱୟମେବସମ୍ପଦମ୍ ।"

ଅର୍ଥାତ୍ ଯୁଧିଷ୍ଠିର ନିଜର ଅଧୀର ଭାଇମାନଙ୍କୁ ସମ୍ବୋଧନ କରି କହୁଥିଲେ, "ବାବୁ ! କାର୍ଯ୍ୟକ୍ଷେତ୍ରରେ ଅଧୀରତା ଆଦୌ ଶୋଭାପାଏନାହିଁ । ଧୈର୍ଯ୍ୟହୀନ ଅବିବେକ ନିଜ ନିମନ୍ତେ ଓ ସମଗ୍ର ସଂସାର ନିମନ୍ତେ କେବଳ ବିପଦ ହିଁ ସୃଷ୍ଟି କରିଥାଏ । ଯେଉଁ ବ୍ୟକ୍ତି ବିଚାରବନ୍ତ, ଧୀର ଶାନ୍ତ ପଦକ୍ଷେପ ଗ୍ରହଣକରେ, ତାହାର ଗୁଣଦ୍ୱାରା ତ୍ରୈଲୋକ୍ୟର ପ୍ରଭୁତ୍ୱ ଆପେ ଆପେ ତା'ଆଡ଼କୁ ଟାଣିହୋଇଆସେ ।" ତେଣୁ ଯାହା ଇତିପୂର୍ବରୁ କୁହାଯାଇଛି, ଆଉ ଥରେ ତାହାର ପୁନରାବୃତ୍ତି କରି କୁହାଯାଉଛି ଯେ, ଜୀବନକ୍ଷେତ୍ରରେ ସଫଳତା ପାଇବାକୁ ହେଲେ ଅଖଣ୍ଡ ଧୈର୍ଯ୍ୟକୁ ସମ୍ବଳକରି ଅପେକ୍ଷା କରିବାକୁ ହୁଏ । ଧୈର୍ଯ୍ୟ ହିଁ ସଫଳତା ଆଣିଦେଇଥାଏ । ଧୀର ପାଣି ଯେଉଁଭଳି ନିୟମିତ ସମ୍ପର୍କରେ ଆସି ପଥରକୁ ମଧ୍ୟ ଫଟାଇଦେଇପାରେ, ସେହିପରି ଧୈର୍ଯ୍ୟ ମଧ୍ୟ ସଫଳତା ଡାକିଆଣେ । ତେଣୁ କୁହାଯାଇଛି 'ଧୀର ପାଣି ପଥର କାଟେ ।'

## ଯାହାକୁ ରଖିବେ ଅନନ୍ତ

ମଣିଷ ଅପରମେୟ ଶକ୍ତିଧର । ଶକ୍ତି ଆଉ ସାମର୍ଥ୍ୟ ସାହାଯ୍ୟରେ ସେ ଜଳ ସ୍ଥଳ ଅନ୍ତରୀକ୍ଷ ସର୍ବତ୍ର ନିଜର ବିଜୟ-ବାନା ଉଡ଼ାଇ ପାରନ୍ତି । ତଥାପି ସମସ୍ତ ସମୟରେ ତା'ର ବିପୁଳ ଶକ୍ତି ନିରର୍ଥକ ହୋଇଯାଏ । ଅତି ଅସହାୟ ଆଉ ଦୁର୍ବଳ ଭାବରେ ତାକୁ ଜୀବନଯୁଦ୍ଧରେ ପରାଜୟ ବରଣକରିବାକୁ ପଡ଼େ; ଅଥଚ ସମୟସମୟରେ ଦେଖାଯାଏ; ସାମାନ୍ୟ ଏକ ମଣ୍ଡୂକ ମଧ୍ୟ ହସ୍ତୀ ତୁଲ୍ୟ ବିଶାଳକାୟ ପ୍ରାଣୀ ଉପରେ ପ୍ରଭୁତ୍ୱ ପ୍ରତିଷ୍ଠା କରେ । ମୂଷାଟିଏ ସିଂହ ଉପରେ ଆଧିପତ୍ୟ ବିସ୍ତାର କରେ । ଜନ୍ମ ଆଉ ମୃତ୍ୟୁ, ଜୟ ଆଉ ପରାଜୟ କେଉଁ ଦେଶରେ, କାହାଦ୍ୱାରା ସୃଷ୍ଟି ହେଉଅଛି—ଏହି ରହସ୍ୟ ଆଜି ପର୍ଯ୍ୟନ୍ତ କେହି ଭେଦ କରିପାରିନାହାନ୍ତି । କେଉଁ କାରଣରୁ ଭୀମ ପରାକ୍ରମ ଅମିତ ବଳଶାଳୀ ଏକ ଜୀବ ତାହା ଅପେକ୍ଷା ବଳରେ ହଜାର ଗୁଣ ନ୍ୟୂନ କୀଟଟିଏ ନିକଟରୁ ପରାଜୟ ବରଣକରେ. ତାହା ମଧ୍ୟ

ଠିକ୍ ଭାବରେ କହିପାରିବା ସମ୍ଭବ ନୁହେଁ । ପାଦେ ପାଦେ ମରଣ ଆଡ଼କୁ ଆଗେଇଯାଉଥିବା ପ୍ରାଣୀଟି ସହସା କେଉଁ ଯାଦୁବଳରେ ମୃତ୍ୟୁକୁ ପରିହାସ କରି ଜୀବନକ୍ଷେତ୍ରରେ ପୂର୍ଣ୍ଣ ଗୌରବରେ ଆସି ଦଣ୍ଡାୟମାନ ହୁଏ, ତାହା କେହି କହିପାରିବେନାହିଁ ।

ପୃଥିବୀରେ ଏଭଳି ଅନେକ ଘଟଣା ଘଟିଯାଏ, ଯାହାକୁ ଯୁକ୍ତି କିମ୍ବା ଦର୍ଶନଦ୍ୱାରା ସମର୍ଥନ କରିହେବନାହିଁ । ଯାହା ଘଟେ, ତାହା ଆମେ ଦେଖୁ - ତେଣୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ମାତ୍ର ତାହା କିପରି ଘଟେ, ଏ ସମ୍ପର୍କରେ କୌଣସି ଯୁକ୍ତିଯୁକ୍ତ କାରଣ ନିର୍ଦ୍ଦେଶ କରିବା ମସ୍ତିଷ୍କ-ଶକ୍ତିର ବହିର୍ଭୂତ । ଯାହା ମସ୍ତିଷ୍କ ବୁଝିପାରେ ନାହିଁ, ତାହାକୁ ଈଶ୍ୱରଙ୍କର ଅଦ୍ଭୁତଲୀଳା ବୋଲି କହି ନତମସ୍ତକରେ ଗ୍ରହଣକରିନିଏ । ଯେଉଁ ଶକ୍ତି ପଙ୍ଗୁ ପାଦରେ ଗିରିଲଙ୍ଘନର ଶକ୍ତି ଓ ସାମର୍ଥ୍ୟ ଭରିଦିଏ, ମୂକକୁ ହଠାତ୍ ବାଗ୍ମୀ କରିଦିଏ, ସେ ଶକ୍ତି ଚିରଦିନ ଅଜ୍ଞେୟ । ବିପଦ ମୁହୂର୍ତ୍ତରେ ତାହାର ଆବାହନ, ହୃଦୟରେ ନୂତନ ଉଦ୍ଦୀପନା ଭରିଦିଏ । ସେ ଚାହିଁଲେ, ମୃତବ୍ୟକ୍ତି ମଧ୍ୟ ଝାଡ଼ିଝୁଡ଼ି ହୋଇ ଉଠିବସେ । ସ୍ୱାସ୍ଥ୍ୟର ଦୀପ୍ତିରେ ଝଲମଲ କରୁଥିବା ସୁସ୍ଥ ସବଳ ବ୍ୟକ୍ତିଟି ସହସା ଭୂଇଁରେ ଲେଟିଯାଏ । ତେଣୁ ତାକୁ ହିଁ ସ୍ମରଣ କରି ଭାଗବତକାର ଜଗନ୍ନାଥ ଦାସ ଲେଖିଛନ୍ତି—"ଯାହାକୁ ରଖିବେ ଅନନ୍ତ । କି କରିପାରେ ବଳବନ୍ତ ॥"

ପୃଥିବୀରେ ଅନେକ ପ୍ରାଣୀ ଅଛନ୍ତି—ଜଣେ ଜଣେ ବଳୀ । କିଏ ବଳରେ ବଡ଼ ତ କିଏ କୌଶଳରେ । କାହାର ସାହସ ଅଧିକ ତ କାହାର ଧନବଳ ଅପରିସୀମ । କିଏ ପୁଣି ଅଗଣିତ ଜନ ବଳରେ ବଳୀୟାନ୍ । ମାତ୍ର ଏ ସମସ୍ତ ଏକାନ୍ତ ଭାବରେ ବିନାଶଶୀଳ; ପାର୍ଥିବ । ଏଗୁଡ଼ିକ ଉପରେ ଏକ ଦିବ୍ୟଶକ୍ତି ରହିଛି, ଯାହାକୁ ଆମେ ଈଶ୍ୱର ବୋଲି ଜାଣୁ । ସେ ସମସ୍ତଙ୍କୁ କର୍ମାନୁସାରେ ଫଳ ବଣ୍ଟନ କରିଥାନ୍ତି । ଯଦି କର୍ମଫଳ ଅନୁକୂଳ ହୁଏ, ତେବେ ଶତ୍ରୁ ଯେତେ ପ୍ରବଳ ପରାକ୍ରାନ୍ତ ହେଉନା କାହିଁକି, ତଦ୍ୱାରା ତିଳେମାତ୍ର କ୍ଷତି ହୋଇ ନପାରେ । କାର୍ଯ୍ୟକ୍ଷେତ୍ରରେ ଏଭଳି କିଛି ବ୍ୟବସ୍ଥା ହୋଇଥିବାର ଦେଖାଯାଏ, ଯାହାଦ୍ୱାରା ଶତ୍ରୁ ହୁଏତ ସମ୍ପୂର୍ଣ୍ଣ ବିନଷ୍ଟ ହୋଇଯାଏ କିମ୍ବା ପରାଜିତ ହୋଇ ଅଧୀନତା ସ୍ୱୀକାର କରେ । ଏହାକୁ ବିଧିନିର୍ଦ୍ଦିଷ୍ଟ ବୋଲି କୁହାଯାଏ ଏବଂ ଏହା କର୍ମଫଳ-ଭିତ୍ତିକ ବୋଲି ଧରିନିଆଯାଏ ।

ଏହା ଏକ ପ୍ରମାଣିତ ସତ୍ୟ ଯେ, ନିୟମିତ ଯତ୍ନ ହିଁ ଜୀବଜଗତ୍ ତଥା ଉଦ୍ଭିଦ-ଜଗତ୍‌ର ବିକାଶର ଏକ ପ୍ରଧାନ କାରଣ । ବଗିଚାରେ ଗଛଟିଏ ଲଗାଇ ସେଥିରେ ନିୟମିତ ଜଳ ଦେବାକୁ ହୁଏ । ତା'ର ମୂଳ ପରିଷ୍କାର କରିବାକୁ ହୁଏ । ପ୍ରୟୋଜନ ହେଲେ ସେଥିରେ ସାର ମଧ୍ୟ ପ୍ରୟୋଗ କରିବାକୁ ହୁଏ । ତେବେ ଯାଇ ସେଥିରୁ ଆମେ ପୁଷ୍ପ ବା ଫଳର ଆଶା କରିପାରିବା । ମାତ୍ର ଅରଣ୍ୟରେ ଅଯତ୍ନବର୍ଦ୍ଧିତ ଯେଉଁ ଉଦ୍ଭିଦ ଜଗତ୍ ରହିଛି, କିଏ ତାହାର ଯତ୍ନ କରୁଛି ? କିପରି ତାହା ପୁଷ୍ପଫଳ-ସମନ୍ୱିତ ହେଉଛି ବିନା ଯତ୍ନରେ ? ଅନେକ

ପୁଣି ଦେଖାଯାଉଛି ଯେ, ସ୍ୱୟଂ ବର୍ଦ୍ଧିତ ଅରଣ୍ୟ ଉଦ୍ଭିଦର ଔଜ୍ଜ୍ୱଲ୍ୟ ଏବଂ ଦୀପ୍ତି ଉପବନ-ବର୍ଦ୍ଧିତ ଉଦ୍ଭିଦର ଦୀପ୍ତିଠାରୁ ଶତଗୁଣ ଅଧିକ । ଏହା କିପରି ହେଉଛି ? ଘରେ ଜନ୍ତୁଟିଏ ପୋଷିଲେ, ତା'ପାଇଁ କେତେ ଯତ୍ନ, କେତେ ଆୟୋଜନ । ଅଥଚ ଜଙ୍ଗଲର ଜନ୍ତୁକୁ ଦେଖନ୍ତୁ । ତାହାର ସ୍ୱାସ୍ଥ୍ୟଶ୍ରୀ ଏବଂ ତେଜସ୍ୱିତା ଗୃହପାଳିତ ପଶୁ ନିକଟରେ କେଉଁଠୁ ମିଳିବ ? କିଏ ଏମାନଙ୍କ ନିମନ୍ତେ ସଜାଗ ପ୍ରହରୀ ରୂପେ ସଦା ଜାଗ୍ରତ ରହି, ସମସ୍ତ ବିପଦ-ଆପଦରୁ ଏମାନଙ୍କୁ ରକ୍ଷା କରୁଛି ?

ପୁରାଣରୁ ରାକ୍ଷସରାଜ ହିରଣ୍ୟକଶିପୁର ଦୃଷ୍ଟାନ୍ତ ନିଆଯାଉ । ବଳଦର୍ପୀ ଏହି ଦାନବ ସାମାନ୍ୟ ଗୋଟିଏ ଶିଶୁକୁ ବିନାଶ କରିବା ନିମନ୍ତେ କି କି ଷଡ଼ଯନ୍ତ୍ରମାନ ନ କରିଛି ! ପର୍ବତ ଉପରୁ ନିକ୍ଷିପ୍ତ ସେହି ଅସହାୟ ଶିଶୁକୁ କିଏ ରକ୍ଷାକଲା ? ଅଗ୍ନିରେ ନିକ୍ଷିପ୍ତ ସେହି ପ୍ରହ୍ଲାଦ କିପରି ଅନାହତ ଭାବରେ ଆତ୍ମରକ୍ଷା କଲା ? କିଏ ତାକୁ ହସ୍ତୀ-ପାଦତଳୁ ଉଦ୍ଧାର କଲା ? ଏତେ ଘଟଣା ପରେ ସୁଦ୍ଧା ଯେଉଁ ରାକ୍ଷସ ଶକ୍ତି ଓ ସାମର୍ଥ୍ୟର ଅହଂକାର କରୁଥିଲା, କ'ଣ ହେଲା ତା'ର ପରିଣାମ ? ପୁରାଣର ସେହି ଅସହାୟ ଏବଂ ଅପମାନିତ ଏକ ବାଳକ ଧ୍ରୁବର ଉପାଖ୍ୟାନ କିଏ ନ ଜାଣେ ? ବିମାତାର ଅପମାନରେ ଅଭିମାନୀ ବାଳକ ଯେତେବେଳେ ଉଦ୍‌ଭ୍ରାନ୍ତ ଭାବରେ ହିଂସ୍ରଜନ୍ତୁସଙ୍କୁଳ ଅରଣ୍ୟରେ ବୁଲୁଥିଲା, ସେତେବେଳେ କିଏ ତାକୁ ସତର୍କ ପ୍ରହରୀ ଭଳି ସବୁ ଆପଦରୁ ରକ୍ଷା କରି ଚାଲିଥିଲା ? ପୁଣି ଦେଖନ୍ତୁ, ସର୍ବଶକ୍ତିମାନ୍ ଯୋଗେଶ୍ୱର କୃଷ୍ଣଙ୍କର ପରିଣାମ ! ଯାହାଙ୍କର ନାମ ମାତ୍ର ଉଚ୍ଚାରଣରେ ବିପଦ ଖଣ୍ଡନ ହୋଇଥାଏ, ଯାହାଙ୍କର ନେତୃତ୍ୱରେ ଯାଦବବଂଶ ବିଶ୍ୱରେ ଏକ ଅଦ୍ୱିତୀୟ ଶକ୍ତି ହୋଇଥିଲେ, ସେମାନଙ୍କର ବିନାଶ ଦେଖନ୍ତୁ; ପୁଣି ଦେଖନ୍ତୁ କୃଷ୍ଣଙ୍କର ଅସହାୟ ଦେହତ୍ୟାଗ ବ୍ୟାପାରକୁ । କେବଳ ପୁରାଣ ନୁହେଁ, ଇତିହାସ ସୁଦ୍ଧା ଏହିଭଳି ଅଜସ୍ର ଘଟଣାର ସାକ୍ଷ୍ୟ ଦେଇପାରିବ । ପ୍ରବଳ-ପରାକ୍ରାନ୍ତ ନନ୍ଦବଂଶ ବିରୁଦ୍ଧରେ ଯେତେବେଳେ ସହାୟ-ସମ୍ବଳହୀନ ଯୁବକ ବିଦ୍ରୋହ କଲା, ସେତେବେଳେ କିଏ ଜାଣିଥିଲା ଏହି ଚନ୍ଦ୍ରଗୁପ୍ତ ଦିନେ ଭାରତର ଭାଗ୍ୟ-ନିୟନ୍ତା ହେବ ? ଏ ସବୁ ପ୍ରଶ୍ନର ଯୁକ୍ତି ସମର୍ଥିତ ଉତ୍ତର ଦେବା ସମ୍ଭବ ନୁହେଁ ।

ତେବେ ସତ୍ୟ ଆଉ ନ୍ୟାୟର ଅନୁଗମନ, ଧର୍ମପଥକୁ କର୍ତ୍ତବ୍ୟପଥ ରୂପରେ ନିର୍ବାଚନକାରୀ ମଣିଷକୁ ସମସ୍ତ ବିପଦରୁ ରକ୍ଷାକରିଥାଏ । ସେ ସର୍ବଦା ଏକ ଅଦୃଶ୍ୟ ହସ୍ତର ସାହାଯ୍ୟ ପାଉଥାଏ । ପ୍ରଲୋଭନ ଏବଂ ବର୍ତ୍ତମାନ-ସର୍ବସ୍ୱତା ବ୍ୟକ୍ତିର ପତନକୁ ଡାକିଆଣେ । କାରଣ ତାହାଦ୍ୱାରା ମଣିଷ ଈଶ୍ୱରଙ୍କଠାରୁ ଦୂରେଇଯାଏ । ଯାହାକୁ ଈଶ୍ୱରଙ୍କର ଆଶୀର୍ବାଦ ମିଳେ, ସେ ଦୁର୍ବଳ ହୋଇ ମଧ୍ୟ ଅମିତ ପରାକ୍ରମଶାଳୀ, ଅଜ୍ଞାନ ହୋଇ ମଧ୍ୟ ଜ୍ଞାନଗରିଷ୍ଠ; ତେଣୁ କୁହାଯାଏ 'ରଖେ ହରି ମାରେ କିଏ' ।

---

# ଲେଖୁ ଲେଖୁ କରଣ

ଅଭ୍ୟାସ ମନୁଷ୍ୟର ଦ୍ୱିତୀୟ ପ୍ରକୃତି । ଅଭ୍ୟାସ ବଳରେ ମଣିଷ-ଶିଶୁ ଠିଆହୋଇ ଚାଲିବାକୁ ଶିଖେ, ଆସ୍ତେ ଆସ୍ତେ କଥାଦ୍ୱାରା ମନର ଭାବ ବ୍ୟକ୍ତ କରିବାକୁ ଯତ୍ନ କରେ ଏବଂ ଶେଷରେ ପ୍ରତ୍ୟେକ କାର୍ଯ୍ୟ ପାଇଁ ନିଜର ଇନ୍ଦ୍ରିୟମାନଙ୍କର ବ୍ୟବହାର କରେ । କେବଳ ଅଭ୍ୟାସ ଦ୍ୱାରାହିଁ ପାଠ ପଢ଼ି ମଣିଷ ବିଦ୍ୱାନ୍ ହୋଇପାରେ । ତେଣୁ କବି କହିଛନ୍ତି—

ଅଭ୍ୟାସ ଯୋଗେ ଶିଶୁ ଯଥା
ଶିଖଇ କ୍ରମେ କହି କଥା ।
ତେସନ ଅଭ୍ୟାସର ବଳେ,
କବା ଅସାଧ୍ୟ ମହୀତଳେ ।

ଅଭ୍ୟାସ ହିଁ ଅସାଧ୍ୟ କାର୍ଯ୍ୟକୁ ସୁସାଧ୍ୟ କରିଥାଏ । କୂଅର ନଳି ସମସ୍ତେ ଦେଖିଥିବେ । ଅନେକ ସମୟରେ ଯେଉଁ ବାଟ ଦେଇ ପାଣି ଟଣାଯିବା ନିମନ୍ତେ ଦଉଡ଼ି ଯିବା ଆସିବା କରେ, ସେଠାରେ ପଥରର ନଳି ଉପରେ ମଧ୍ୟ ଗୋଟିଏ ଦାଗ ପଡ଼ିଯାଇଥାଏ । ଯେବେ କୋମଳ ତନ୍ତୁ-ପ୍ରସ୍ତୁତ ଦଉଡ଼ି ପଥର ଦେହ ଉପରେ ପୁଣି ଗଭୀର ଦାଗ ସୃଷ୍ଟି କରିପାରେ, ତେବେ ନିୟମିତ ଅଭ୍ୟାସ କେଉଁ କାର୍ଯ୍ୟରେ ସଫଳତା ଆଣି ଦେଇ ପାରିବ ନାହିଁ ? ଏଇଭଳି ଗୋଟିଏ ଘଟଣା ତ ଭାରତୀୟ ବୈୟାକରଣିକ ବୋପଦେବଙ୍କର ଜୀବନର ଦର୍ଶନକୁ ବଦଳାଇଦେଇଥିଲା । ଶୁଣାଯାଏ ପୃଥିବୀର ଜଣେ ଶ୍ରେଷ୍ଠ ବକ୍ତା ଡିମସ୍ଥିନିସ୍ ତାଙ୍କର ବାଲ୍ୟକାଳରେ ଅତ୍ୟନ୍ତ ଖନା ଥିଲେ । ଆବାଲ୍ୟରୁ ତାଙ୍କର ଇଚ୍ଛା ଥିଲା, ସେ କେମିତି ଜଣେ ସୁବକ୍ତା ହୋଇପାରିବେ । ଏଥିନିମନ୍ତେ ସେ ପ୍ରତ୍ୟହ ନିର୍ଜନ ସ୍ଥାନକୁ ଯାଇ ଜିଭତଳେ ଗୋଟିଏ ଗୋଡ଼ି ରଖି ବକ୍ତୃତା ଦେବାର ଅଭ୍ୟାସ କରୁଥିଲେ । ନିୟମିତ ଅଭ୍ୟାସ ତାଙ୍କର ଖନାଦୋଷକୁ ଦୂର କରି ଦେଇପାରିଥିଲା ଏବଂ ସେ ନିଜର ଲକ୍ଷ୍ୟରେ ସଫଳ ହୋଇପାରିଥିଲେ । ତେଣୁ ଜୀବନରେ ସଫଳତା ଲାଭ କରିବାକୁ ହେଲେ ସତ୍ ଅଭ୍ୟାସ ହିଁ ମଣିଷର ଏକମାତ୍ର ଅବଲମ୍ବନୀୟ ।

ଜୀବନରେ ଅଭ୍ୟାସର ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି । ଅଭିନେତାର ଅଭିନୟ କୌଶଳ ଦର୍ଶକମାନଙ୍କୁ ମୁଗ୍ଧ, ଚକିତ କରିଦିଏ । ସର୍କସରେ ମଣିଷ ଆଉ ପଶୁପକ୍ଷୀର ରୋମାଞ୍ଚକର କ୍ରିୟାକଳାପ ସମସ୍ତେ ଆଶ୍ଚର୍ଯ୍ୟ-ବିସ୍ଫାରିତ ନେତ୍ରରେ ଉପଭୋଗ କରନ୍ତି । ସାଧାରଣ ଖଣ୍ଡେ ଦଉଡ଼ି ଉପରେ ବାଳକଟିଏ ବାଟରେ ଚାଲିଲା ଭଳି ନିଶ୍ଚିନ୍ତରେ ଚାଲିଯାଏ; ଛୁଟନ୍ତା ଘୋଡ଼ା ପିଠିରୁ ଡେଇଁପଡ଼ି ଅନ୍ୟ ଏକ ଘୋଡା ପିଠିରେ ଅନାୟାସରେ ଆରୋହଣ କରେ । ଏସବୁ କିପରି ହୁଏ ? ଏହା ପଛରେ ରହିଛି କେବଳ ନିୟମିତ ଅଭ୍ୟାସ, କର୍ମନିଷ୍ଠା ଆଉ ଆତ୍ମବିଶ୍ୱାସ । 'କ' ଅକ୍ଷର ଯେଉଁ ଶିଶୁ ପକ୍ଷରେ ବିଭୀଷିକାପ୍ରଦ, ଉତ୍ତର ଜୀବନରେ ସେ

ଯଦି ଜଣେ ପଣ୍ଡିତ ଓ ଲେଖକ ହୋଇଗଲା, ତେବେ ତା' ପଛରେ ଅଭ୍ୟାସ ବ୍ୟତୀତ ଆଉ କ'ଣ ଥାଇପାରେ ? ଶୁଣାଯାଏ ଯେ, ନେପୋଲିଅନ ବାଲ୍ୟକାଳରେ ଅତ୍ୟନ୍ତ ଭୟାଳୁ ଥିଲେ । ସ୍ୱପ୍ନଟିଏ ଦେଖିଲେ ମଧ୍ୟ ସେ ଭୟଭୀତ ହୋଇପଡୁଥିଲେ । ଉତ୍ତରଜୀବନରେ ତାଙ୍କୁ ହିଁ ଆମେ ପ୍ରବଳ-ପରାକ୍ରାନ୍ତ ବ୍ରିଟିଶ୍ ଶକ୍ତିର ହୃତ୍‌କମ୍ପ ସୃଷ୍ଟିକାରୀ ଆଜାଦ୍ ହିନ୍ଦ୍ ଫୌଜର ନିର୍ଭୀକ ସର୍ବାଧିନାୟକ ରୂପରେ ଦେଖିବାକୁ ପାଇଲୁ । ଏ ସବୁ ସମ୍ଭବ ହୋଇପାରିଲା କେବଳ ଶକ୍ତ ସଙ୍କଳ୍ପର ନିୟମିତ ଅଭ୍ୟାସ ଦ୍ୱାରା । ଶହ ଶହ ବୀର ରାଜନ୍ୟବର୍ଗଙ୍କ ଉପସ୍ଥିତିରେ ସବ୍ୟସାଚୀ ଅର୍ଜୁନ ଘୂର୍ଣ୍ଣାୟମାନ ଚକ୍ରସ୍ଥିତ ମତ୍ସ୍ୟର ବାମ ଚକ୍ଷୁ ଅନାୟାସରେ ବିଦ୍ଧ କରିପାରିଥିଲେ । ଏକାଗ୍ର ଅଭ୍ୟାସ ହିଁ ତାଙ୍କୁ ଏଭଳି ଅତୁଳନୀୟ ଯୋଗ୍ୟତା ପ୍ରଦାନ କରିଥିଲା । ଏହାଛଡ଼ା ଏକନିଷ୍ଠ ସାଧକ ଏକଲବ୍ୟ ବିଷୟ ସମସ୍ତେ ଜାଣନ୍ତି । ବିନା ଗୁରୁରେ ଧନୁର୍ବିଦ୍ୟାର ଯେଉଁ କୌଶଳ ସେ ଆୟତ୍ତ କରି ସମଗ୍ର କୌରବ ଏବଂ ପାଣ୍ଡବ ମହଲରେ ତ୍ରାସ ସୃଷ୍ଟି କରିପାରିଥିଲା, ତାହା କେବଳ ଅଭ୍ୟାସ ଦ୍ୱାରା ହିଁ ସମ୍ଭବ ହୋଇପାରିଥିଲା । ବିଦ୍ୟା, ବ୍ୟବସାୟ, ଶିଳ୍ପ, ଜ୍ଞାନ ବିଜ୍ଞାନ, କୃଷି, ଚିକିତ୍ସା, ଲେଖନ, ଭାଷଣ ପ୍ରତ୍ୟେକ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିବା ନିମନ୍ତେ ଏହି ଅଭ୍ୟାସ ଉପରେ ନିର୍ଭରଶୀଳ ହେବାକୁ ପଡ଼ିଥାଏ । ମନର ଅସ୍ଥିରତାକୁ ଏହା ସାହାଯ୍ୟରେ ସଯତ ଏବଂ ଶାନ୍ତ କରାଯାଇପାରେ ।

ଅଭ୍ୟାସର ସୁଫଳ ଏକ ଅବଶ୍ୟମ୍ଭାବୀ ପରିଣତି । କଳ୍ପନା କରାଯାଉ; ଜଣେ ଅତ୍ୟନ୍ତ ସ୍ଥୂଳ ବ୍ୟକ୍ତି ରହିଛନ୍ତି । ଦୌଡ଼ିବା ତ ଦୂରର କଥା, ସ୍ୱଚ୍ଛନ୍ଦ ଭାବରେ ଚାଲିବାର ଶକ୍ତି ସୁଦ୍ଧା ତାହାର ନାହିଁ । ଏଭଳି ଅବସ୍ଥାରେ ଯଦି ସେ ପ୍ରତିଦିନ ସାମାନ୍ୟ ଦୂରତା ଦୌଡ଼ିବାର ଅଭ୍ୟାସ କରେ ଏବଂ କ୍ରମଶଃ ଏହି ଅଭ୍ୟାସକୁ ବଢ଼ାଯାଇଥାଏ, ତାହାହେଲେ କିଏ କହିପାରିବ, ଦିନେ ନା ଦିନେ ସେ ପୃଥିବୀର ଦ୍ରୁତତମ ମନୁଷ୍ୟ ହୋଇନପାରେ । ପ୍ରତ୍ୟେକ କାର୍ଯ୍ୟ ଆରମ୍ଭରେ ଅତ୍ୟନ୍ତ କଷ୍ଟସାଧ୍ୟ, ପ୍ରାୟ ଅସମ୍ଭବ ମନେହୋଇଥାଏ । ମାତ୍ର ଥରେ ଅଭ୍ୟାସରେ ପଡ଼ିଗଲେ, ଆଉ କିଛି ଅସୁବିଧା ହୁଏ ନାହିଁ । କଳିଯୁଗର ଭୀମ ରାମମୂର୍ତ୍ତିଙ୍କ କଥା କିଏ ବା ନ ଜାଣିଛି ? ବାଲ୍ୟକାଳର ଏହି ଦୁର୍ବଳ ଶିଶୁ ପରବର୍ତ୍ତୀ କାଳରେ ହାତୀକୁ ସୁଦ୍ଧା ନିଜ ଛାତିଉପରେ ଟେକିଇ ଦେଉଥିଲେ । ଏକାବେଳକେ ଦୁଇଦୁଇଟା କାର୍‌କୁ ଅଟକାଇ ରଖିପାରୁଥିଲେ । ନିୟମିତ ଅଭ୍ୟାସ ବଳରେ ହିଁ ସେ ଏହା କରିପାରିଥିଲେ । ଯେଉଁ ଛାତ୍ର ଲେଖାପଢ଼ାରେ ଅତ୍ୟନ୍ତ ଦୁର୍ବଳ, ସେ ଯଦି ସଂକଳ୍ପବଦ୍ଧ ହୋଇପାରିବ, ତେବେ ପାଠ ଯେତେ କଠିନ ହେଉନା କାହିଁକି, ତାକୁ ସେ ଅନାୟାସରେ ଆୟତ୍ତ କରିପାରିବ । କାର୍ଯ୍ୟ ଯେତେ କଠିନ ହେଉ ନା କାହିଁକି, ନିମିତ ଅଭ୍ୟାସ ବଳରେ, ଅଳ୍ପଦିନ ମଧ୍ୟରେ ତାହା ଏତେ ସରଳ ହୋଇଯିବ ଯେ, ସେତେବେଳେ ଶିକ୍ଷାର୍ଥୀ ନିଜର ଶକ୍ତି ଓ ସାମର୍ଥ୍ୟ ସମ୍ପର୍କରେ ଆଶ୍ଚର୍ଯ୍ୟ ହୋଇଯିବ ।

ଏଭଳି ଅନେକ ବ୍ୟକ୍ତି ଅଛନ୍ତି, ଯେଉଁମାନେ କେବଳ ବଡ଼ ବଡ଼ ସଙ୍କଳ୍ପମାନ କରିବାରେ ହିଁ ଆନନ୍ଦ ପାଆନ୍ତି । ମାତ୍ର ତାକୁ କାର୍ଯ୍ୟରେ ପରିଣତ କରିବା ନିମନ୍ତେ ଏମାନଙ୍କର କୌଣସି ଆଗ୍ରହ ବା ଉଦ୍ୟମ ନଥାଏ । ଏ କ୍ଷେତ୍ରରେ ସେମାନଙ୍କ ଲକ୍ଷ୍ୟ ହାସଲ ହେବ କିପରି ? କଠିନତା ସଂକଳ୍ପବଦ୍ଧ ମନୁଷ୍ୟକୁ ତା'ର ପଥରୁ ଦୂରେଇ ଦେଇ ପାରେ-ନାହିଁ । ସଫଳତା ପଥର ସମସ୍ତ ବାଧାବିଘ୍ନ ସେ କେବଳ ଅଭ୍ୟାସ ଦ୍ୱାରାହିଁ ଦୂର କରିଦିଏ । ଅନଭ୍ୟାସ ଅଧିଗତ ଶକ୍ତିକୁ ମଧ୍ୟ ଦୁର୍ବଳ କରିଦିଏ । ପଣ୍ଡିତ ବ୍ୟକ୍ତି ଶାସ୍ତ୍ରାଲୋଚନାରୁ ନିଜକୁ ଦୂରେଇ ନେଲେ, ଅଚିରେ ସବୁ ଭୁଲିଯାଏ । ତେଣୁ କୁହାଯାଇଛି "ଅନଭ୍ୟାସେ ବିଷଂ ବିଦ୍ୟା" ଅର୍ଥାତ୍ ଅନଭ୍ୟାସ ଦ୍ୱାରା ବିଦ୍ୟା ଭଳି ଅମୃତ ମଧ୍ୟ ବିଷ ହୋଇଯାଏ । ତେଣୁ ଯେକୌଣସି କାର୍ଯ୍ୟରେ କୃତିତ୍ୱକୁ ସ୍ଥାୟୀ କରିବାକୁ ହେଲେ ଅଭ୍ୟାସ ଅନିବାର୍ଯ୍ୟ ।

ଧୈର୍ଯ୍ୟ ହେଉଛି ଅଭ୍ୟାସର ନିତ୍ୟ ସଙ୍ଗୀ । ଅଧୈର୍ଯ୍ୟ ଭାବ ମଣିଷକୁ କ୍ଳାନ୍ତ, ବିବ୍ରତ ଏବଂ ନୈରାଶ୍ୟବାଦୀ କରିପକାଏ । ଆଉ ନିରାଶା ଜର୍ଜରିତ ମଣିଷ କାର୍ଯ୍ୟର ଶେଷ ପର୍ଯ୍ୟନ୍ତ ଅପେକ୍ଷା କରେ ନାହିଁ । ଅଭ୍ୟାସ ପାଇଁ ପ୍ରୟୋଜନ ସଂକଳ୍ପ ଓ ନିଷ୍ଠା । ଅନ୍ୟ କଥାରେ ନିଜର ଅଭ୍ୟାସ ବଦଳାଇବା ମଧ୍ୟ ଉଚିତ ନୁହେଁ । ବିବେକ ବୁଦ୍ଧି ହିଁ ଏ କ୍ଷେତ୍ରରେ କର୍ତ୍ତବ୍ୟ ନିରୂପଣରେ ସହାୟକ ହେବ । ଅନୁକୂଳ ପରିବେଶ ଅଭ୍ୟାସର ସହାୟକ । ଯଥାଶକ୍ତି ଶରୀରଚର୍ଚ୍ଚା, ବିଦ୍ୟାଧ୍ୟୟନ, ପରୋପକାର ଇତ୍ୟାଦିରେ ନିଜକୁ ମଗ୍ନ କରି ରଖିଲେ ଦିନେ ନା ଦିନେ ସଫଳତା ନିଶ୍ଚୟ ମିଳିବ । ନିୟମିତ ଅଭ୍ୟାସ ହିଁ ଜଡ଼ ବୁଦ୍ଧିକୁ ବିଦ୍ୱାନ୍‌ରେ ପରିଣତ କରିବ । ତେଣୁ ଅଭ୍ୟାସକୁ ମନୁଷ୍ୟର ଦ୍ୱିତୀୟ ପ୍ରକୃତି ବୋଲି ଯଥାର୍ଥରେ କୁହାଯାଇଛି ଏବଂ 'ଲେଖୁ ଲେଖୁ କରଣି' ଲୋକୋକ୍ତିର ଏହା ହିଁ ହେଉଛି ତାତ୍ପର୍ଯ୍ୟ ।

## ଯେ ପକ୍ଷୀ ଉଡ଼େ ଯେତେ ଦୂର

ସଙ୍କୀର୍ଣ୍ଣତା ଏବଂ ଉଦାରତା ମଧ୍ୟରେ ବ୍ୟକ୍ତିଗତ ଜୀବନ ବିସ୍ତୃତ । ନିରନ୍ତର ସ୍ୱାର୍ଥ ଚିନ୍ତା ମଣିଷକୁ ବ୍ୟକ୍ତିକୈନ୍ଦ୍ରିକ ଏବଂ ଆତ୍ମସୁଖପରାୟଣ କରିଦିଏ । ଏହିଭଳି ସଙ୍କୀର୍ଣ୍ଣଚେତା ବ୍ୟକ୍ତି ସଂସାରରେ କେବଳ ନିଜକୁ ଏବଂ ନିଜର ସ୍ୱାର୍ଥଚିନ୍ତା ବ୍ୟତୀତ ଅନ୍ୟ କିଛି ବୁଝନ୍ତି ନାହିଁ । ଏଇମାନଙ୍କୁ ହିଁ ଆଚାର୍ଯ୍ୟ ବିନୋବା 'ତସ୍କର' ବୋଲି କହିଛନ୍ତି । ଚୋରର ଯେମିତି ସମାଜକୁ ଦେବାର କିଛି ନଥାଏ, ଅଥଚ ସମସ୍ତ ମୂଲ୍ୟବାନ ସମ୍ପତ୍ତିକୁ ସେ ଅପହରଣ କରି ନିଜର କରଗତ କରିବାକୁ ଚାହେଁ, ଏହି ଧରଣର ସ୍ୱାର୍ଥସର୍ବସ୍ୱ ବ୍ୟକ୍ତି ବୃନ୍ଦ, ସେହିଭଳି ଭାବରେ ସମାଜକୁ କିଛି ନଦେଇ, ତାହାର ସାରଟିକୁ ନିଜ ନିମନ୍ତେ ଅପହରଣ କରିନେବା ନିମନ୍ତେ ସତତ ପ୍ରଯତ୍ନଶୀଳ । ଏମାନେ ଭୟଙ୍କର ଏହି କାରଣରୁ ଯେ, ଏମାନଙ୍କ ଦ୍ୱାରାହିଁ ସଂସାର

କ୍ଷେତ୍ରରେ ବହୁ ଶୂନ୍ୟତା ଦୃଷ୍ଟି ହୁଏ । ତେଣୁ ଏମାନଙ୍କ ପ୍ରତି ସର୍ବଦା ସତର୍କ ଦୃଷ୍ଟି ରଖାଯିବା ଆବଶ୍ୟକ ।

ମଣିଷ ଯାହା ଦେଖେ ତତ୍‌କ୍ଷଣାତ୍ ତାହା ଶିଖେ ବା ଶିଖିବାକୁ ଆରମ୍ଭ କରେ । ଜନ୍ମ ସୂତ୍ରରେ କେହି ସ୍ୱୈର ବା ସାଧୁ ହୋଇ ପୃଥିବୀକୁ ଆସିନଥାଏ । ପରିବେଶ ହିଁ ତାକୁ ଯେପରି ରୂପଦିଏ । ଏ ଦୃଷ୍ଟିକୋଣରୁ ବିଚାର କରିବାକୁ ଗଲେ, ମଣିଷ ଶିଶୁ ଏକ ନରମ ମାଟି ପିଣ୍ଡୁଳା ଛଡ଼ା ଅନ୍ୟ କିଛି ନୁହେଁ । ତାକୁ ଯେଉଁ ଛାଞ୍ଚରେ ରଖାଯିବ, ସେ ତାହାର ରୂପ ନେବ । ନେଣ୍ଟ ପରିବେଶ ବା ପରିପାର୍ଶ୍ୱ ମଣିଷ ଜୀବନ ନିର୍ମାଣରେ ବିଶିଷ୍ଟ ଏକ ଭୂମିକା ଗ୍ରହଣ କରେ । ଏହାକୁ ଗୋଟିଏ ସୁନ୍ଦର ଗଳ୍ପ ସାହାଯ୍ୟରେ ବୁଝାଇ ଦିଆଯାଇ ପାରିବ, ଯାହା ଅନେକେ ଜାଣନ୍ତି ।

ଜଙ୍ଗଲରେ ଏକ ଶୁକପକ୍ଷୀ ପରିବାରର ଦୁଇଟି ଶିଶୁ ଭାଗ୍ୟ ବିପର୍ଯ୍ୟୟରୁ ପରସ୍ପରଠାରୁ ଦୂରେଇଯାଇ ଦୁଇଟି ବିପରୀତ ପରିବେଶରେ ବଢ଼ିବାକୁ ଲାଗିଲେ । ପ୍ରଥମ ଶିଶୁଟି ଆଶ୍ରୟ ପାଇଲା ଜଣେ ସାଧୁ ଗୃହସ୍ଥଙ୍କ ନିକଟରେ, ଦେବାରାଧନା, ଅତିଥିସେବା ଦ୍ୱାରା ଯେ ଭଦ୍ରଭାବରେ ଜୀବନ କଟାନ୍ତି । ଅପର ପକ୍ଷୀଟିର ଭାଗ୍ୟ ତାକୁ ଏକ ନିଷ୍ଠୁର ନିଷାଦ ଗୃହକୁ ନେଇଗଲା । ନିତ୍ୟନୈମିତ୍ତ ହତ୍ୟା, ଲୁଣ୍ଠନ ଏବଂ ପରପୀଡ଼ନ ଦ୍ୱାରା ନିଷାଦର ଜୀବନ ଗ୍ରସ୍ତହୋଇ ରହିଥିଲା । ପରିଣାମରେ ପ୍ରଥମ ପକ୍ଷୀଟି ବାକ୍ ପ୍ରୟୋଗରେ ଯେତେବେଳେ ଅତ୍ୟନ୍ତ ବିନୀତ, ଭଦ୍ର ଓ ଶାଳୀନ ହୋଇଉଠିଲା, ଦ୍ୱିତୀୟ ପକ୍ଷୀର ବ୍ୟବହାର ହେଲା ଅତ୍ୟନ୍ତ ରୂଢ଼, ଅମାର୍ଜିତ ଏବଂ ଅସଭ୍ୟ । ଏହା କିଭଳି ସମ୍ଭବ ହେଲା ? ଗୋଟିଏ ପିତା-ମାତାଙ୍କ-ଠାରୁ ଉଭୟଙ୍କର ଜନ୍ମ—କେବଳ ମାତ୍ର ବଢ଼ିଛନ୍ତି ବିପରୀତ ପରିବେଶରେ । ତାହା ହିଁ ତାଙ୍କର ସ୍ୱଭାବ ପରିବର୍ତ୍ତନର ଏକମାତ୍ର କାରଣ । ତେଣୁ ମଣିଷ ପ୍ରକୃତି ଯେ ବଂଶାନୁଗତ କିମ୍ବା ଜନ୍ମଭିତ୍ତିକ ନହୋଇ ପରିବେଶ ନିୟନ୍ତ୍ରିତ ହୋଇଥାଏ, ଏଥିରେ ଆଦୌ ସନ୍ଦେହ ନାହିଁ ।

ଉଦାର ବ୍ୟକ୍ତି ସମାଜର ମଧ୍ୟମଣି । ବହୁ ଭାଗ୍ୟରେ ଏଭଳି ବ୍ୟକ୍ତିର ଦର୍ଶନ ମିଳିଥାଏ । ଘଡ଼ିଏ ତାଙ୍କ ପାଖରେ ବସିପଡ଼ିଲେ ମନ ମାଳିନ୍ୟମୁକ୍ତ ହୁଏ । ହୃଦୟରୁ ସଙ୍କୀର୍ଣ୍ଣ ଚିନ୍ତା ଦୂରହୋଇ ତାହା ନିର୍ମଳ ହୋଇଯାଏ । ସତ୍ ଚିନ୍ତା, ସତ୍ ଭାବନା, ସତ୍ କାର୍ଯ୍ୟ ଦ୍ୱାରା ସେ ଜଗତର ଅଶେଷ ଉପକାର କରେ । ଏମାନେ ହେଲେ ସମାଜର ପାରଖୀ । ସମଗ୍ର ପରିବେଶକୁ ରୁଚିବନ୍ତ କରି ଗଢ଼ିବା ନିମନ୍ତେ ଏମାନେ ସତତ ଉଦ୍ୟମ କରୁଥାଆନ୍ତି । ଏମାନଙ୍କ ବିଚାରରେ ଯୋଗ୍ୟ ବ୍ୟକ୍ତି ପ୍ରଶଂସିତ ହୁଏ, ଅଯୋଗ୍ୟ ହୁଏ ନିନ୍ଦିତ । ଗୁଣୀ ହିଁ ଗୁଣରେ ଆଦର କରେ । ତେଣୁ ତ କବି କହିଛନ୍ତି—

"ମୋତି ମୂଲ୍ୟ କାହିଁ ବୁଝିବ ଶବର,
ମୋତି ଗ୍ରହ କରେ ଗୁଣୀରେ ଆଦର ।।"

ଉଦାର କ୍ଷମାଗୁଣରେ ଏହି ଧରଣର ବ୍ୟକ୍ତିଙ୍କ ହୃଦୟ ପୂର୍ଣ୍ଣ ହୋଇଥାଏ । ଏ ସମ୍ପର୍କରେ ଆଲେକ୍‌ଜାଣ୍ଡାର ଏବଂ ଦୁର୍ଦ୍ଧର୍ଷ ଯୋଦ୍ଧା ପୁରୁଙ୍କର ଆଖ୍ୟାନକୁ ସ୍ମରଣ କରାଯାଇପାରେ । ପ୍ରଚଣ୍ଡ ବିକ୍ରମରେ ଦେଶର ସ୍ୱାଧୀନତା ନିମନ୍ତେ ଯୁଦ୍ଧକରି ଅବଶେଷରେ ବୀର ପୁରୁ ଗ୍ରୀକ୍‌ବାହିନୀ ଦ୍ୱାରା ବନ୍ଦୀହୋଇ ଆଲେକ୍‌ଜାଣ୍ଡାରଙ୍କ ପାଖକୁ ନୀତ ହେଲେ । ବିଜୟୀ ଯୁଦ୍ଧର ନାୟକ ଆଲେକ୍‌ଜାଣ୍ଡାର ମନେ ମନେ ଏହି ଅମିତ ପ୍ରତାପଶାଳୀ ବ୍ୟକ୍ତିଙ୍କୁ ସମ୍ମାନ କରୁଥିଲେ । ତଥାପି ସେ ତାଙ୍କୁ ପଚାରିଲେ, "ବର୍ତ୍ତମାନ ଆପଣ ମୋଠାରୁ କି ରୂପ ବ୍ୟବହାର ଆଶାକରନ୍ତି ?" ଉନ୍ନତମସ୍ତକ ପୁରୁ ଗର୍ବର ସହିତ ଉତ୍ତର ଦେଲେ, "ଜଣେ ରାଜା ଅନ୍ୟ ରାଜାଠାରୁ ଯେଉଁ ବ୍ୟବହାର ଆଶାକରେ ।" କହିବା ବାହୁଲ୍ୟ, ଆଲେକ୍‌ଜାଣ୍ଡାର ଅନୁଦାର ନଥିଲେ । ଅନ୍ୟଙ୍କୁ ସହ୍ୟ କରିବାର ଉଦାରତା ତାଙ୍କର ଥିଲା । ତେଣୁ ପୁରୁ ମୁକ୍ତହୋଇ ନିଜର ସାମ୍ରାଜ୍ୟ ଫେରିପାଇଥିଲେ । ଏହାର ଠିକ୍ ଓଲଟା ଘଟଣା ଘଟିଥିଲା—ଆଲ୍ଲାଉଦ୍ଦିନ୍ ଚିତୋର ଆକ୍ରମଣବେଳେ ବିଶ୍ୱାସରେ ଛେପଦେଇ ସେ ଯେଉଁଭଳି ରାଣା ଭୀମସିଂହଙ୍କୁ ମୃତ୍ୟୁପରି ରୂପ ବ୍ୟବହାର କରି ପଦ୍ମିନୀଙ୍କୁ ଦାବୀକରିଥିଲେ, ତାହାର ଫଳ ତାଙ୍କୁ ଭୋଗିବାକୁ ପଡ଼ିଥିଲା । ଆଲ୍ଲାଉଦ୍ଦିନ ଯେଉଁ ପରିବେଶରେ ବଢ଼ିଉଠିଥିଲେ—ହତ୍ୟା, ଷଡ଼ଯନ୍ତ୍ର, ବିଶ୍ୱାସଘାତକତା, ଛଳନା, ମିଥ୍ୟା ଭାଷଣ ଦ୍ୱାରା—ତାହା ସେ ଯୁଗରେ ଏକାନ୍ତ କଳୁଷିତ ଥିଲା । ତେଣୁ ଆଲ୍ଲାଉଦ୍ଦିନ୍ ତାହାର ଊର୍ଦ୍ଧ୍ୱକୁ ଉଠିପାରିନଥିଲେ ।

ଏ ପ୍ରସଙ୍ଗରେ ବାଙ୍କୀର ବୀରରାଣୀ ଶୁକଦେଈଙ୍କ ବୃତ୍ତାନ୍ତ ସୁଦ୍ଧା ସ୍ମରଣ କରାଯାଇପାରେ । ବାଙ୍କୀର ରାଜା ଖୋର୍ଦ୍ଧା ରାଜାଙ୍କ ବିଶ୍ୱାସଘାତକତାର ଶିକାର ହୋଇ ମୃତ୍ୟୁବରଣ କରିଥିଲେ । ରାଣୀ ଶୁକଦେଈ ବାଙ୍କୀ ସୈନ୍ୟବାହିନୀର ନେତୃତ୍ୱ ଗ୍ରହଣ କରି ଶେଷରେ ଖୋର୍ଦ୍ଧାର ଗଜପତିଙ୍କୁ ବନ୍ଦୀ କରିଥିଲେ । ଇଚ୍ଛା କରିଥିଲେ ସେ ତାଙ୍କୁ ହତ୍ୟାକରି ସ୍ୱାମୀ ହତ୍ୟାର ପ୍ରତିଶୋଧ ନେଇପାରିଥାନ୍ତେ । ମାତ୍ର ସେ ତାଙ୍କୁ କ୍ଷମା ଦେଲେ - ବଞ୍ଚିଥିବା ପର୍ଯ୍ୟନ୍ତ ଆତ୍ମକୃତ ପାପର ପ୍ରାୟଶ୍ଚିତ୍ତ କରିବା ନିମନ୍ତେ ଏକ ସୁଯୋଗ ଦେଲେ । ଏହାହିଁ ତାଙ୍କର ମହତ୍ତ୍ୱ ।

ମହାଶୂନ୍ୟରେ ପକ୍ଷୀ ଉଡ଼ୁଥାଏ । ଉଡ଼ୁ ଉଡ଼ୁ କ୍ରମଶଃ ସେ ଯେତିକି ଊର୍ଦ୍ଧ୍ୱଗାମୀ ହେଉଥାଏ ନିମ୍ନସ୍ଥ ବିଶ୍ୱର ସୀମା ତା' ଆଖିରେ ସେତିକି ବିସ୍ତୃତ ହୋଇଚାଲିଥାଏ । ଊର୍ଦ୍ଧ୍ୱଗାମିତା ତେଣୁ ବିସ୍ତୃତିର କାରଣ ରୂପେ ସୂଚିତ ହୋଇଥାଏ । ଭାଗବତକାର ଜଗନ୍ନାଥ ଦାସ ଏହା ଭଲରୂପେ ଜାଣିଥିଲେ । ତେଣୁ ସେ 'ଭାଗବତ'ରେ ଲେଖିଲେ—

"ଯେ ପକ୍ଷୀ ଉଡ଼େ ଯେତେ ଦୂର,
ସେ ଜାଣେ ତାହାର ବେଭାର ।"

ସ୍ୱାର୍ଥପରତା ଏବଂ ସଙ୍କୀର୍ଣ୍ଣଚିନ୍ତା ମଣିଷକୁ ସମାଜ ଆଖିରେ ବହୁ ତଳକୁ ନେଇଯାଏ । ଆଜିକାଲି ସ୍ୱାର୍ଥପରତାର ଏହି ସଂଗ୍ରାମକୁ ସ୍ଥିତିବାଦ (existentialism) ବୋଲି

କୁହାଯାଉଛି । ବସ୍ତୁତ, ଉଦାରତା, କ୍ଷମାପରାୟଣତା ସାମଗ୍ରିକ ଭାବରେ ତାହାର ସମସ୍ତ ମର୍ଯ୍ୟାଦା ହରାଇଛି । ଆଲୋକ ଭଳି ଅନ୍ଧକାରର ମଧ୍ୟ ଏକ ସ୍ୱତନ୍ତ୍ର ସ୍ଥାନ ଅଛି । ସବୁଠାରୁ ବଡ଼କଥା ଯେ ତାହା ଆଲୋକର ମର୍ଯ୍ୟାଦାବନ୍ତ ଦିଗଟି ପ୍ରତି ଆମର ଦୃଷ୍ଟି ଆକର୍ଷଣ କରିଥାଏ । ନ୍ୟାୟ ଅନ୍ୟାୟ ପାପପୁଣ୍ୟକୁ ନେଇ ସଂସାରର ପୂର୍ଣ୍ଣତା । ତାର ଅର୍ଥ ନୁହେଁ ଯେ ଅନ୍ଧକାରକୁ କେହି ଆଲୋକର ଉପରେ ସ୍ଥାନ ଦେବ । ଦୁନିଆଁରେ ଭଲଟା ସମସ୍ତଙ୍କ ପାଇଁ ଭଲ । ବସ୍ତୁତ ଆମକୁ ଏହି ଭଲ ସହିତ ପରିଚିତ କରାଇଥାଏ । ତେଣୁ ଜୀବନଧାରାରେ ଏହାର ଏକ ସ୍ୱତନ୍ତ୍ର ମୂଲ୍ୟ ରହିଛି ଏବଂ ପରିବେଶ ହିଁ ଏହାକୁ ଗଢ଼େ । ତେଣୁ 'ଯେ ପକ୍ଷୀ ଉଡ଼େ ଯେତେ ଦୂର' ସାହାଯ୍ୟରେ ଏହି ପରିବେଶ ପ୍ରତି ହିଁ ଆମକୁ ସଚେତନ କରିଦିଆଯାଇଛି । ଖୋଲା ଆଖିରେ ଦୁନିଆର ବସ୍ତୁତ ଦିଗନ୍ତ ଆଡ଼େ ଅନାଇବାକୁ ହିଁ ଆମକୁ ଚେତାଇ ଦିଆଯାଇଛି । ତାହାଦ୍ୱାରା ଜୀବନରେ ସଫଳତା ମିଳେ ବୋଲି କହିଦିଆଯାଇଛି ।

## ସ୍ୱାବଲମ୍ବନଶୀଳତା

ମଣିଷ ଜୀବନ କର୍ମମୟ । କର୍ମ ମଣିଷକୁ ଗଢ଼ି ଦିଏ ଏବଂ ଗତି ହିଁ ହେଉଛି ଜୀବନ । ଜନ୍ମର ପର ମୁହୂର୍ତ୍ତଠାରୁ ମାନବଶିଶୁ କର୍ମଚକ୍ରରେ ବ୍ୟାପୃତ ହୋଇପଡ଼େ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ସେଥିରୁ ତାହାର ମୁକ୍ତି ନଥାଏ । ଶିଶୁର ଦରୋଟି ହସ, ହସ୍ତପଦ ସଞ୍ଚାଳନ—ଏ ସବୁ ଅର୍ଥହୀନ ହେଲେହେଁ ମାନବୀୟ କର୍ମର ରୂପାନ୍ତର ମାତ୍ର । କ୍ରମଶଃ ବୟସ ବଢ଼ିବା ସଙ୍ଗେ ସଙ୍ଗେ ମଣିଷ କର୍ମକୁ ଉଦ୍ଦେଶ୍ୟପୂର୍ଣ୍ଣ ଭାବରେ ନିୟନ୍ତ୍ରିତ କରିବାକୁ ଶିଖେ । ଜୀବନସାରା ତାକୁ କର୍ମବୃତ୍ତର କେନ୍ଦ୍ରବିନ୍ଦୁ ରୂପେ ଆବର୍ତ୍ତିତ ହେବାକୁ ପଡ଼ିଥାଏ । ଜୀବନରେ ସଫଳତା ଲାଭ କରିବାକୁ ହେଲେ ତେଣୁ କିଛି ନା କିଛି କାମ କରିବା ନିତାନ୍ତ ଆବଶ୍ୟକ । ପୁରାଣ, ଶାସ୍ତ୍ର, ଗୀତା ଭାଗବତ ସବୁଠି ଏହି ମହତ୍ତ୍ୱ କର୍ମର ବର୍ଣ୍ଣନା କରାଯାଇଛି । କର୍ମ ହିଁ ଜୀବନ—ଆଳସ୍ୟର ଅନ୍ୟ ନାମ ମୃତ୍ୟୁ । ଯେ କର୍ମ ତ୍ୟାଗକରି ଶୋଇପଡ଼ନ୍ତି, ତାଙ୍କ ସହିତ ତାଙ୍କର ଭାଗ୍ୟ ମଧ୍ୟ ଶୋଇପଡ଼େ । ସିଂହ ଯଦି କର୍ମ ତ୍ୟାଗ କରି ନିଶ୍ଚିନ୍ତରେ ନିଦ୍ରା ଯାଏ, ତେବେ ମୃଗମାନେ ଆପେ ଆପେ ଆସି ତାହାର ପାଟିରେ ପଶିଯାଆନ୍ତି ନାହିଁ; କିମ୍ବା ଫଳଟିଏ ପାଇବାକୁ ହେଲେ ବୃକ୍ଷମୂଳରେ ଊର୍ଦ୍ଧ୍ୱମୁଖ ହୋଇ ଶୟନ କଲେ ଫଳ ଆପେ ପାଟି ଭିତରେ ପଶିଯାଏ ନାହିଁ—ଉଭୟକ୍ଷେତ୍ରରେ ଫଳ ନିମନ୍ତେ ଉଦ୍ୟମ ଲୋଡ଼ା ।

କର୍ମ ଦୁଇଟି ଉପାୟରେ କରାଯାଇଥାଏ । କିଛି କର୍ମ ନିଜଦ୍ୱାରା କରାଯାଏ ଏବଂ ଆଉ କେତେକ କାମ ପାଇଁ ଅନ୍ୟ ଉପରେ ନିର୍ଭର କରାଯାଏ । ସମୟର ସୀମାବଦ୍ଧତା ଦୃଷ୍ଟିରୁ ଜଣେ ମଣିଷ ଏକାଦିନକେ ବହୁ କର୍ମ କରିବା ସମ୍ଭବପର ନୁହେଁ । ଏଥିପାଇଁ ତାକୁ

ଅନ୍ୟର ସାହାଯ୍ୟ ନେବାକୁ ପଡ଼ିବ ହିଁ ପଡ଼ିବ । ତଥାପି ନିଜ ଦାୟିତ୍ୱରେ କରାଯାଉଥିବା କର୍ମ ଏବଂ ଅପରଦ୍ୱାରା ନିଷ୍ପନ୍ନ ହୋଇଥିବା କର୍ମ ଏ ଉଭୟରେ ପାର୍ଥକ୍ୟ ନିଶ୍ଚୟ ରହିବ । ନିଜେ ନିଜ ପାଇଁ କାମ କଲାବେଳେ ସେଥିରେ ଯେଉଁ ନିଷ୍ଠା ଏବଂ ଆନ୍ତରିକତା ରହିବ ଅନ୍ୟ ଦ୍ୱାରା ସେହି କାର୍ଯ୍ୟଟି କରାଗଲେ, ସେଥିରେ ତାହାର ସେହି ନିଷ୍ଠା ବା ଆନ୍ତରିକତା ରହିବ ନାହିଁ । ତେଣୁ ଯୁଗେ ଯୁଗେ କାଳେକାଳେ ସ୍ୱାବଲମ୍ବନଶୀଳତା ଉପରେ ଗୁରୁତ୍ୱ ଦିଆଯାଇଛି । ଉଦାହରଣ ସ୍ୱରୂପ କୃଷିକର୍ମ କରିବାକୁ ହେଲେ କାଦୁଅମାଟିକୁ ଘୃଣା ନକରି ଆପେ କ୍ଷେତରେ ଆଣ୍ଠୁ ପକେଇ ଦେଲେ ହିଁ ସେଥିରେ ସଫଳତା ମିଳିବ । ତା'ନକରି ଯଦି ଆପେ ଛତା ଜୋତା ପିନ୍ଧି ମୂଲିଆମାନଙ୍କ ଉପରେ ଏଥିପାଇଁ ସମ୍ପୂର୍ଣ୍ଣ ନିର୍ଭର କରାଯାଏ, ତେବେ ସେଥିରୁ ପ୍ରତ୍ୟାଶିତ ଫଳ ଯେ ମିଳିବ ନାହିଁ ଏଥିରେ ସନ୍ଦେହ ନାହିଁ ।

ନିଜର କର୍ମ ନିଜେ କରିବା ହିଁ ସବୁଠାରୁ ଭଲ । ତେବେ ଏଥିରେ ବହୁ ଅସୁବିଧା ଅବଶ୍ୟ ରହିଛି । ବର୍ତ୍ତମାନ ମଣିଷର ଜୀବନ ଅତ୍ୟନ୍ତ ଜଟିଳ ହୋଇପଡ଼ିଛି । ତା'ର ପ୍ରୟୋଜନର ସୀମା କ୍ରମଶଃ ବଢ଼ି ବଢ଼ି ଚାଲିଛି । ଏଥିରେ ସୁସ୍ଥଭାବରେ ବଞ୍ଚିବାକୁ ହେଲେ ସେ କେବଳ ସ୍ୱାବଲମ୍ବନଶୀଳ ହୋଇ ରହିପାରିବା ସମ୍ଭବପର ମଧ୍ୟ ନୁହେଁ । ନିଜ ପ୍ରୟୋଜନରେ ତାକୁ ବହୁ କ୍ଷେତ୍ରରେ ଅନ୍ୟ ଉପରେ ନିର୍ଭର କରିବାକୁ ପଡ଼ୁଛି । କେବଳ ଏତିକିରେ ଯେ ତା'ର ସମସ୍ତ ସମସ୍ୟାର ସମାଧାନ ହୋଇଯାଉଛି, ତାହା ମଧ୍ୟ ନୁହେଁ । ଯେତେବେଳେ ତା'ର ପ୍ରୟୋଜନ, ଅନ୍ୟ ଉପରେ ନିର୍ଭର କରୁଥିବାରୁ, ସେହି ମୁହୂର୍ତ୍ତରେ ତା'ର କାମଟି ହୋଇପାରୁନାହିଁ । ଫଳରେ ଅଶାନ୍ତି ବଢ଼ୁଛି, ଜୀବନ ଯନ୍ତ୍ରଣାମୟ ହୋଇଉଠୁଛି । ଏଥିରୁ ସତେ ଯେପରି ତା'ର ମୁକ୍ତି ନାହିଁ ।

ଅନ୍ୟ ଉପରେ ନିର୍ଭର କରିବା ମଣିଷର ଏକ ସହଜାତ ପ୍ରବୃତ୍ତି । ସେ ସବୁବେଳେ ଚାହେଁ ଅନ୍ୟ କିଏ ତା'ପାଇଁ ସବୁ କିଛି କରିଦେଉ । ଆର୍ଥିକ ଦୃଷ୍ଟିରୁ ଯେଉଁମାନେ ସ୍ୱଚ୍ଛଳ, ସେମାନେ ନିଜପାଇଁ କର୍ମଚାରୀ ନିଯୁକ୍ତ କରି ନିଶ୍ଚିନ୍ତରେ ବସିରହନ୍ତି । ଏଥିରେ ଯେ ସବୁକାମ ନିର୍ଦ୍ୱନ୍ଦ୍ୱରେ ହୋଇଯାଏ, ଏପରି ନୁହେଁ । ତେବେ କୌଣସିମତେ କାମଟି ତୁଲିଇ ହୋଇଯାଏ ମାତ୍ର । ପୂର୍ବକାଳରେ ମଣିଷର ପ୍ରୟୋଜନ ଥିଲା ସୀମିତ । ଗଣ୍ଡେ ଖାଇବାକୁ ଏବଂ ଖଣ୍ଡେ ପିନ୍ଧିବାକୁ ମିଳିଗଲେ ତାର ଜୀବନର ଲକ୍ଷ୍ୟ ପୂର୍ଣ୍ଣ ହୋଇଯାଉଥିଲା । ବିଲର ଫସଲଦ୍ୱାରା ତାହାର ଆହାର ସମସ୍ୟା ଏବଂ ବାଡ଼ିର କପା ଦ୍ୱାରା ତାହାର ବସ୍ତ୍ର ସମସ୍ୟା ସମାଧାନ ହୋଇ ଯାଉଥିଲା । ପୁରୁଷମାନେ ବିଲବାଡ଼ିର କାମ ବୁଝୁଥିଲେ, ସ୍ତ୍ରୀମାନେ ସୂତାକଟା, ଲୁଗା-ବୁଣାର ଦାୟିତ୍ୱ ନେଉଥିଲେ । ପ୍ରୟୋଜନ ସୀମିତ ହୋଇଥିବାରୁ ମଣିଷ ସ୍ୱାବଲମ୍ବନଶୀଳ ହେବାକୁ ଯଥେଷ୍ଟ ସୁଯୋଗ ପାଉଥିଲା । ମାତ୍ର ବର୍ତ୍ତମାନ ପରିସ୍ଥିତିରେ ଜଣେ କେବଳ ନିଜ ଉପରେ ନିର୍ଭରକରି ସୁସ୍ଥ ଭାବରେ ବଞ୍ଚି ରହିବା ସମ୍ଭବପର ନୁହେଁ । ତାକୁ କୌଣସି ନା କୌଣସି ବ୍ୟାପାରରେ ଅନ୍ୟ ଉପରେ ନିର୍ଭର କରିବାକୁ ହିଁ ପଡ଼ିବ ।

ପାଶ୍ଚାତ୍ୟସଭ୍ୟତା ମଣିଷର ନିର୍ଭରଶୀଳତା ବଢ଼ାଇ ଦେଇଛି । ସହଜ ଉପାୟରେ ଜୀବନ ଧାରଣ ନିମନ୍ତେ ନାନା ସାମଗ୍ରୀ ପାଇଯାଉଥିବାରୁ ତାହାର ପ୍ରୟୋଜନ ସୀମା ସେଥିଭଳି କ୍ରମଶଃ ବିସ୍ତୃତ ହେବାରେ ଲାଗିଛି, କର୍ମପ୍ରବୃତ୍ତି ମଧ୍ୟ ସେଇ ପରିମାଣରେ ଶ୍ଳଥ ହେବାରେ ଲାଗିଛି । ପକେଟ୍‌ରୁ କିଛି ପଇସା ଫୋପାଡ଼ିଦେଲେ ବିଶ୍ୱବଜାର ନାନା ଆପାତ ରମଣୀୟ ସାଧନମାନ ତା' ଆଗରେ ଆସି ଟୁଳ ହୋଇଯାଉଛି । କାମନାର ତ କୌଣସି ସୀମା ନାହିଁ । ସେ ଯେତେ ପାଉଛି ସ୍ପୃହା ତା'ର ସେତେ ବଢ଼ୁଛି । ପାଇନପାରିଲେ ତା'ର ମାନସିକ ଅଶାନ୍ତି ବଢ଼ୁଛି, ନୈତିକତା ବିପନ୍ନ ହୋଇଯାଉଛି । ଶାରୀରିକ ସୁସ୍ଥତା ପୁଣି ବିଘ୍ନିତ ହେଉଛି । କାମନା ଜର୍ଜର ବୁଭୁକ୍ଷୁ ଏକ ଜୀବନର ଭାର ବୋହି ମଣିଷ କ୍ଳାନ୍ତ ପଶୁ ଭଳି ଧକେଇ ଧକେଇ କୌଣସି ମତେ ସଂସାରପଥ ଅତିକ୍ରମ କରୁଛି ।

ଶାରୀରିକ ଶ୍ରମ ସହିତ ମାନସିକ ଶାନ୍ତିର ନିବିଡ଼ ଯୋଗାଯୋଗ ରହିଛି । ଅହରହ କର୍ମରେ ବ୍ୟାପୃତ ରହିଲେ ମଣିଷ ମନରେ କୁଚିନ୍ତା ଇତ୍ୟାଦି ପ୍ରବେଶ କରିପାରେନାହିଁ । 'ଅଳସ ମସ୍ତିଷ୍କ ସୟତାନ୍‌ର କାରଖାନା' ବୋଲି ଯାହା କୁହାଯାଇଛି, ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଅନ୍ତତଃ, ଏଥିରୁ ରକ୍ଷା ପାଇବାକୁ ହେଲେ ମଣିଷକୁ କର୍ମମୟ ଜୀବନ ଯାପନ କରିବାକୁ ପଡ଼ିବ ।

ଜାତିର ଜନକ ମହାତ୍ମା ଗାନ୍ଧି କେବଳ ଏଇଥିପାଇଁ ସ୍ୱାବଲମ୍ବନଶୀଳତା ଉପରେ ଏତେ ଗୁରୁତ୍ୱ ଦେଉଥିଲେ । ଅନ୍ୟର ଅନ୍ଧ ଅନୁକରଣମୋହ ନକରି, ପ୍ରୟୋଜନକୁ ସ୍ୱଶକ୍ତି ମଧ୍ୟରେ ସୀମାବଦ୍ଧ ରଖି ଜୀବନପଥରେ ଅଗ୍ରସର ହେବା ନିମନ୍ତେ ସେ ଭାରତୀୟମାନଙ୍କୁ ଉପଦେଶ ଦେଉଥିଲେ । ନିଜର ସମସ୍ତ କାର୍ଯ୍ୟ ସେ ଆପେ କରୁଥିଲେ । ପାଇଖାନା ସଫା କରିବାଠାରୁ ଆରମ୍ଭ କରି ଘର ଝାଡ଼ୁଦେବା ପର୍ଯ୍ୟନ୍ତ କୌଣସି କାର୍ଯ୍ୟ ସେ ହେୟ ବା ଘୃଣ୍ୟ ମନେ କରୁନଥିଲେ । ଏହାହିଁ ତାଙ୍କର ସଫଳତାର ସବୁଠୁ ବଡ଼ କାରଣ ।

ମଣିଷ ବିବେକ ଶକ୍ତିର ଅଧିକାରୀ । ତାହାର ଦ୍ୱାରା ପରିଚାଳିତ ହୋଇ ଜୀବନଯାତ୍ରାରେ ଆଗେଇ ଚାଲିବା ତା'ପକ୍ଷରେ ଏକାନ୍ତ କର୍ତ୍ତବ୍ୟ । ଏ ଦେଶରେ ଗୋଟିଏ ଓଡ଼ିଆ ପ୍ରବଚନ ମଧ୍ୟ ରହିଛି । ତା' ହେଉଛି ''ନିଜ ବୁଦ୍ଧିରେ ଘାସ କାଟିବ ବରଂ ଭଲ, ପର ବୁଦ୍ଧିରେ ଘୋଡ଼ା ଚଢ଼ିବା ଉଚିତ ନୁହେଁ ।' ଗୀତାରେ ମଧ୍ୟ ଅଛି, ''ସ୍ୱଧର୍ମେ ନିଧନଂ ଶ୍ରେୟଃ, ପରଧର୍ମୋ ଭୟାବହଃ ।'' ନିଜର ବିବେକାନୁମୋଦିତ ପନ୍ଥାରେ ଐକାନ୍ତିକ ନିଷ୍ଠାର ସହ କର୍ମ କରିଚାଲିବା ଉଚିତ । ସଫଳତା କିମ୍ବା ବିଫଳତା, ଯାହା ମିଳୁ ନା କାହିଁକି, ତାକୁ ସମାନ ଭାବରେ ଗ୍ରହଣ କରିନେଲେ ହିଁ ଜୀବନ ସମସ୍ୟା ମୁକ୍ତ ହୋଇଯାଏ ।

ସ୍ୱାବଲମ୍ବନଶୀଳତା ମଣିଷକୁ ଯେଉଁ ଅଖଣ୍ଡ ଶାନ୍ତି ଓ ନିରୁଦ୍‌ବିଗ୍ନତା ଦେଇଥାଏ, ତାହା ଯଥାର୍ଥରେ ପ୍ରଶଂସନୀୟ । ପରନିର୍ଭରଶୀଳତା ମଣିଷ ମନର ଆସ୍ଥା ଓ ଭରସାର ଭିତ୍ତିକୁ ଦୁର୍ବଳ କରିଦିଏ । ମଣିଷ ସମସ୍ତଙ୍କୁ ସନ୍ଦେହ କରିବାକୁ ଆରମ୍ଭ କରେ, କ୍ରମଶଃ ନିଜ ଉପରୁ

ତାହାର ଭରସା ତୁଟିଯାଏ । ତେଣିକି ସେ ଯାହା କରୁ, ଯେଉଁ ଉପାୟରେ କରୁନା କାହିଁକି, ସେଥିରେ ସଫଳତା ପାଇବା କଷ୍ଟକର ହୋଇପଡ଼େ । ସ୍ୱାବଲମ୍ବନଶୀଳତା ମଣିଷର ଆତ୍ମବିଶ୍ୱାସ ବୃଦ୍ଧିରେ ସହାୟକ ହୋଇଥାଏ । ମଣିଷ ଆଦ୍ୟ ଜୀବନରେ ଯେଉଁ ଅଭିଜ୍ଞତା ଅର୍ଜନ କରେ, ପରବର୍ତ୍ତୀ କାଳରେ ତାହାହିଁ ତାକୁ ଜୀବନ କ୍ଷେତ୍ରରେ ପ୍ରତିଷ୍ଠିତ କରିଦିଏ । ପରନିର୍ଭରଶୀଳତା ମଣିଷକୁ ବ୍ୟକ୍ତିତ୍ୱହୀନ, ଦୁର୍ବଳ ଏକ ମଣିଷରେ ପରିଣତ କରିଦିଏ । ତା'ର ସ୍ୱାଧୀନ ଚିନ୍ତା କରିବାର ଶକ୍ତି ଲୋପପାଇଯାଏ । ସ୍ୱତନ୍ତ୍ର ଭାବରେ ବୁଦ୍ଧିର ପ୍ରୟୋଗ କରିବାକୁ ମଧ୍ୟ ସେ ଭୁଲିଯାଏ । ସବୁବେଳେ ସେ ଅନ୍ୟକୁ ଅପେକ୍ଷାକରେ । ଏଭଳି ତା'ର ଜୀବନ ମଧ୍ୟ ବ୍ୟର୍ଥ ହୋଇଯାଏ ।

ସ୍ୱାବଲମ୍ବୀ ମଣିଷ ଅକୁତୋଭୟ ଏବଂ ସ୍ୱଚ୍ଛନ୍ଦ ଜୀବନ ଯାପନ କରେ । କାହାରିଠାରୁ ତା'ର ପ୍ରତ୍ୟାଶା କିଛି ନଥାଏ, ତେଣୁ ଦୁଶ୍ଚିନ୍ତା ମଧ୍ୟ ନଥାଏ । ତେବେ ବିଂଶଶତାବ୍ଦୀର ଶେଷପାଦରେ ଆଜି ଆଉ ପୂର୍ଣ୍ଣ ସ୍ୱାବଲମ୍ବନଶୀଳ ଜୀବନ ସମ୍ଭବପର ନୁହେଁ । ଅନ୍ନ ଆଉ ବସ୍ତ୍ରର ପ୍ରୟୋଜନରେ ଜୀବନର ଯେଉଁ ଦୃଷ୍ଟିଭୂତ, ତାକୁ ଆମେ ବହୁ ପଛରେ ଛାଡ଼ିଯାଇଛେ । ତଥାପି ଦୈନନ୍ଦିନ ଜୀବନରେ ଆଜି ମଧ୍ୟ ଏଭଳି କର୍ମର ଅଭାବ ନାହିଁ, ଯାହା ମଣିଷକୁ ସ୍ୱାବଲମ୍ବନଶୀଳ ହେବା ନିମନ୍ତେ ସୁଯୋଗ ଦେବ । କ୍ଷୁଦ୍ରଠବଡ଼ ନାନା ଧରଣର ସେଇ ସବୁ କାମ ଆପେ ଆପେ କରିପାରିଲେ ମଣିଷ ପୂରାପୂରି ପରନିର୍ଭରଶୀଳ ହୋଇପଡ଼ିବ ନାହିଁ । ମନେରଖିବାକୁ ପଡ଼ିବ, ବୁଦ୍ଧି ଏବଂ ବ୍ୟକ୍ତିତ୍ୱ—ଏ ଦୁଇଟି ପ୍ରୟୋଜନୀୟ ବସ୍ତୁର ବିକାଶ ନିମନ୍ତେ ଆମକୁ ପରନିର୍ଭରଶୀଳତାକୁ ଭୁଲିଯିବାକୁ ପଡ଼ିବ । ଏ ଦୁଇ ଶକ୍ତିର ଯଥାର୍ଥ ବିକାଶ ବିନା ଜୀବନ ଜୀବନ ପଦବାଚ୍ୟ ନୁହେଁ । ତେଣୁ ଆତ୍ମନିର୍ଭରଶୀଳତା ମନ୍ତ୍ରକୁ ସର୍ବଦା ସ୍ମରଣ ରଖି, ଜୀବନ ପଥରେ ଆଗେଇ ଯିବାକୁ ପଡ଼ିବ ଏବଂ ମନେରଖିବାକୁ ପଡ଼ିବ ଯେ, ଆତ୍ମନିର୍ଭରଶୀଳକୁ ଭଗବାନ ସହାୟ ହୁଅନ୍ତି ।

## ଭାରତର କୃଷକ

"ହେ ପଲ୍ଲୀ କୃଷକ ସରଳ ସୁନ୍ଦର
ତୋତେ ଦେଖି ପୂରିଯାଏ ମୋ ଅନ୍ତର ।"

ଭାରତ ଏକ କୃଷିପ୍ରଧାନ ଦେଶ । ଗ୍ରାମ-ଭାରତରେ ଶତକଡ଼ା ନବେଭାଗ ଜନତା ଏବେ ମଧ୍ୟ କୃଷିକର୍ମକୁ ହିଁ ଜୀବନ ଧାରଣର ମାଧ୍ୟମ ରୂପେ ଗ୍ରହଣ କରିନେଇଛନ୍ତି । ଭାରତୀୟ ଆର୍ଯ୍ୟମାନେ ଯେତେବେଳେ ଯାଯାବର ବୃତ୍ତି ତ୍ୟାଗକରି ସ୍ଥାୟୀ ବସତି ସ୍ଥାପନ କରିବାକୁ ଆରମ୍ଭକଲେ, ସେତେବେଳେ ସୁଦ୍ଧା କୃଷିକର୍ମ ଏବଂ ଗୋଧନ ବୃଦ୍ଧି ମଧ୍ୟରେ ସେମାନଙ୍କର

କର୍ମ ଜୀବନ ସୀମାବଦ୍ଧ ଥିଲା । ଇତିହାସର ସେହି ଆରମ୍ଭ କାଳରୁ ଆଜି ପର୍ଯ୍ୟନ୍ତ ଭାରତୀୟ କୃଷକ କେତେ ରୂପରେ, କେତେ ଭାବରେ ଯେ କବି ଲେଖକ ଚିନ୍ତକମାନଙ୍କଦ୍ୱାରା ପ୍ରଶଂସିତ ହୋଇଆସିଛି, ତାହାର ଇୟତ୍ତା ନାହିଁ ।

ଭାରତୀୟ କୃଷକର ଜୀବନ ଥିଲା ଅତ୍ୟନ୍ତ ସରଳ । ଜମିଗୁଡ଼ିକ ଅତ୍ୟନ୍ତ ଉର୍ବର ହୋଇ-ଥିବାରୁ ସହଜରେ ସେ କୃଷିକର୍ମ ତୁଲାଇନେଇପାରୁଥିଲା । ତା'ର ପ୍ରୟୋଜନ ଥିଲା ଅତ୍ୟନ୍ତ ସାମାନ୍ୟ । କ୍ଷେତରୁ ଶସ୍ୟ ଏବଂ ବାଡ଼ିରୁ କପା ସଂଗ୍ରହ କରି ସେ ଏକାବେଳକେ ଅନ୍ନ ଓ ବସ୍ତ୍ର ସମସ୍ୟାର ସମାଧାନ କରିପାରୁଥିଲା । ଲୋକସଂଖ୍ୟା ସେତେବେଳେ ଏତେ ବେଶି ହୋଇନଥିବାରୁ ଯେତିକି ଖାଦ୍ୟଶସ୍ୟ ଉତ୍ପନ୍ନ ହେଉଥିଲା, ସେଥିରେ କୃଷକ ନିଜେ ଚଳି ଅପର ନିମନ୍ତେ ମଧ୍ୟ କିଛି ଦେଇପାରୁଥିଲା । ଅବଶ୍ୟ ପ୍ରାକୃତିକ ବିପର୍ଯ୍ୟୟ ଘଟିଗଲେ ପରିସ୍ଥିତି ସମ୍ପୂର୍ଣ୍ଣ ବଦଳିଯାଉଥିଲା । ବନ୍ୟା, ମରୁଡ଼ି, ବାତ୍ୟା—ଏ ତିନୋଟି ସାଙ୍ଗକୁ କୀଟ ପତଙ୍ଗ ଏବଂ ବନ୍ୟଜନ୍ତୁ ଇତ୍ୟାଦିଦ୍ୱାରା ଫସଲ ଉଜୁଡ଼ି ଯାଉଥିଲା । ସେତେବେଳେ କୃଷକକୁ ଅନେକ ଦୁର୍ବିପାକ ମଧ୍ୟ ଦେଇ ଗତିକରିବାକୁ ପଡ଼ୁଥିଲା । ସାହାଯ୍ୟ ତ ପ୍ରାପ୍ୟ ନଥିଲା, ତେଣୁ ସ୍ଥାବର ଅସ୍ଥାବର ସମସ୍ତ ସମ୍ପତ୍ତି ବନ୍ଧକରେ ସେ କୌଣସିମତେ ଜୀବନ ଧାରଣ କରିବାକୁ ଚେଷ୍ଟା କରୁଥିଲା । ଅଧିକାଂଶ କ୍ଷେତ୍ରରେ କୃଷକ ପରିବାର ସହିତ ସେ ଉଚ୍ଛନ୍ନ ହୋଇଯାଉଥିଲା । କାଳର ଭୟଙ୍କର ଗ୍ରାସରେ କେତେ ଯେ କୃଷକ ପରିବାର ନିଶ୍ଚିହ୍ନ ହୋଇଯାଇଛି ତାହାର କଳନା ନାହିଁ ।

ବନ୍ୟା କବଳରୁ ଫସଲ ରକ୍ଷା କରିବା କିମ୍ବା ବନ୍ୟା ପରେ ସାହାଯ୍ୟ ସହାନୁଭୂତିଦ୍ୱାରା କୃଷକକୁ ପୁନର୍ବାର କୃଷିକର୍ମରେ ବ୍ରତୀ କରାଇବା ନିମନ୍ତେ କୌଣସି ଉଦ୍ୟମ ପୂର୍ବେ ପ୍ରାୟ କରାଯାଉନଥିଲା । ଜଳସେଚନର କୌଣସି ବ୍ୟବସ୍ଥା ନଥିବାରୁ କେବଳ ପ୍ରକୃତିର ଦୟା ଉପରେ ନିର୍ଭର କରି କୃଷିକର୍ମ ଚାଲୁଥିଲା । ପାଣିର ଅଭାବ ହେଲେ ଫସଲ ନଷ୍ଟ ହୋଇ ଯାଉଥିଲା । ପରିଣାମରେ ଦେଶରେ ଦୁର୍ଭିକ୍ଷ ଦେଖାଯାଉଥିଲା । ଲକ୍ଷ ଲକ୍ଷ ନରନାରୀ ଅକାଳରେ ମୃତ୍ୟୁ ବରଣ କରୁଥିଲେ । ଖାଦ୍ୟ ସହିତ ଦେହର ସମ୍ପର୍କ ରହିଛି । ବଞ୍ଚିବା ପାଇଁ ଲୋଡ଼ା ଆହାର । ତାହାରି ପାଇଁ ପୁଣି ମଣିଷ କର୍ମ କରେ । ପେଟକୁ ନ ମିଳିଲେ ମଣିଷକୁ ଚତୁର୍ଦ୍ଦିଗ ଶୂନ୍ୟ ଦେଖାଯାଏ ! ତେଣୁ 'ଭାଗବତ'ରେ କୁହାଯାଇଛି—

"ଅନ୍ନ ବିହୁନେ ହଂସ ହାନି,
ଯୋଗ ସାଧିବ କାହା ଘେନି ।"

କୃଷକ ହାତରେ ରହିଛି ଖାଦ୍ୟ ସମସ୍ୟା ସମାଧାନର ଉପାୟ । ତେଣୁ ସାମାଜିକ ଜୀବନରେ ତାହାର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଅସ୍ୱୀକାର କରିହେବ ନାହିଁ ।

ଦୁଃଖର କଥା; ସକାଳୁ ସଞ୍ଜଯାଏ, ମାଟି କାଦୁଅରେ ଅଣ୍ଟୁ ପକେଇ, ଝଡ଼, ବର୍ଷା, ଶୀତ, କାକର ଗଣନା ନକରି, ସିଏ ଆମ ପାଇଁ ବଞ୍ଚିବାର ସାଧନ ଯୋଗାଡ଼ କରି ଚାଲେ,

ଆମେ ତାକୁ ଘୃଣା କରୁ । ମଳମୁଣ୍ଡିଆ ଚଷା ବୋଲି କହି ନାସିକା କୁଞ୍ଚନ କରୁ । ଖାମ୍ଭ ସରଳ ଭାବରେ ବଞ୍ଚି, ସମଗ୍ର ମାନବଜାତିର ଚଲ୍ରା ଯାହାର ଧ୍ୟେୟ, ସେ ଯେ କେତେ ମହତ୍ ତାହା ଭାଷାରେ ପ୍ରକାଶ କରିହେବନାହିଁ ।

ସମ୍ପ୍ରତି କୃଷକର ଜୀବନ ସଂଘର୍ଷମୟ ହୋଇପଡୁଛି । ଜନସଂଖ୍ୟାର ଦ୍ରୁତ ବୃଦ୍ଧି, ଖାଦ୍ୟ-ଶସ୍ୟ କ୍ଷେତ୍ରରେ ଏକ ବିରାଟ ଅଭାବ ସୃଷ୍ଟି କରୁଥିବାରୁ, ତାହାକୁ ପୂରଣ କରିବା ନିମନ୍ତେ ଗୋଟିଏ ଜମିରୁ ଏକାଧିକ ଫସଲ ଉତ୍ପାଦନ କରିବା ଜରୁରୀ ହୋଇପଡୁଛି । ବାରମ୍ବାର କର୍ଷିତ ହେବା ଫଳରେ ଜମିର ଉର୍ବରତା ଦ୍ରୁତଗତିରେ ହ୍ରାସ ପାଉଛି । ତାହାଦ୍ୱାରା ଉତ୍ପାଦନ କମିଯାଉଛି । ତେଣୁ ଯେତେ ପରିଶ୍ରମ କଲେ ମଧ୍ୟ କୃଷକର ଅବସ୍ଥା ଉନ୍ନତ ହେଉନାହିଁ ।

ଭାରତବର୍ଷରେ କୃଷିକର୍ମ ଏକ ଅତ୍ୟନ୍ତ ଗୌଣ କର୍ମ ରୂପରେ ପରିଗଣିତ ହୁଏ । କୃଷକର କୌଣସି ସାମାଜିକ ମର୍ଯ୍ୟାଦା ନଥାଏ । ତେଣୁ ସାମାନ୍ୟ ସୁଯୋଗ ପାଇବା ମାତ୍ରେ କୃଷକ ତାହାର ପାରମ୍ପରିକ କାର୍ଯ୍ୟ ଛାଡ଼ି ସହରରେ ଗୃହକର୍ମ କରିବାକୁ ଧାଏଁ । ହାଡ଼ଭଙ୍ଗା ଖଟଣିରେ ଲିପ୍ତ, ମୁଣ୍ଡ, ଝାଳ ତୁଣ୍ଡରେ ମାରି ତାକୁ ପ୍ରାୟ ସାରା ଜୀବନଧରି ଅଭାବ ଦୈନ୍ୟ ଏବଂ ଅନ୍ୟର ଅନୁକମ୍ପା ଉପରେ ନିର୍ଭର କରି ଚଳିବାକୁ ପଡୁଥିବାରୁ ନିଜର କର୍ମସମ୍ପର୍କରେ ତାହାର କୌଣସି ଗୌରବବୋଧ ମଧ୍ୟ ନଥାଏ ।

ଭାରତୀୟ କୃଷକର ଅନେକ ପ୍ରତିବନ୍ଧକ । ପ୍ରଥମ କଥା ହେଉଛି, ଏଠାରେ ଜମିଗୁଡ଼ିକ ସ୍ୱତନ୍ତ୍ରସ୍ୱତନ୍ତ୍ର ଧରି ବଣ୍ଟାକୁଣ୍ଟା ହୋଇ ଆକାରରେ ଅତ୍ୟନ୍ତ କ୍ଷୁଦ୍ର ହୋଇପଡ଼ିଛି । ସେଇ ସନାତନ ହଳ ଲଙ୍ଗଳ ବ୍ୟତୀତ ଅନ୍ୟ କୌଣସି ଯନ୍ତ୍ର ବ୍ୟବହାର କରି କୃଷି-ବ୍ୟବସ୍ଥାର ଉନ୍ନତି ଘଟାଇବା ଆଦୌ ସମ୍ଭବପର ହୋଇପାରୁନାହିଁ । ବିଦେଶରେ ଜଣେ ଜଣେ କୃଷକ ଗୋଟିଏ ସ୍ଥାନରେ ନିଜର ସମସ୍ତ ଜମି ରଖି ଟ୍ରାକ୍ଟର ପ୍ରଭୃତି ଯାନ୍ତ୍ରିକ ବ୍ୟବସ୍ଥା ସାହାଯ୍ୟରେ ଏକର ପ୍ରତି ଯେଉଁ ପରିମାଣରେ ଶସ୍ୟ ଉତ୍ପାଦନ କରିପାରୁଛନ୍ତି, ତାହା ଆମର ଏଠାରେ ସ୍ୱପ୍ନ କହିଲେ ଚଳେ । ଏବେ ଅବଶ୍ୟ ଏଠାରେ ଚକବନ୍ଦୀ ବ୍ୟବସ୍ଥା ଆରମ୍ଭ ହୋଇଛି । ଗୋଟିଏ ଚକରେ ଜଣଜଣଙ୍କର ସମସ୍ତ ଜମି ଚାଲିଆସିବା ଫଳରେ ଜମିଖଣ୍ଡଗୁଡ଼ିକର ଆକାର ବୃଦ୍ଧିପାଇଛି ଏବଂ ସେଥିରେ ଟ୍ରାକ୍ଟର ଇତ୍ୟାଦି ଚଳାଇବା ମଧ୍ୟ ସମ୍ଭବ ହୋଇପାରୁଛି— ଗ୍ରାମ୍ୟ ମହାଜନ ଏକଦା କୃଷକ ସମ୍ପ୍ରଦାୟର ପ୍ରଧାନ ଶତ୍ରୁ ଥିଲେ । ପ୍ରୟୋଜନ ସମୟରେ ସାମାନ୍ୟ କିଛି ଋଣ ଦେଇ, ସେମାନେ ନାମମାତ୍ର ମୂଲ୍ୟରେ ପ୍ରଥମେ ଉତ୍ପାଦିତ ଶସ୍ୟ ଏବଂ ପରେ ସମଗ୍ର ଜମିକୁ ଗ୍ରାସକରୁଥିଲେ । ସରକାର ତଗାଭୀ ଋଣ ଇତ୍ୟାଦିର ବ୍ୟବସ୍ଥା କରିବା ଦ୍ୱାରା ଏହି ଅବସ୍ଥାର ସାମାନ୍ୟ ଉନ୍ନତି ଅବଶ୍ୟ ହୋଇଛି । ଦ୍ୱିତୀୟ କଥା ହେଉଛି ଯେ, ଏବେ ମଧ୍ୟ କୃଷକ ତା'ର ଶ୍ରମର ନ୍ୟାଯ୍ୟ ମୂଲ୍ୟ ପାଉନାହିଁ । ଅଳ୍ପମୂଲ୍ୟରେ ମୁଷ୍ଟିମେୟ ଧନୀ-ବ୍ୟକ୍ତି ତାହାର ସମସ୍ତ ଖାଦ୍ୟଶସ୍ୟ ଅମଳ ବେଳେ କିଣି ନେଇ ଠୁଳକରି ରଖି ଦେଶରେ

କୃତ୍ରିମ ଅଭାବ ସୃଷ୍ଟି କରୁଛନ୍ତି ଏବଂ ପରେ ଚଢ଼ାଦରରେ ସେ ସମସ୍ତ ବିକ୍ରି କରି ପ୍ରଚୁର ଲାଭ କରୁଛନ୍ତି । ଏହି ଅବସ୍ଥା ଦୂର କରିବାକୁ ହେଲେ, ଶସ୍ୟର ସର୍ବନିମ୍ନ କ୍ରୟମୂଲ୍ୟ ସରକାରୀ ସ୍ତରରେ ସ୍ଥିର ହେବା ଆବଶ୍ୟକ ଏବଂ ସମବାୟ ସମିତି କିମ୍ବା ସରକାର ଯଦି ସମସ୍ତ ଉତ୍ପାଦିତ ଦ୍ରବ୍ୟକୁ କିଣିନେଇପାରନ୍ତେ, ତେବେ କୃଷକମାନେ ତ ଉପକୃତ ହୁଅନ୍ତେ, ବ୍ୟକ୍ତିବିଶେଷ ହାତରେ ସମସ୍ତ ଶସ୍ୟ ଠୁଳ ହୋଇ ରହିଯିବା ଫଳରେ ଯେଉଁ କୃତ୍ରିମ ଅଭାବ ସୃଷ୍ଟି ହେଉଛି ତାହା ମଧ୍ୟ ହୁଅନ୍ତା ନାହିଁ । ପ୍ରାକୃତିକ ବିପର୍ଯ୍ୟୟ ବିରୁଦ୍ଧରେ 'ଫସଲବୀମା' ବ୍ୟବସ୍ଥା ପ୍ରଚଳନ କରାଗଲେ କୃଷକ ଲାଭବାନ୍ ହୁଅନ୍ତା । ଉନ୍ନତ କିସମର ବିହନ, ସାର ଏବଂ କୀଟନାଶକ ଔଷଧପତ୍ର ଶସ୍ତା ମୂଲ୍ୟରେ କୃଷକ ନିକଟରେ ପହଞ୍ଚାଇ ଦିଆଗଲେ ଉତ୍ପାଦନ ବୃଦ୍ଧି ପାଇବ ।

ବିଦେଶରେ କୃଷକ ସମ୍ପ୍ରଦାୟର ଜୀବନଧାରଣର ମାନ ଅତ୍ୟନ୍ତ ଉନ୍ନତ । ଗ୍ରାମାଞ୍ଚଳରେ ରହି ମଧ୍ୟ ସେମାନେ ନଗର-ଜୀବନର ସମସ୍ତ ସୁବିଧା ସୁଯୋଗ ଭୋଗକରନ୍ତି । ଭାରତବର୍ଷରେ ମଧ୍ୟ ପଞ୍ଜାବ, ହରିଆନା, ଉତ୍ତରପ୍ରଦେଶ ପ୍ରଭୃତି ଅଞ୍ଚଳରେ ଆଧୁନିକ ବ୍ୟବସ୍ଥାର ପ୍ରୟୋଗ ଫଳରେ କୃଷକମାନଙ୍କର ଆର୍ଥିକ ଅବସ୍ଥା ବେଶ୍ ଉନ୍ନତ ହୋଇପାରିଛି । ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ମଧ୍ୟ ସେହି ବ୍ୟବସ୍ଥାର ପ୍ରଚଳନ କରାଗଲେ, କୃଷକମାନଙ୍କର ଅବସ୍ଥା ବଦଳିଯିବ ।

କୃଷିପାଇଁ ଆବଶ୍ୟକ ପ୍ରୟୋଜନାନୁସାରୀ ଜଳ । କେନାଲ ସାହାଯ୍ୟରେ ଦୂରବର୍ତ୍ତୀ ସ୍ଥାନମାନଙ୍କରେ ଜଳ ପହଞ୍ଚାଇ ଦିଆଯାଇପାରେ କିମ୍ବା ଯେଉଁଠି ତାହା ହୋଇ ନପାରିବ, ସେଠାରେ ଗଭୀର ନଳକୂପର ବ୍ୟବସ୍ଥା କରାଯାଇ ବିଦ୍ୟୁତ୍‌ଶକ୍ତି ସାହାଯ୍ୟରେ ଜଳ ଉତ୍ତୋଳନ କରାଯାଇ ପାରିବ । ମୋଟାମୋଟି ଭାବରେ ତେଣୁ ଉନ୍ନତ ଯାନ୍ତ୍ରିକ ବ୍ୟବସ୍ଥାର ପ୍ରୟୋଗ ଫଳରେ ହିଁ ଭାରତୀୟ କୃଷି-ବ୍ୟବସ୍ଥାର ମାନ ବୃଦ୍ଧି ପାଇବ ବୋଲି କୁହାଯାଇପାରେ ।

ଭାରତୀୟ କୃଷକମାନେ ପ୍ରାୟ ଶିକ୍ଷା ପ୍ରତି ନିସ୍ପୃହ । ମାତ୍ର ମନେରଖିବାକୁ ହେବ, ଯନ୍ତ୍ରପାତିର ବ୍ୟବହାର, ଔଷଧପତ୍ରର ପ୍ରୟୋଗ ପ୍ରଭୃତି ନିମନ୍ତେ ଶିକ୍ଷା ଅତ୍ୟନ୍ତ ଆବଶ୍ୟକ । ଶିକ୍ଷାହୀନ କୃଷକ ମାତ୍ରାଧିକ ଔଷଧାଦିର ବ୍ୟବହାରରେ ଯେଉଁ ବିଷାକ୍ତ ଖାଦ୍ୟଶସ୍ୟ ଉତ୍ପାଦନ କରିବ, ତାହାର ମୂଲ୍ୟ ସମଗ୍ର ଜାତିକୁ ଦେବାକୁ ପଡ଼ିପାରେ । ତା'ଛଡ଼ା ଶିକ୍ଷା ମନରେ ଆତ୍ମସମ୍ମାନବୋଧ ସୃଷ୍ଟି କରେ । ଶିକ୍ଷିତ ବ୍ୟକ୍ତିର ନିଜ କର୍ମ ସମ୍ପର୍କରେ ଯେଉଁ ଅଭିମାନ ଥାଏ, ଭାରତୀୟ କୃଷକ ମଧ୍ୟରେ ତାହା ସୃଷ୍ଟି କରିବାକୁ ପଡ଼ିବ । ଥରେ ସେତିକି ହୋଇପାରିଲେ, ସେ ଆଉ ଗ୍ରାମ ଛାଡ଼ି ସହରକୁ ଧାଇଁଯିବା ନିମନ୍ତେ ବ୍ୟାକୁଳ ହେବ ନାହିଁ । ତା'ଛଡ଼ା ସହର ଜୀବନର ସମସ୍ତ ପ୍ରକାର ସୁବିଧାସୁଯୋଗ ତା' ନିକଟରେ ପହଞ୍ଚାଇବାକୁ ପଡ଼ିବ । ଯେ ପର୍ଯ୍ୟନ୍ତ ଆମେ ଏତିକି କରିନପାରିଛୁ, ସେ

ପର୍ଯ୍ୟନ୍ତ କାବ୍ୟ-କବିତାରେ କୃଷକଙ୍କୁ ସ୍ୱଚ୍ଛ ପ୍ରିତ ପ୍ରଶଂସା କଲେ ସୁଦ୍ଧା ତା'ର ହୀନମନ୍ୟତା ଦୂରହେବ ନାହିଁ । ଯେ ଆମପାଇଁ ଆହାର ଯୋଗାଉଛି, ତା'ପାଇଁ ଏତିକ କରିବା ହେଉଛି ଆମର ନୈତିକ ଦାୟିତ୍ୱ ।

# ଧର୍ମନିରପେକ୍ଷତା

ଯାହା ସମାଜ-ସଂସ୍ଥାକୁ ଦୃଢ଼ଭାବରେ ଧାରଣ କରି ରଖେ, ତାହା ହିଁ 'ଧର୍ମ' । ବିଜ୍ଞାନର ସେବାରେ ଆତ୍ମ-ନିୟୋଗ କରିବା ହେଉଛି ବୈଜ୍ଞାନିକର ଧର୍ମ; ସେମିତି ବିଦ୍ୟାଧ୍ୟୟନକୁ ଛାତ୍ରମାନଙ୍କର ଧର୍ମ ବୋଲି କୁହାଯାଇପାରେ । ଧୂପ, ଦୀପ ନୈବେଦ୍ୟର ଉପଚାର, ଘଣ୍ଟ-ଘଣ୍ଟାବାଦନର ଆଡ଼ମ୍ବର ମଧ୍ୟରେ ପ୍ରକୃତ ଧର୍ମ ବିକଶିତ ହୁଏ ନାହିଁ; ବରଂ କର୍ମକୁ ହିଁ ଧର୍ମର ମର୍ଯ୍ୟାଦା ଦିଆଯାଇପାରେ । ଗୋଟିଏ ନିର୍ଦ୍ଦିଷ୍ଟ ପରମ୍ପରା ପ୍ରତି ମାନବର ଆସ୍ଥା ଏବଂ ବିଶ୍ୱାସ ଏହାରି ମଧ୍ୟଦେଇ ରୂପାୟିତ ହୋଇଥାଏ । ଫଳରେ ଯେଉଁମାନେ ହିନ୍ଦୁ ପରମ୍ପରାରେ ବିଶ୍ୱାସୀ ସେମାନେ ହିନ୍ଦୁ ବୋଲନ୍ତି ଏବଂ ଇସ୍‌ଲାମୀ-ନୀତିରେ ବିଶ୍ୱାସ ରଖିଥିବା ବ୍ୟକ୍ତିଙ୍କୁ ମୁସଲମାନ କୁହାଯାଇଥାଏ ।

ପୃଥିବୀ ଆଜି ବହୁ ଧର୍ମାବଲମ୍ବୀ-ଅଧ୍ୟୁଷିତ ହୋଇପଡ଼ିଛି । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍— ଏଇ ତିନୋଟି ମୁଖ୍ୟ ଧର୍ମକୁ ଛାଡ଼ିଦେଲେ ବୌଦ୍ଧ, ଜୈନ, ପାରସିକ ପ୍ରଭୃତି ବହୁ ଛୋଟ ବଡ଼ ଧର୍ମ ମଧ୍ୟ ଅଛି । ଅନେକ ସମୟରେ ଉଦାର ସହନଶୀଳତାର ଅଭାବରୁ ଧର୍ମ ନିମନ୍ତେ ପୃଥିବୀରେ ଅନେକ ବଡ଼ ବଡ଼ ସମସ୍ୟା ସୃଷ୍ଟି ହୋଇଥାଏ । ଧର୍ମ ନାମରେ ସମାଜ-ଜୀବନରେ ବିପ୍ଳବ ସୃଷ୍ଟି କରିଦିଆଯାଏ । ପରସ୍ପର ମଧ୍ୟରେ ବିଦ୍ୱେଷର ସ୍ଫୁଲିଙ୍ଗ ଭୟଙ୍କର ରୂପ ଧାରଣ କରି ଆତ୍ମପ୍ରକାଶ କରେ । ଲକ୍ଷ ଲକ୍ଷ ନିରୀହ ଲୋକ ଏହି ବିଦ୍ୱେଷର ବଳି ସ୍ୱରୂପ ଅର୍ପିତ ହୁଅନ୍ତି । ସେମାନଙ୍କର ରକ୍ତରେ ଇତିହାସର ପୃଷ୍ଠା କଳଙ୍କିତ ହୋଇଥାଏ । ଧର୍ମ ନାମରେ ଏ ଯେଉଁ ନାରକୀୟ ଅବସ୍ଥା ସୃଷ୍ଟି କରାଯାଏ, ପ୍ରକୃତ ଧର୍ମ ସହିତ ତାହାର ଯେ କୌଣସି ସମ୍ପର୍କ ନଥାଏ, ଏ କଥା କେହି ବୁଝନ୍ତି ନାହିଁ ।

ମଣିଷଜାତିକୁ ଧ୍ୱଂସମୁଖରୁ ରକ୍ଷା କରିବାକୁ ହେଲେ, ଧର୍ମକ୍ଷେତ୍ରରେ ଏକ ଉଦାର ସହନଶୀଳ ନୀତି ଯେ ସର୍ବାଦୌ ଆବଶ୍ୟକ, ଏକଥା ନ କହିଲେ ମଧ୍ୟ ଚଳିବ । ଧର୍ମାନ୍ଧତା ସାମ୍ପ୍ରଦାୟିକ ମନୋଭାବର ସ୍ରଷ୍ଟା । କେତେକ ସ୍ୱାର୍ଥାନ୍ୱେଷୀ ଧର୍ମଦ୍ରୋହୀ ଭଣ୍ଡ ଧର୍ମ ନାମରେ ସମ୍ପ୍ରଦାୟ-ସମ୍ପ୍ରଦାୟ ମଧ୍ୟରେ ବିଦ୍ୱେଷର ବୀଜ ବୁଣିଦିଅନ୍ତି । ଅତଏବ ଏହା ପଚ-ପୁଷ୍ଟ-ସମନ୍ୱିତ ହୋଇ ବିଷାକ୍ତ ବାତାବରଣ ସୃଷ୍ଟିକରେ । ଅନ୍ଧ ପତଙ୍ଗ ଭଳି ଅସଂଖ୍ୟ

ଜନତା ଧର୍ମନାମରେ ହତ୍ୟା, ଲୁଣ୍ଠନ, ଗୃହଦାହ, ଧର୍ଷଣ, ପୀଡ଼ନ ଇତ୍ୟାଦିରେ ମାତିଉଠନ୍ତି । ମଣିଷ ମଧ୍ୟରେ ଅସୁରଶକ୍ତି ମୁଣ୍ଡଟେକିଉଠେ । ନଗର, ଜନପଦ ଛାରଖାର ହୋଇଯାଏ । ତଥାପି ମଣିଷର ଚେତା ଆସେନାହିଁ ।

ସାମ୍ପ୍ରଦାୟିକ ବିଦ୍ୱେଷ ମାନବ-ସଭ୍ୟତା ପକ୍ଷରେ କିଭଳି କ୍ଷତିକାରକ, ତାହାର ପ୍ରମାଣ ହେଉଛି ଭାରତବର୍ଷ । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ କେବଳ ମାତ୍ର ଧର୍ମ ନାମରେ ଅଖଣ୍ଡ ଭାରତକୁ ଖଣ୍ଡିତ କରିଦିଆଗଲା । ଅଯୁତ ଜନତାର ରକ୍ତର ମୂଲ୍ୟରେ ଯେଉଁ ସ୍ୱାଧୀନତା କ୍ରୀତ ହୋଇଥିଲା, ତାହାର ପ୍ରକୃତ ରୋମାଞ୍ଚ ଆମେ ଅନୁଭବ କରିବାକୁ ସାମାନ୍ୟ ସୁଯୋଗ ମଧ୍ୟ ପାଇଲୁନାହିଁ । ସ୍ୱାଧୀନତା ପରେ ସୁଦ୍ଧା କେବଳ ଏହିଥିପାଇଁ ଆମକୁ ଯେଉଁ ମୂଲ୍ୟ ଦେବାକୁ ପଡ଼ୁଛି, କିମ୍ବା ଏବେ ମଧ୍ୟ ଦିଆଯାଉଛି, ସେ ବିଷୟ ସମସ୍ତେ ଜାଣନ୍ତି । ମନେରଖିବାକୁ ହେବ ଯେ, କୌଣସି ଧର୍ମ କେବେ ହିଂସାକୁ ପ୍ରଶ୍ରୟ ଦିଏନାହିଁ । ଇସ୍‌ଲାମ୍ ଧର୍ମରେ ସୁଦ୍ଧା ଅହିଂସାର ଜୟଗାନ କରାଯାଉଛି । ତେଣୁ ଧର୍ମ ନାମରେ ବିଭିନ୍ନ ସ୍ଥାନରେ ଯେଉଁସବୁ ଧ୍ୱଂସାତ୍ମକ କାର୍ଯ୍ୟ କରାଯାଇଥାଏ, ସେସବୁ କେବଳ କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଙ୍କର କାରସାଦି ବ୍ୟତୀତ ଅନ୍ୟ କିଛି ନୁହେଁ ।

ଆଜି ସମଗ୍ର ବିଶ୍ୱରେ ଧର୍ମନାମରେ କେତେ ଯେ ଭଣ୍ଡାମି ଚାଲିଛି, ତାହା ବର୍ଣ୍ଣନା କରିବାକୁ ଲଜ୍ଜାବୋଧହୁଏ । ଇରାନ୍ ଆଉ ଇରାକ୍ ମଧ୍ୟରେ ଦୀର୍ଘକାଳଧରି ଯେଉଁ ରକ୍ତକ୍ଷୟକାରୀ ସଂଗ୍ରାମ ଚାଲିଛି, ସେଥିରେ ମଧ୍ୟ ଧର୍ମର ଧ୍ୱଜ ବୋଲିଦିଆଯାଉଛି । କେବେ ମଣିଷର ସଦ୍‌ବୁଦ୍ଧି ହେବ, ଅନ୍ୟ ମତକୁ ଉଦାରଭାବରେ ଗ୍ରହଣ କରିବାର ସହନଶୀଳତା ତା'ର ଆସିବ, ଏହା କେବଳ ଈଶ୍ୱର ହିଁ କହିପାରିବେ ।

ଧର୍ମ ମଣିଷକୁ ଧୈର୍ଯ୍ୟ ଓ ସହନଶୀଳତାର ଉଦାର ମନ୍ତ୍ରରେ ଅଭିମନ୍ତ୍ରିତ କରେ; ଅନ୍ୟ ମତକୁ ସମ୍ମାନଦେବା ନିମନ୍ତେ ଶିକ୍ଷାଦିଏ । ମୈତ୍ରୀମୟ ଏକ ସୁନ୍ଦର ସମାଜ ଗଠନର ପ୍ରେରଣା ଯୋଗାଏ । ପାରସ୍ପରିକ ସ୍ନେହ, ସୌଭ୍ରାତୃତ୍ୱ, ସଂପ୍ରୀତି ଇତ୍ୟାଦି ହେଉଛି ଧର୍ମର ଅମୃତମୟ ଦାନ । ଏଭଳି କ୍ଷେତ୍ରରେ ଧର୍ମନାମରେ ମଣିଷ ଯେଉଁ ହିଂସାକାଣ୍ଡରେ ମାତିଉଠେ ତାକୁ ଭଣ୍ଡାମି ବ୍ୟତୀତ ଅନ୍ୟ କ'ଣ କୁହାଯାଇପାରିବ ? ଗୋଟିଏ କଥା ସବୁବେଳେ ମନେ-ରଖିବାକୁ ପଡ଼ିବ—ମାନବ ଶରୀର କ୍ଷିତି, ଅପ୍, ତେଜ, ମରୁତ୍ ଏବଂ ବ୍ୟୋମ ପ୍ରଭୃତି ପଞ୍ଚଭୂତରେ ଗଢ଼ାହେଲେ ହେଁ, ଭାରତୀୟ ପରମ୍ପରାରେ ସେହି ଅନିତ୍ୟ ଶରୀର ମଧ୍ୟରେ ଈଶ୍ୱରଙ୍କର ଚିରନ୍ତନର ବିକାଶ ଘଟିଥାଏ । ଭଗବଦ୍‌ଗୀତା କହେ, "ଈଶ୍ୱର ସର୍ବଭୂତାନାଂ ହୃଦ୍ଦେଶେ ତିଷ୍ଠତି ଅର୍ଜୁନ ।"—ଭାଗବତ ମଧ୍ୟ "ସକଳ ଘଟେ ନାରାୟଣ" ବୋଲି କହି ପୂର୍ବୋକ୍ତ ମତକୁ ସମର୍ଥନ କରନ୍ତି । ଆତ୍ମା ମଧ୍ୟରେ ପରମାତ୍ମାଙ୍କର ଅଧିଷ୍ଠାନ ଯୁଗେ ଯୁଗେ ଭାରତୀୟ ସାଧକମାନଙ୍କର ସମର୍ଥନ ଲାଭକରିଆସିଛି । ଏଭଳି କ୍ଷେତ୍ରରେ 'ମଣିଷର ସେବା ହିଁ ଈଶ୍ୱରଙ୍କର ସେବା' ବୋଲି ଯାହା କୁହାଯାଉଛି, ତାହା ଅକ୍ଷରେ ଅକ୍ଷରେ ସତ୍ୟ । ହିଂସା, ଦ୍ୱେଷ, ପରଶ୍ରୀକାତରତା, ଈର୍ଷା, ଅସୂୟା—ଏସବୁ ମଣିଷକୁ ନରକପଥରେ ପରିଚାଳିତ

କରେ । ଜାତି, ସମ୍ପ୍ରଦାୟ, ଗୋଷ୍ଠୀ ଏସବୁ ତ ଏକାନ୍ତ ଭାବରେ ମଣିଷ ସୃଷ୍ଟି । ଜନ୍ମସୂତ୍ରରେ ପ୍ରତ୍ୟେକ ମଣିଷ ସମାନ । ଜଣେ ବର୍ଣ୍ଣଶ୍ରେଷ୍ଠ ହିନ୍ଦୁର ଶରୀରରେ ଯେଉଁ ରକ୍ତ ପ୍ରବାହିତ, ଜଣେ ତଥାକଥିତ ଅସ୍ପୃଶ୍ୟ ବ୍ୟକ୍ତିର ଶରୀର ମଧ୍ୟ ସେଇ ରକ୍ତପୁଷ୍ଟ । ଏସବୁ ସ୍ୱୀକାର କରିଗଲେ, ଉଚ୍ଚନୀଚର ଯେଉଁ ଭେଦଭାବ ମଣିଷକୁ ମଣିଷଠାରୁ ପୃଥକ୍ କରି ରଖିଛି, ତାହା ଲୋପପାଇବ । ସମଗ୍ର ବିଶ୍ୱ ହେବ ମଣିଷ ପାଇଁ ଗୋଟିଏ ପରିବାର ଭଳି । ସଙ୍କୀର୍ଣ୍ଣତାର ବହୁ ଊର୍ଦ୍ଧ୍ୱକୁ ଉଠି ମଣିଷ ମଣିଷକୁ ପ୍ରେମର ନିବିଡ଼ ବନ୍ଧନରେ ବାନ୍ଧିବାକୁ ଚେଷ୍ଟା କରିବ । ମନେରଖିବାକୁ ହେବ ଯେ, ଧର୍ମର ପୋତ ସଂସାର-ସମୁଦ୍ରକୁ ପାରିହେବା ନିମନ୍ତେ ହିଁ ସୃଷ୍ଟିହୋଇଛି । ଜାତି, ଧର୍ମ, ବର୍ଣ୍ଣ ଏ ସମସ୍ତ ଏକାନ୍ତଭାବରେ ମଣିଷ ସୃଷ୍ଟି । ମଣିଷ ଜାତି ଏବଂ ବର୍ଣ୍ଣର ମୋହର ମାରି ଜନ୍ମଗ୍ରହଣ କରିନଥାଏ । ମଣିଷ ହିଁ 'ଗୁଣ' ଆଉ 'କର୍ମ' ଭିତ୍ତିରେ ଜାତିବିଭାଗ କରିଥାଏ । ସଂସାରରେ ତେଣୁ ସଫଳଭାବରେ ବଞ୍ଚିବାକୁ ହେଲେ, ଅନ୍ୟ ମତକୁ ସମ୍ମାନଦେଇ, ଅନ୍ୟ ଧର୍ମ ପ୍ରତି ସହନଶୀଳତା ପ୍ରକାଶକରି ସମଗ୍ର ବିଶ୍ୱକୁ ଆତ୍ମୀୟତାର ବନ୍ଧନରେ ବାନ୍ଧିବାକୁ ହେବ । ଧର୍ମକ୍ଷେତ୍ରରେ ଏହି ଉଦାର ମତର ପ୍ରଚାର ହେଉଛି ଭାରତର ସମ୍ପୂର୍ଣ୍ଣ ନିଜସ୍ୱ ଦୃଷ୍ଟିକୋଣ ।

ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ର । ହିନ୍ଦୁ, ବୌଦ୍ଧ, ଶିଖ, ଜୈନ, ପାରସିକ, ମୁସଲମାନ, ଖ୍ରୀଷ୍ଟାନ୍ ପ୍ରଭୃତି ବହୁ ଧର୍ମ ଦୀର୍ଘକାଳଧରି ଭାରତବର୍ଷରେ ଏକତ୍ର ରହିଆସିଛନ୍ତି; ପରସ୍ପରକୁ ସମ୍ଭାବିତ କରିଆସିଛନ୍ତି । ଏମାନଙ୍କର ସାମୂହିକ ଉନ୍ନତିରେ ହିଁ ଭାରତର ଉନ୍ନତି । ଗୋଟିଏ ଡାଳରେ ବସିଥିବା ଭିନ୍ନଜାତିର ପକ୍ଷୀମାନଙ୍କଭଳି, ସମସ୍ତଙ୍କର ସ୍ୱାର୍ଥ ଗୋଟିଏ ସୂତ୍ରରେ ବନ୍ଧା ହୋଇଛି । ଭେଦଭାବକୁ ସମ୍ପୂର୍ଣ୍ଣ ଭାବରେ ଭୁଲି, ଅନ୍ୟର ଦୃଷ୍ଟିକୋଣ ପ୍ରତି ଉଦାର ମତପୋଷଣ କରିପାରିଲେ ହିଁ ଦେଶର ତଥା ଜାତିର ସାମୂହିକ ଉନ୍ନତି ହୋଇପାରିବ । ଅସହନଶୀଳତା କେବଳ ସେମାନଙ୍କୁ ଧ୍ୱଂସଆଡ଼କୁ ଠେଲିଦେବ । ଧାର୍ମିକ ଅସହିଷ୍ଣୁତା ଅତୀତରେ ଆମର ଯେତେ କ୍ଷତି କରିଛି, ଇତିହାସରୁ ସେତକ ଅନୁସନ୍ଧାନ କଲେ ମଣିଷ ଆଉ ଅନ୍ୟ ପ୍ରତି ଅସହିଷ୍ଣୁ ହେବନାହିଁ । ଧାର୍ମିକ ସହନଶୀଳତା ମାନବଜାତିର ଉନ୍ନତି-ନିମନ୍ତେ ଯେ ଏକାନ୍ତ ଅପରିହାର୍ଯ୍ୟ, ତାହା ସେ ଭଲଭାବରେ ବୁଝିପାରିବ ।

## ଆଜିର ଶିକ୍ଷାସମସ୍ୟା

ଶିକ୍ଷା ମଣିଷକୁ ମାର୍ଜିତ କରେ, ତାହାର ବୁଦ୍ଧି ଏବଂ ବିବେକକୁ ଶାଣିତ କରେ । ଭଲ ଏବଂ ମନ୍ଦ, ସୁ ଏବଂ କୁ ମଧ୍ୟରେ ଥିବା ପାର୍ଥକ୍ୟକୁ ବୁଝିବା ନିମନ୍ତେ ସାହାଯ୍ୟ କରେ । ମଣିଷ ମଧ୍ୟରେ ଥିବା ପଶୁ-ପ୍ରବୃତ୍ତିର ବିନାଶ ଘଟାଇ ଦେବତ୍ୱର ବିକାଶ ଘଟାଏ । ଜ୍ଞାନ-ରାଜ୍ୟର ପଥିକ, ସଙ୍କୀର୍ଣ୍ଣତା, ଅନୁଦାରତା, ଅସହନଶୀଳତା ଇତ୍ୟାଦି ଭୁଲିଯାଇ ସମସ୍ତ

ବିଶ୍ୱକୁ ଗ୍ରହଣକରେ ନିଜର ପରିବାରଭାବେ । ତେଣୁ କୁହାଯାଏ ଯେ "ଜ୍ଞାନେନ ହୀନାଃ, ପଶୁଭିଃ ସମାନାଃ···" ବିଦ୍ୟା ହେଉଛି ମଣିଷର ଏକମାତ୍ର ବନ୍ଧୁ ଯିଏ କି ଶୋକରେ, ଦୁଃଖରେ, ପୀଡ଼ନରେ, ବିଷାଦରେ ମଣିଷର ସାଙ୍ଗ ଛାଡ଼େନାହିଁ । ଏହା ତାକୁ ବିପଦରେ ଧୈର୍ଯ୍ୟ ଅବଲମ୍ବନ କରିବା ନିମନ୍ତେ ପ୍ରେରଣା ଦିଏ; ଆନନ୍ଦ ଏବଂ ବିଷାଦକୁ ସମଭାବରେ ଗ୍ରହଣକରିନେବାକୁ ପ୍ରବର୍ତ୍ତାଏ । ଦୂରକୁ ନିକଟ, ପରକୁ ଆପଣାର କରିବା ନିମନ୍ତେ ପ୍ରଚୁର ସୁଯୋଗ ସୃଷ୍ଟିକରେ । ସେଥିପାଇଁ କୁହାଯାଇଛି ଯେ, 'ସ୍ୱଦେଶେ ପୂଜ୍ୟତେ ରାଜା, ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ' । କେବଳ ଏହି କାରଣରୁ ପ୍ରତ୍ୟେକ ମାନବ ପାଇଁ ଶିକ୍ଷା ଏକାନ୍ତଭାବରେ ଅପରିହାର୍ଯ୍ୟ ବୋଲି କୁହାଯାଇପାରେ ।

ପ୍ରାଚୀନ ଭାରତରେ ଶିକ୍ଷାର ମର୍ଯ୍ୟାଦା କିଭଳି ଥିଲା, ଇତିହାସ ଏବଂ ପୁରାଣରୁ ତାହାର ଭୂରି ଭୂରି ଦୃଷ୍ଟାନ୍ତ ମିଳିବ । ଭାରତୀୟ ମୁନି-ଋଷିବୃନ୍ଦ ମାନବଜୀବନକୁ ଚାରିଭାଗରେ ବିଭକ୍ତ କରିଦେଇଥିଲେ; ଯଥା—ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଏବଂ ଯତିବ୍ରତ । ଜୀବନର ପ୍ରଥମ ଚବିଶବର୍ଷ, ଯାହାକୁ କି ବ୍ରହ୍ମଚର୍ଯ୍ୟାଶ୍ରମ ବୋଲି କୁହାଯାଉଥିଲା, ମଣିଷ ଜୀବନରେ ସର୍ବୋଚ୍ଚ ଗୁରୁତ୍ୱପୂର୍ଣ୍ଣ ସମୟ । ସଂସାରକ୍ଷେତ୍ରରେ ପ୍ରବେଶକରିବା ପୂର୍ବରୁ ମାନବଶିଶୁକୁ ଏଥିପାଇଁ ସବୁଦିଗରୁ ପ୍ରସ୍ତୁତ କରାଯାଉଥିଲା । ସମାଜଠାରୁ ବହୁଦୂରରେ ଗୁରୁକୁଳାଶ୍ରମର ନିର୍ଜନ ପରିବେଶରେ, କଠୋର ବ୍ରହ୍ମଚର୍ଯ୍ୟ ମଧ୍ୟରେ ତାକୁ ଶିକ୍ଷା ଗ୍ରହଣକରିବାକୁ ପଡ଼ୁଥିଲା । ଏ ଶିକ୍ଷା କେବଳ ପୁସ୍ତକଗତ ନଥିଲା, କଠୋର ଶାରୀରିକ ପରିଶ୍ରମ ଛାତ୍ରକୁ ଆତ୍ମନିର୍ଭରଶୀଳ ହେବାକୁ ଶିକ୍ଷା ଦେଉଥିଲା । କର୍ମକୁ ଭଗବାନ୍ ରୂପରେ ସମ୍ମାନ ଦେବାର ଶିକ୍ଷା ତାକୁ ଏହିଠାରୁ ହିଁ ମିଳୁଥିଲା । ଶିକ୍ଷା ନିମନ୍ତେ ଐକାନ୍ତିକ ମନୋଯୋଗର ଆବଶ୍ୟକତା ରହିଥିବାରୁ ମାନବ ସମାଜଠାରୁ ବହୁ ଦୂରରେ ଅରଣ୍ୟ ମଧ୍ୟରେ ତାହାର ଛାତ୍ରଜୀବନ କଟାଇବାର ବ୍ୟବସ୍ଥା କରାଯାଉଥିଲା । ଏହା ଦ୍ୱାରା ବାହ୍ୟବିକ୍ଷେପର ଆଶଙ୍କା ପ୍ରାୟ ରହୁନଥିଲା । ଶିକ୍ଷା ଶେଷରେ ଛାତ୍ର ଗୁରୁଙ୍କର ଆଶୀର୍ବାଦ ଗ୍ରହଣ କରି ଗାର୍ହସ୍ଥ୍ୟାଶ୍ରମରେ ପ୍ରବେଶ କରୁଥିଲା ।

ଇଂରେଜମାନେ ଏ ଦେଶକୁ ଆସିବା ପରେ ପାରମ୍ପରିକ ଶିକ୍ଷା-ବ୍ୟବସ୍ଥାର ଆମୂଳ ପରିବର୍ତ୍ତନ ଘଟିଲା । ଶାସନକାର୍ଯ୍ୟରେ ସେମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଇଂରେଜମାନେ ଚାହୁଁଥିଲେ ଏଇ ଦେଶର ଦଳେ ଇଂରେଜୀ-ଶିକ୍ଷିତ ଯୁବକ । ତେଣୁ ସେମାନେ ଏଠାକାର ଶିକ୍ଷା-ବ୍ୟବସ୍ଥାକୁ ସେଇ ଛାଞ୍ଚରେ ଢାଳିଲେ । ଲର୍ଡ଼ ମାକ୍‌ଲେ ଇଂରେଜମାନଙ୍କର ଶିକ୍ଷାନୀତି ସମ୍ପର୍କରେ ସୂଚନା ଦେବାକୁ ଯାଇ କହିଥିଲେ ଯେ, ସେମାନେ ଏ ଦେଶରେ ଦଳେ ଏଭଳି ଶିକ୍ଷିତ ଯୁବକଗୋଷ୍ଠୀ ସୃଷ୍ଟିକରିବେ, ଯେଉଁମାନେ କେବଳ ବର୍ଣ୍ଣରେ ଭାରତୀୟ ହେଲେ ମଧ୍ୟ ଚିନ୍ତା ଓ ଚେତନାରେ, ଦୃଷ୍ଟି ଏବଂ ଦର୍ଶନରେ ହେବେ ସମ୍ପୂର୍ଣ୍ଣ ୟୁରୋପୀୟ । ତାହା ହିଁ କାର୍ଯ୍ୟତଃ ହେଲା । ଇଂରାଜୀ ଶିକ୍ଷାର ବ୍ୟାପକ ପ୍ରସାର ଏ ଦେଶରେ ଯେଉଁ ନବଶିକ୍ଷିତ ଗୋଷ୍ଠୀ ସୃଷ୍ଟିକଲା, ସେମାନେ ଆଚାର-ବ୍ୟବହାର, ପୋଷାକ-ପରିଚ୍ଛଦ ଏବଂ ଆହାର-ବିହାରରେ

ଇଂରେଜମାନଙ୍କର ଝୁବ୍ ନିକଟକୁ ଚାଲିଗଲେ । ପାରମାର୍ଥିକ ଶିକ୍ଷା ଅର୍ଥକରୀ ହୋଇ ନଥିବାରୁ, ସେ ସମ୍ପର୍କରେ ଆଉ କେହି ଆଗ୍ରହୀ ହେଲେ ନାହିଁ ।

ଗୋଟିଏ ସମୟରେ ଅବଶ୍ୟ ଇଂରାଜୀ ଶିକ୍ଷା ଦେଶପାଇଁ ଅତ୍ୟନ୍ତ ଶୁଭଙ୍କର ହୋଇଥିଲା । ଜ୍ଞାନବିଜ୍ଞାନର ନବ ନବ ଦ୍ୱାର ଭାରତୀୟମାନଙ୍କ ପାଇଁ ଉନ୍ମୁକ୍ତ ହୋଇଯାଇଥିଲା । ଅନ୍ୟ ପରମ୍ପରାର ଅନ୍ଧ ଅନୁକରଣରେ କ୍ଷତି ଯେ ହେଉ ନଥିଲା ଏପରି ନୁହେଁ । ତେବେ ଲାଭ ତୁଳନାରେ ତାହାର ଗୁରୁତ୍ୱ ସେତେ ବେଶି ନଥିଲା । ମାତ୍ର ସେଦିନବେଳର ସେହି ଶିକ୍ଷା-ବ୍ୟବସ୍ଥା ବର୍ତ୍ତମାନ ଆମପାଇଁ ଏକ ବିରାଟ ସମସ୍ୟା ସୃଷ୍ଟି କରିଛି ।

ସବୁଠାରୁ ବଡ଼କଥା ହେଉଛି ଯେ, ଏହି ଶିକ୍ଷାରେ ଶାରୀରିକ ଶ୍ରମର କୌଣସି ସ୍ଥାନ ନାହିଁ । ଇଂରେଜମାନେ ଚାହୁଁଥିଲେ ଯେ ଲେଖାପଢ଼ି ଜାଣି ସେମାନେ ଅନ୍ୟମାନଙ୍କଠାରୁ ନିଜକୁ ସ୍ୱତନ୍ତ୍ର ଭାବିବେ । ଏହି ଭେଦନୀତି ହିଁ ଭାରତୀୟମାନଙ୍କୁ ପରସ୍ପରଠାରୁ ଦୂରେଇ ରଖିବ ଏବଂ ସେମାନେ ନିର୍ବିଘ୍ନରେ ଶାସନ ଚଳାଇପାରିବେ । ଏ ଦିଗରେ ସେମାନେ ବେଶ୍ ସଫଳ ମଧ୍ୟ ହୋଇଥିଲେ । ମାତ୍ର ଇତିମଧ୍ୟରେ ଅନେକ ସମୟ ଅତିକ୍ରାନ୍ତ ହୋଇଗଲାଣି । ଇଂରେଜୀ ଶିକ୍ଷା ଆଉ ପୂର୍ବଭଳି ଅର୍ଥକରୀ ହୋଇ ହେଉନାହିଁ । ଏ ଶିକ୍ଷା ଥିଲା ଏକାନ୍ତଭାବେ ଚାକିରି-ଅଭିମୁଖୀ । ବର୍ତ୍ତମାନ ସ୍କୁଲ କଲେଜ ବ୍ୟାପକ ଭାବରେ ବଢ଼ିଯିବା ଫଳରେ ଶିକ୍ଷିତମାନଙ୍କ ସଂଖ୍ୟା ଯଥେଷ୍ଟ ବଢ଼ିଯାଇଛି, ହଜାର ହଜାର ଛାତ୍ରଛାତ୍ରୀ ପ୍ରତ୍ୟେକ ବର୍ଷ ସାର୍ଟିଫିକେଟ୍ ଧରି ବାହାରିଆସୁଛନ୍ତି । ମାତ୍ର ସେମାନଙ୍କ ପାଇଁ ଏତେ ଚାକିରି କାହିଁ ? ସାଧାରଣ ଶିକ୍ଷା ତ ଦୂରର କଥା, ବୈଷୟିକ ତାଲିମ୍‌ପ୍ରାପ୍ତ ବ୍ୟକ୍ତିମାନଙ୍କ ପାଇଁ ମଧ୍ୟ ସମ୍ପୃକ୍ତ ଚାକିରି କ୍ଷେତ୍ରରେ ଘୋର ଜଟିଳତା ଦେଖାଦେଇଛି । ଅସଂଖ୍ୟ ଇଞ୍ଜିନିୟର, ଡାକ୍ତର ଚାକିରି ନପାଇ ବୁଲୁଛନ୍ତି । ଯାହା ସେମାନେ ଛାତ୍ରାବସ୍ଥାରେ ଶିକ୍ଷା କରିଥିଲେ, ସେ ସବୁ ବ୍ୟବହାର ଅଭାବରୁ କ୍ରମଶଃ ଭୁଲିହୋଇଯାଉଛି । ସରକାର ଏମାନଙ୍କ ପାଇଁ ଯେଉଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ, ସେସବୁ ମଧ୍ୟ ପାଣିରେ ପଡ଼ୁଛି । ଫଳରେ ସାମାଜିକ ଜୀବନରେ ଅଶାନ୍ତି ବୃଦ୍ଧି ପାଉଛି । ଅଶାନ୍ତିରୁ ସୃଷ୍ଟିହେଉଛି ଅନୈତିକତା । 'ପେଟ ପୋଷେ ନାହିଁ ଦୋଷ' ନୀତିରେ ଏହିସବୁ ଶିକ୍ଷିତ ଯୁବକଯୁବତୀମାନେ ଯାହା ହାତପାଖରେ ପାଉଛନ୍ତି, ନ୍ୟାୟ ଅନ୍ୟାୟ, ପାପପୁଣ୍ୟ ଗଣନା ନକରି ନିର୍ବିକାର ଚିତ୍ତରେ ତାହା କରିଚାଲିଛନ୍ତି । ଫଳରେ ସମାଜ ସଂସ୍ଥା ଧୀରେ ଧୀରେ ଭୁଶୁଡ଼ିପଡ଼ୁଛି । ବର୍ତ୍ତମାନ ତେଣୁ ଶିକ୍ଷା ବ୍ୟବସ୍ଥାର ଆମୂଳ ପରିବର୍ତ୍ତନ ଘଟାଇବା ନିମନ୍ତେ ଅବସର ଆସିଯାଇଛି ।

ପୂର୍ବରୁ କୁହାଯାଇଛି ଯେ, ଏ ଦେଶର ଶିକ୍ଷା ବ୍ୟବସ୍ଥାରେ ଶାରୀରିକ ଶ୍ରମର କୌଣସି ମର୍ଯ୍ୟାଦା ନାହିଁ । ମାଟ୍ରିକ୍ ଖଣ୍ଡେ ପାସ୍ କରିଦେଲେ ପିଲାମାନେ ବାବୁ ହୋଇଯାଉଛନ୍ତି । ନିଜର ବିଛଣାଖଣ୍ଡିକ ଉଠାଇବାକୁ ସେମାନଙ୍କୁ ଲାଜଲାଗୁଛି; ଅଥଚ ପାଶ୍ଚାତ୍ୟ ଦେଶର ଶିକ୍ଷା ବ୍ୟବସ୍ଥା ଶାରୀରିକ ଶ୍ରମକୁ ହିଁ ଅଧିକ ଗୁରୁତ୍ୱ ଦେଉଥିବାର ଦେଖାଯାଉଛି । ସେ ଦେଶରେ

କୋଟିପତିର ସନ୍ତାନ ପୁଣି ଅଧ୍ୟୟନ କାଳରେ ନିଜର ଖର୍ଚ୍ଚ ତୁଲାଇବା ପାଇଁ ଘର ଝାଡ଼ୁ ଦେବାଠାରୁ ଆରମ୍ଭକରି ହୋଟେଲରେ ପ୍ଲେଟ୍ ଧୋଇବା ପର୍ଯ୍ୟନ୍ତ କାମ କରୁଛି । ଏହାଦ୍ୱାରା ଶ୍ରମର ମର୍ଯ୍ୟାଦା ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଆତ୍ମନିର୍ଭରଶୀଳତା ମଧ୍ୟ ବୃଦ୍ଧିପାଉଛି । ଜୀବନପଥରେ ପାଦ ଦେବା ପୂର୍ବରୁ ଗୃହୀଜୀବନର ବହୁ ବୈଚିତ୍ର୍ୟ ରୂପ ସହିତ ନିବିଡ଼ଭାବରେ ପରିଚିତ ହୋଇଯାଉଛି ।

ଆମର ଶିକ୍ଷାକୁ ସମସ୍ୟାମୁକ୍ତ କରିବାକୁ ହେଲେ, ତେଣୁ ପ୍ରଥମେ ଆମର ଶିକ୍ଷା-ବ୍ୟବସ୍ଥାରେ ଶାରୀରିକ ଶ୍ରମର ଗୁରୁତ୍ୱ ବଢ଼ାଇବାକୁ ପଡ଼ିବ । କୌଣସି ସରକାର କେବଳ ଏ ଦେଶର ପ୍ରତ୍ୟେକଙ୍କ ପାଇଁ ନିଯୁକ୍ତିର ସୁଯୋଗ ସୃଷ୍ଟି କରିପାରିବେନାହିଁ । ତେଣୁ ଏଥିପାଇଁ ସରକାରଙ୍କ ଉପରେ ନିର୍ଭର ନକରି ଛାତ୍ରାବସ୍ଥାରୁ ହିଁ ନିଜର ବ୍ୟବସ୍ଥା ସମ୍ପର୍କରେ ନିଜକୁ ଚିନ୍ତାକରିବାକୁ ପଡ଼ିବ । ଚଢ଼ାଚଢ଼ି ଭାବରେ ବି. ଏ., ଏମ୍. ଏ. ପଢ଼ିବା ପାଇଁ ଛାତ୍ରଙ୍କୁ ଆଉ ଉତ୍ସାହିତ ନକରି, ସ୍କୁଲ୍ ଜୀବନରୁ ହିଁ ସେମାନଙ୍କୁ ଧନ୍ଦାମୂଳକ ଶିକ୍ଷା ସହିତ ପରିଚିତ କରାଇବାକୁ ପଡ଼ିବ । ଗୋପାଳନ, କୁକ୍କୁଡ଼ାପାଳନ, ମହୁମାଛି ପାଳନ, ମାଛଚାଷ ପ୍ରଭୃତି ବିଭିନ୍ନ ଧନ୍ଦା ସହିତ ଛାତ୍ରଜୀବନରୁ ହିଁ ସେମାନଙ୍କୁ ଜଡ଼ିତ କରାଇବାକୁ ପଡ଼ିବ । ଆତ୍ମନିଯୁକ୍ତିର ଅନେକ ସୁବିଧା ଏବେ ମଧ୍ୟ ଏ ଦେଶରେ ରହିଛି । କେବଳ ମାତ୍ର ଚାକିରିକୁ ଛାଡ଼ିଦେଲେ ଅନ୍ୟ କୌଣସି କ୍ଷେତ୍ରରେ ଏବେ ମଧ୍ୟ ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି ହୋଇନାହିଁ । ଆମର ଶିକ୍ଷା-ବ୍ୟବସ୍ଥାକୁ ତେଣୁ ଏଭଳି ନିୟନ୍ତ୍ରିତ କରିବାକୁ ପଡ଼ିବ, ଯାହାଦ୍ୱାରା ୧୬।୧୭ ବର୍ଷ ବେଳକୁ ଛାତ୍ର ପୂର୍ବୋକ୍ତ ଧନ୍ଦାମାନଙ୍କ ମଧ୍ୟରୁ ଯେକୌଣସି ଗୋଟିକୁ ଅବଲମ୍ବନ କରି ଜୀବିକା ନିର୍ବାହ କରିବା ନିମନ୍ତେ ପ୍ରସ୍ତୁତ ହୋଇଯାଇପାରିବ । ଯେଉଁମାନଙ୍କର ବୈଷୟିକ ଶିକ୍ଷାପ୍ରତି ଆଗ୍ରହ ହେବ, ସେମାନଙ୍କୁ ପୁଣି କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା ନିମନ୍ତେ ଉତ୍ସାହିତ କରାଯିବା ଉଚିତ । ମନେରଖିବାକୁ ହେବ ଯେ, ବୃହତ୍ ଶିଳ୍ପ, କଳକାରଖାନା ବହୁନିଯୁକ୍ତିର ବାଧକ ସ୍ୱରୂପ । ତେଣୁ ଯଥାସମ୍ଭବ ଏସବୁକୁ ବନ୍ଦ ରଖି, ଛୋଟ ଛୋଟ ଶିଳ୍ପମାନ ପ୍ରତିଷ୍ଠା ନିମନ୍ତେ ସୁବିଧା ସୃଷ୍ଟିକଲେ ନିଯୁକ୍ତିର ସୁଯୋଗ ବୃଦ୍ଧିପାଇବ । ବ୍ୟାଙ୍କ ଜରିଆରେ ଏଥିନିମନ୍ତେ ଅର୍ଥର ବ୍ୟବସ୍ଥା କରାଯାଇପାରେ ଏବଂ ଉତ୍ପାଦିତ ଦ୍ରବ୍ୟ କ୍ରୟ କରାଯାଇ ସେସବୁର ଭରଣା ମଧ୍ୟ କରାଯାଇପାରେ ।

ଶିକ୍ଷାକ୍ଷେତ୍ରରେ ଏ ମଧ୍ୟରେ ଆମେ ବହୁ ପରୀକ୍ଷା-ନିରୀକ୍ଷା କରିଛୁ । ମାତ୍ର ସେ ସବୁ 'ଖଡ଼ା ବଡ଼ ଥୋଡ଼ ଏବଂ ଥୋଡ଼ ବଡ଼ ଖଡ଼ା' ଭଳି ଆମ ପାଇଁ କୌଣସି ସୁଫଳ ଦେଇପାରି ନାହିଁ । ବର୍ତ୍ତମାନ ସମଗ୍ର ଦେଶ ପାଇଁ +୨ ଶିକ୍ଷା ବ୍ୟବସ୍ଥା ମାଧ୍ୟମରେ ଏକପ୍ରକାର ଶିକ୍ଷାନୀତି ଅନୁସୃତ ହେବାକୁ ଯାଉଛି । ଏଥିରେ ଧନ୍ଦାମୂଳକ ଶିକ୍ଷାକୁ ଅଗ୍ରାଧିକାର ଦିଆଯାଉଥିବାର କୁହାଯାଉଛି । ଯଦି ଏହା ଠିକ୍‌ଭାବରେ କାର୍ଯ୍ୟକାରୀ ହୁଏ, ତେବେ ଶିକ୍ଷାକ୍ଷେତ୍ରରେ ଦୀର୍ଘକାଳ ଧରି ପ୍ରଚଳିତ ଥିବା ଅଚଳ ଅବସ୍ଥା ଯେ ଦୂରହୋଇଯିବ, ଏଥିରେ ସନ୍ଦେହ ନାହିଁ । ଅଭିଜ୍ଞତାରୁ କୁହାଯାଇପାରେ ଯେ, ଯେଉଁ ଶିକ୍ଷା ମଣିଷକୁ ଶ୍ରମବିମୁଖ କରିଦିଏ, ମଣିଷମନରେ

ଆତ୍ମମର୍ଯ୍ୟାଦାବୋଧ ସୃଷ୍ଟି କରିପାରେନାହିଁ, ସେ ଶିକ୍ଷା କୁଶିକ୍ଷା । ଆମପାଇଁ ତେଣୁ ଏଭଳି ଶିକ୍ଷା-ବ୍ୟବସ୍ଥାର ପ୍ରୟୋଜନ, ଯାହା ଆମକୁ ଏ ଉଭୟ ଦିଗରେ ପ୍ରେରଣା ଯୋଗାଇ ପାରିବ । + ୨ ଶିକ୍ଷା ବ୍ୟବସ୍ଥାରେ ତାହାର ପ୍ରଚୁର ସୁଯୋଗ ରହିଛି । ଏହାର ଫଳାଫଳ ନିମନ୍ତେ ଅପେକ୍ଷା କରାଯାଉ ।

# ଉତ୍କଳର ଅତୀତ ବଇଭବ

କଳାକ୍ଷେତ୍ରରେ ସ୍ମରଣୀୟ କୃତିତ୍ୱ ଅର୍ଜନ କରି ଅତୀତରେ ଓଡ଼ିଶା 'ଉତ୍କଳ' ନାମରେ ପରିଚିତ ହୋଇଥିଲା । ବୀରତ୍ୱରେ ଏହା କେବଳ ଭାରତବର୍ଷରେ ନୁହେଁ, ସମଗ୍ର ପୃଥିବୀରେ ମଧ୍ୟ ଏହା ପ୍ରସିଦ୍ଧି ଲାଭ କରିଥିଲା । କଳିଙ୍ଗାଃ ସାହସିକାଃ' ପ୍ରଭୃତି ପ୍ରାଚୀନ ଉକ୍ତିରୁ ଏହାର ପ୍ରମାଣ ମିଳେ । ବାଣିଜ୍ୟ-ବ୍ୟବସାୟରେ ମଧ୍ୟ ଓଡ଼ିଆମାନେ ପଛରେ ପଡ଼ିରହିନଥିଲେ । ଚେଲିତାଲ, ପାରାଦ୍ୱୀପ, ପିପିଲି, ବାଲେଶ୍ୱର ପ୍ରଭୃତି ସ୍ଥାନମାନଙ୍କରୁ ବଡ଼ ବଡ଼ ପାଲଟଣା ଜାହାଜମାନ ସିଂହଳ, ସୁମାତ୍ରା, ବାଲି, ଜାଭା, ବୋର୍ଣ୍ଣିଓ ପ୍ରଭୃତି ଅଞ୍ଚଳକୁ ପ୍ରଚୁର ବାଣିଜ୍ୟ ସାମଗ୍ରୀ ନେଇ ଯାତ୍ରା କରୁଥିଲେ ଏବଂ ସେ ଦେଶରୁ ପ୍ରଚୁର ଧନସମ୍ପଦ ନେଇ ଓଡ଼ିଶାକୁ ଫେରିଆସୁଥିଲେ ।

ସ୍ଥାପତ୍ୟ କ୍ଷେତ୍ରରେ ସେ କାଳରେ ଉତ୍କଳ କିଭଳି ପାରଦର୍ଶୀ ହୋଇଉଠିଥିଲା, ତାହାର ପରିଚୟ ଏବେ ସୁଦ୍ଧା କୋଣାର୍କ, ପୁରୀ ଏବଂ ଭୁବନେଶ୍ୱରଠାରେ ଆକାଶକୁ ଛୁଇଁବାର ସ୍ପର୍ଦ୍ଧା ରଖୁଥିବା ଉଚ୍ଚ ଉଚ୍ଚ ଦେବ-ମନ୍ଦିର ଗୁଡ଼ିକରୁ ମିଳିପାରିବ । ଏମାନଙ୍କ ମଧ୍ୟରେ ଅପୂର୍ବ କାରୁକାର୍ଯ୍ୟମୟ 'କୋଣାର୍କ' ପୁଣି ଏକଦା ଥିଲା ପୃଥିବୀର 'ସପ୍ତ ଆଶ୍ଚର୍ଯ୍ୟ' ମାନଙ୍କ-ମଧ୍ୟରୁ ଏକତମ । ନଦୀମୁହାଣକୁ ପୋତି, ପଥର ନିର୍ମିତ ହୋଇଥିବା ସ୍ଥାନରେ କଳାର ଏହି ଉଚ୍ଚ ଉଚ୍ଚ ହିମାଳୟ ସେ କାଳର ଓଡ଼ିଆମାନେ କିଭଳି ଗଢ଼ିପାରିଥିଲେ, ତାହା ଆଜି ମଧ୍ୟ ବିଶ୍ୱର ସ୍ଥପତିମାନଙ୍କ ନିମନ୍ତେ ବିସ୍ମୟ ହୋଇ ରହିଛି । କୋଣାର୍କର ପ୍ରସିଦ୍ଧ 'ନବଗ୍ରହ' ମୂର୍ତ୍ତି ବିଷୟ ସମସ୍ତଙ୍କୁ ଜଣାଥିବ । ଖଣ୍ଡିଏ ବିଶାଳକାୟ ପଥରରେ ଖୋଦିତ ଏହି 'କଳାକୃତି' କୋଣାର୍କ ଦେଉଳ ଦେହରେ ଶୋଭାପାଉଥିଲା । ମନ୍ଦିର ଭାଙ୍ଗିଯିବାରୁ ମୂର୍ତ୍ତିଟି ମଧ୍ୟ ତଳକୁ ଖସିପଡ଼ିଥିଲା । ତାକୁ କଲିକତା ମ୍ୟୁଜିୟମ୍‌କୁ ନେଇଯିବା ନିମନ୍ତେ ସ୍ଥିରକରି ସେକାଳର ବ୍ରିଟିଶ୍ ସରକାର ସେଇ ପଥରଖଣ୍ଡଟିକୁ ଉଠାଇବା ନିମନ୍ତେ ଚେଷ୍ଟା କରିଥିଲେ । ମାତ୍ର ଆଧୁନିକ ବିଜ୍ଞାନର ସମସ୍ତ କଳକୌଶଳ ପ୍ରୟୋଗ କରାଯାଇଥିଲେ ମଧ୍ୟ ସେଥିରେ ସଫଳତା ମିଳିନଥିଲା । ଶେଷରେ ଆଡ଼ବାଗରେ କଟାଯାଇ ତାହାର ଓଜନକୁ ପ୍ରାୟ ଅଧାଅଧି କମାଇ ଦିଆଯାଇଥିଲେହେଁ ସରକାରୀ ଉଦ୍ୟମ ସଫଳ ହୋଇ ନଥିଲା । ଅବଶେଷରେ ଏହି

ପରିଚାଳନାଟି ପରିଚାଳିତ ହୋଇଥିଲା । ମନେରଖିବାକୁ ହେବ ଯେ, କୋଣାର୍କର ନିକଟବର୍ତ୍ତୀ ଅଞ୍ଚଳରେ କୌଣସି ପର୍ବତ ନଥିବାରୁ, ଏଥିରେ ବ୍ୟବହୃତ ହୋଇଥିବା ସମସ୍ତ ପଥର ବାହାରୁହିଁ ସଂଗୃହୀତ ହୋଇଥିଲା । ମନ୍ଦିରଗାତ୍ରରେ କଳାର ଯେଉଁ ଅପୂର୍ବ ସ୍ୱପ୍ନୀ ସଜ୍ଜିତ ହୋଇ ରହିଛି, ସେ ସବୁ ଦେଖିଲେ ଏବେ ସୁଦ୍ଧା ମନ୍ତ୍ରମୁଗ୍ଧ ହେବାକୁ ପଡ଼େ ।

ଓଡ଼ିଆମାନଙ୍କର ବୀରତ୍ୱ ଏକ ସର୍ବଜନବିଦିତ ବ୍ୟାପାର । ଅଶୋକଙ୍କ ରକ୍ତତୃଷ୍ଣା ନିକଟରେ ଏ ଜାତି ଥରେ ପରାଜୟ ବରଣ କରିଥିଲା ସତ୍ୟ; ମାତ୍ର ସେଥିପାଇଁ ଅଶୋକଙ୍କୁ କମ୍ ମୂଲ୍ୟ ଦେବାକୁ ପଡ଼ିନାହିଁ । ଦେବଭୂମି ଉତ୍କଳହିଁ 'ଚଣ୍ଡାଶୋକ'ଙ୍କୁ 'ଧର୍ମାଶୋକ'ରେ ପରିଣତ କରିଛି । ଯେଉଁ ଅଶୋକ ଦୁର୍ଦ୍ଦମନୀୟ ଜିଘାଂସା ନେଇ ଉତ୍କଳ ଆକ୍ରମଣ କରିବାକୁ ଆସିଥିଲେ, କଳିଙ୍ଗର ରଣକ୍ଷେତ୍ରରେ ତାଙ୍କର ମୃତ୍ୟୁ ଘଟିଥିଲା । ଏହାପରେ ଭାରତ-ଇତିହାସରେ ଯେଉଁ ଅଶୋକଙ୍କୁ ଆମେ ଦେଖିବାକୁ ପାଇଲେ, 'ଦେବାନାଂ ପ୍ରିୟ ପ୍ରିୟଦର୍ଶୀ' ସେ ଏକ ନୂତନ ଅଶୋକ । ଖଣ୍ଡାକୁଶଳ ଖଣ୍ଡାୟତବାହିନୀ ସଙ୍ଗରେ ନେଇ ବୀର ଖାରବେଳ ସୁଦୂର ମଗଧ ପର୍ଯ୍ୟନ୍ତ ମାଡ଼ିଯାଇଥିଲେ ଏବଂ ପୁଷ୍ୟମିତ୍ରଙ୍କଦ୍ୱାରା ଅପହୃତ କଳିଙ୍ଗର ଜିନାସନକୁ ପୁନର୍ବାର ସଗୌରବେ କଳିଙ୍ଗକୁ ଫେରାଇଆଣିଥିଲେ । ଏହାପରେ ସୁଦ୍ଧା କପିଳେନ୍ଦ୍ରଦେବ, ପୁରୁଷୋତ୍ତମଦେବ, ଅନଙ୍ଗଭୀମଦେବ, ଲଲାଟେନ୍ଦୁ, ଲଲାଟେନ୍ଦୁ ପ୍ରଭୃତି ପ୍ରସିଦ୍ଧ ସମ୍ରାଟ୍‌ମାନଙ୍କ ନେତୃତ୍ୱରେ ଓଡ଼ିଆମାନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ନିଜ ରାଜ୍ୟର ସୀମା ବିସ୍ତୃତ କରିଥିଲେ । ଚଳେଇନ୍ତି ମୁକୁନ୍ଦ କଳାପାହାଡ଼ଭଳି ଦୁର୍ଦ୍ଧର୍ଷ ଯୋଦ୍ଧାକୁ ମଧ୍ୟ ସହଜରେ ଓଡ଼ିଶାରେ ଅନୁପ୍ରବେଶ କରିବାକୁ ଦେଇନଥିଲେ । ସବୁଠାରୁ ବଡ଼କଥା, ପ୍ରବଳପରାକ୍ରାନ୍ତ ବ୍ରିଟିଶ୍ ସରକାର ସମଗ୍ର ଭାରତବର୍ଷର ବଡ଼ ବଡ଼ ରାଜ୍ୟସବୁକୁ ଗ୍ରାସ କରିସାରିବା ପରେ ଊନବିଂଶଶତକର ପ୍ରଥମ ପାଦରେ (୧୮୦୩) ହିଁ ଓଡ଼ିଶା ଅଧିକାର କରିଥିଲେ । ଇତିହାସ-ପ୍ରସିଦ୍ଧ ଗୋଟାଏ ଜାତିର ବୀରତ୍ୱ ଏବଂ ରଣକୌଶଳ ଧୂର୍ତ୍ତ ଇଂରେଜମାନଙ୍କ ନିକଟରେ ଅଛପା ରହିନଥିଲା । ତେଣୁ ୧୮୧୭ ମସିହାର ସ୍ୱାଧୀନତା ଆନ୍ଦୋଳନ ପରେ ସବୁଦିଗରୁ ଏହି ଦୁର୍ଦ୍ଧର୍ଷ ଜାତିକୁ ଦବାଇରଖିବାକୁ ଇଚ୍ଛାକୃତ ପ୍ରଚେଷ୍ଟା କରାଗଲା । ୧୮୧୭ ମସିହାର ବିଦ୍ରୋହ ଇତିହାସରେ 'ପାଇକ ବିଦ୍ରୋହ' ନାମରେ ପରିଚିତ ହୋଇଥିଲେହେଁ, ଏହାହିଁ ହେଉଛି ଭାରତବର୍ଷର ପ୍ରଥମ ସ୍ୱାଧୀନତା ଆନ୍ଦୋଳନ ।

ଧର୍ମକ୍ଷେତ୍ରରେ ସୁଦ୍ଧା ଓଡ଼ିଆମାନଙ୍କର ସହନଶୀଳତା, ଉଦାରତା ଇତିହାସପ୍ରସିଦ୍ଧ । କବିବର ରାଧାନାଥ 'ଭାରତ ପଙ୍କଜ ଦଳମିଦଂ ଉତ୍କଳ' ବୋଲି ବର୍ଣ୍ଣନାକରି ଏହାର ସ୍ୱାତନ୍ତ୍ର୍ୟ ପ୍ରମାଣ କରିଦେଇଛନ୍ତି । କବୀର, ନାନକ, ଶଙ୍କରାଚାର୍ଯ୍ୟ, ଚୈତନ୍ୟ ପ୍ରଭୃତି ଭାରତବର୍ଷର ସମସ୍ତ ଧର୍ମଗୁରୁବୃନ୍ଦ ଓଡ଼ିଶା ଆସି ସେମାନଙ୍କର ଧର୍ମମତର ପ୍ରଚାର କରିଛନ୍ତି । ଜଗନ୍ନାଥକ୍ଷେତ୍ର ହୋଇଛି ସର୍ବଧର୍ମ-ସମନ୍ୱୟର ଏକ ଉଦାର କ୍ଷେତ୍ର । ପତିତପାବନ ଏହାର ଆରାଧ୍ୟ ଦେବତା । ପାପୀ ତାପୀ, ଧନୀ ଦରିଦ୍ର, ଉଚ୍ଚନୀଚ ସମସ୍ତଙ୍କୁ ନିଜର ବିଶାଳ ବାହୁ ବଢ଼ାଇ ଆଲିଙ୍ଗନ କରିଛନ୍ତି । ସମୁଦ୍ର ମେଖଳା, ପର୍ବତ କିରୀଟମଣ୍ଡିତ,

ନଦୀ-ଉପତ୍ୟକା-ଶୋଭିତ ପବିତ୍ର ଏହି ଭୂଖଣ୍ଡର ପ୍ରତ୍ୟେକ ରେଣୁରେ ତାହାର ଧର୍ମୀୟ ଉଦାରତାର କାହାଣୀ ଲିପିବଦ୍ଧ ହୋଇ ରହିଛି । ଯବନ ସାଲବେଗ, ଅତିବ ଡାସିଆ ବାଉରି ଏଠାରେ ଶ୍ରେଷ୍ଠ ଭକ୍ତର ସମ୍ମାନ ଲାଭକରିପାରିଛନ୍ତି ।

ଓଡ଼ିଶାର ନୌ-ବାଣିଜ୍ୟ ବିଷୟ ଇତିପୂର୍ବରୁ କୁହାଯାଇଛି । ସାଧବମାନେ ଥିଲେ ଅତୀତରେ ବ୍ୟବସାୟୀ-ଗୋଷ୍ଠୀ । ବାଣିଜ୍ୟ ବ୍ୟପଦେଶରେ ସୁମାତ୍ରା, ବାଲି, ଜାଭା ପ୍ରଭୃତି ଦେଶମାନଙ୍କୁ ଯାଇଥାଇ ସେଠାରେ ଓଡ଼ିଶାର ସଂସ୍କୃତିର ପ୍ରଚାର କାର୍ଯ୍ୟ କରିଆସୁଥିଲେ । ଆଜି ମଧ୍ୟ ସେହି-ସବୁ ଅଞ୍ଚଳରେ ଓଡ଼ିଆ ସଂସ୍କୃତିର ଧ୍ୱଂସାବଶେଷ ରହିଥିବାର ଦେଖିବାକୁ ମିଳୁଛି । ବାଣିଜ୍ୟ-ଦ୍ରବ୍ୟ ରୂପରେ ଓଡ଼ିଶାରୁ ସେମାନେ ନେଇଯାଉଥିଲେ ପାଟ, ମଠା, ଚିକ୍କଣବସ୍ତ୍ର, ହାତୀଦାନ୍ତ ଓ ପଥରର ନାନା କାରୁକାର୍ଯ୍ୟ, କଂସା ବାସନ, ନାନାବିଧ ଜଙ୍ଗଲଜାତ ଦ୍ରବ୍ୟ ଏବଂ କାରୁକଳାର ନାନା ସାମଗ୍ରୀ । ଫେରିଲାବେଳେ ନେଇଆସୁଥିଲେ ନାନା ମସଲା, ସୁନା, ହୀରା, ମୁକ୍ତା ଇତ୍ୟାଦି ଦୁର୍ଲଭ ରତ୍ନରାଜି । ଓଡ଼ିଶା ଧନରତ୍ନରେ ପରିପୂର୍ଣ୍ଣ ଥିଲା । ଦୁର୍ଦ୍ଧର୍ଷ ପାଇକ-ବାହିନୀ ଏହାର ସୀମାରକ୍ଷା ଦାୟିତ୍ୱ ଗ୍ରହଣ କରିଥିବାରୁ ବହିଃଶତ୍ରୁର ଆକ୍ରମଣ ପ୍ରାୟ ନଥିଲା । କ୍ଷେତର ଫସଲ, ନଈପୋଖରୀର ମାଛ ଓଡ଼ିଆମାନଙ୍କର ପ୍ରୟୋଜନ ନିମନ୍ତେ ପର୍ଯ୍ୟାପ୍ତ ଥିଲା । ଓଡ଼ିଆମାନେ ପେଟପୂରାଇ ଖାଉଥିଲେ, ଅନ୍ୟଙ୍କୁ ଖୁଆଉଥିଲେ, ଅବସର ସମୟକୁ କଳା-ଚର୍ଚ୍ଚାରେ ଲଗାଉଥିଲେ ।

ସାହିତ୍ୟକ୍ଷେତ୍ରରେ ପୁଣି ଉତ୍କଳ ଥିଲା ସମଗ୍ର ଭାରତବର୍ଷରେ ଅଗ୍ରଗାମୀ । ଏହି ମାଟିର ମହାକବି ସାରଳା ଦାସ ଓଡ଼ିଆଭାଷାରେ ମହାଭାରତ ରଚନା କଲାବେଳକୁ ସମଗ୍ର ଭାରତର ଅନ୍ୟ କୌଣସି ପ୍ରାନ୍ତୀୟ ଭାଷାରେ ଗ୍ରନ୍ଥରଚନା ପ୍ରାୟ ଆରମ୍ଭ ହୋଇନାହିଁ କହିଲେ ଚଳେ । ଉପେନ୍ଦ୍ର ଭଞ୍ଜ ସାହିତ୍ୟର ସମାନ୍ତରାଳ ରଚନା ସମଗ୍ର ଭାରତରେ ଖୋଜି ପାଇବା ଦୁର୍ଲଭ । ସଙ୍ଗୀତ ଏବଂ ନୃତ୍ୟାଭିନୟ କ୍ଷେତ୍ରରେ ଓଡ଼ିଆମାନଙ୍କର ବ୍ୟୁତ୍ପତ୍ତି ଏକ ପ୍ରମାଣିତ ସତ୍ୟ ।

ଗଜପତି ପ୍ରତାପରୁଦ୍ରଙ୍କ ରାଜତ୍ୱକୁ ଓଡ଼ିଶା ଇତିହାସର ଏକ କଳଙ୍କିତ ଅଧ୍ୟାୟ ରୂପରେ ଚିହ୍ନିତ କରାଯାଇ, ଶ୍ରୀଚୈତନ୍ୟଙ୍କୁ ଓଡ଼ିଶାର ପତନରେ ଏକ ବିଶେଷ ଭୂମିକା ଗ୍ରହଣ କରିଥିବାର ଅପବାଦ ଦିଆଯାଇଥାଏ । ପ୍ରତାପରୁଦ୍ର ନିମିତ୍ତମାତ୍ର । ଦୀର୍ଘକାଳର ଯୁଦ୍ଧବିଗ୍ରହ ଯେଉଁ ଅପରିସୀମ କ୍ଲାନ୍ତି ଗୋଟିଏ ଜାତିର ଶରୀରରେ ଏବଂ ମନରେ ସଞ୍ଚିତ କରି ରଖିଥିଲା, ସେଥିରୁ ଏ ଜାତି ଖୋଜୁଥିଲା ସାମୟିକ ମୁକ୍ତି । ଯେଉଁ ନେତୃତ୍ୱ ତା'ର ହୃତମନୋବଳକୁ ପୁନର୍ବାର ପ୍ରତିଷ୍ଠିତ କରିପାରିଥାଆନ୍ତା, କହିବା ବାହୁଲ୍ୟ ଯେ, ପ୍ରତାପରୁଦ୍ରଙ୍କର ତାହା ନଥିଲା । ଏହି ସମୟରେ ଚୈତନ୍ୟ ଜାତିର ଜୀବନର ମାର୍ଗ ପରିବର୍ତ୍ତନ କରିଦେଲେ । ପ୍ରେମ-ଧର୍ମ ମନ୍ତ୍ରରେ ଜୀବନର ଶାଶ୍ୱତ ଲକ୍ଷ୍ୟ ଅନ୍ୱେଷଣର ଇଙ୍ଗିତ ଦେଇ ସେ ଗୋଟାଏ ଜାତିର ମାନସିକତାକୁ ସମ୍ପୂର୍ଣ୍ଣ ପରିବର୍ତ୍ତନ କରିଦେଲେ । ଯାହା ବା ସାମାନ୍ୟ କିଛି ଥିଲା, ଇଂରେଜ ଅମଳରେ ତାହାର ସମୂଳ ବିନାଶ ଘଟିଗଲା ।

କର୍ପୂର ଉଡ଼ିଯାଇଛି ସିନା, ମାତ୍ର ଏବେ ସୁଦ୍ଧା ପଡ଼ିରହିଥିବା କନାଖଣ୍ଡିକରୁ ଅତୀତ-ବୈଭବର ଆମୋଦିତ ଗନ୍ଧ ସମ୍ପୂର୍ଣ୍ଣରୂପେ ତିରୋହିତ ହୋଇନାହିଁ । ଅତୀତ ହେଉଛି ବର୍ତ୍ତମାନର ପରିମାପକ । ଯେଉଁ ଜାତିର ଅତୀତ ନାହିଁ ତାହାର ବର୍ତ୍ତମାନ ଅସ୍ପଷ୍ଟ ଏବଂ ଭବିଷ୍ୟତ ସୁଦ୍ଧା ଅନ୍ଧକାରାଚ୍ଛନ୍ନ । ତେବେ କେବଳ ଅତୀତସର୍ବସ୍ୱ ହୋଇ ବସିରହିବା ମଧ୍ୟରେ କୌଣସି ସାର୍ଥକତା ନଥାଏ; ବରଂ ନିଜକୁ ପୂର୍ବ-ପୁରୁଷଙ୍କର ଉପଯୁକ୍ତ ଦାୟାଦ ଭାବରେ ଗଢ଼ିବାରେ ହିଁ ପୌରୁଷ ଥାଏ । ଆଜି ଓଡ଼ିଶା ସର୍ବଭାରତୀୟ ଦରବାରରେ ପ୍ରାୟ ଉପେକ୍ଷିତ । ଆଜିଠାରୁ ସଙ୍କଳ୍ପବଦ୍ଧ ଭାବରେ ଓଡ଼ିଶାର ହୃତ ଗୌରବ ଫେରାଇଆଣି ତାକୁ ଅନ୍ତତଃ ଏକ ସମ୍ମାନିତ ଆସନରେ ବସାଇବାର ଦାୟିତ୍ୱ ପ୍ରତ୍ୟେକ ଉତ୍କଳୀୟର । ଓଡ଼ିଆମାନେ ସମବେତ ଭାବରେ ଏହି ଦାୟିତ୍ୱଟି ପାଳନ କଲେ ହିଁ ଦେଶ ଓ ଜାତି ପ୍ରତି ନିଜର କର୍ତ୍ତବ୍ୟ କରିପାରିବେ ।

# ଅଲଙ୍କାର

ଶରୀରକୁ ସୁନ୍ଦର ଏବଂ ଆକର୍ଷଣୀୟ କରିବା ନିମନ୍ତେ ପୁରୁଷ କେୟୁର, କୁଣ୍ଡଳ, ହାରାଦି ଅଲଙ୍କାର ପରିଧାନ କରିଥାଏ । ନାରୀ ନାନାବିଧ ଅଲଙ୍କାର ପରିଧାନ ପୂର୍ବକ ସୁନ୍ଦର ହୁଏ, ଏହା ଏକ ପ୍ରମାଣସିଦ୍ଧ ବ୍ୟାପାର । ସେହିପରି କାବ୍ୟସୁନ୍ଦରୀଙ୍କର ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ କବିବୃନ୍ଦ କାବ୍ୟ-ଶରୀରରେ ନାନାପ୍ରକାର ଅଲଙ୍କାର ବିନ୍ୟାସ କରିଥାଆନ୍ତି । ଆଲଙ୍କାରିକ ଭାମହ ପ୍ରଥମେ 'ଅଲଙ୍କାର ସମ୍ପ୍ରଦାୟ'ର ପ୍ରବର୍ତ୍ତନ କରିଥିଲେ ମଧ୍ୟ ନାଟ୍ୟକାର ଭରତଙ୍କ ସମୟରୁ ଏହାର ସ୍ଥିତି ରହିଛି ।

ଯାହା ଭୂଷଣ ସ୍ୱରୂପ ହୋଇ କାବ୍ୟଶୋଭାବର୍ଦ୍ଧକ ହୋଇଥାଏ ତାକୁହିଁ କାବ୍ୟାଲଙ୍କାର କୁହାଯାଏ । ତେବେ ଅଲଙ୍କାରକୁ କାବ୍ୟ-ସୌନ୍ଦର୍ଯ୍ୟର ଏକମାତ୍ର କାରଣ ରୂପେ ଗ୍ରହଣ କରିବାର କୌଣସି କାରଣ ନାହିଁ । ତାହା କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧିର ଏକ ସହାୟକ ଉପାଦାନ ମାତ୍ର । ଏହାକୁ ତେଣୁ କୌଣସିମତେ 'କାବ୍ୟର ଆତ୍ମା'ର ଗୌରବ ଦିଆ-ଯାଇନପାରେ । ଶରୀରରେ ଅଲଙ୍କାର ନଥିଲେ ସୁଦ୍ଧା ତଦ୍ଦ୍ୱାରା ଶାରୀରିକ ସୌନ୍ଦର୍ଯ୍ୟର ବିଶେଷ ହାନି ହୁଏ ନାହିଁ । ଠିକ୍ ସେହିପରି କାବ୍ୟ-ସୌନ୍ଦର୍ଯ୍ୟ-ହାନିରେ ମଧ୍ୟ ଅଲଙ୍କାରର ବିଶେଷ କୌଣସି ଭୂମିକା ନାହିଁ । ନୈସର୍ଗିକ ଲାବଣ୍ୟ ମାନବ-ସୌନ୍ଦର୍ଯ୍ୟ ବୃଦ୍ଧିର ପ୍ରଧାନ ଉପାଦାନ । ସେହିଭଳି 'ରସ' ହିଁ ହେଉଛି କାବ୍ୟ ଶରୀରର ଆତ୍ମା । 'ରସ'ର ସୌନ୍ଦର୍ଯ୍ୟ ବୃଦ୍ଧି କରାଇ ତାହାକୁ ଲୋକୋତ୍ତର ପ୍ରତିଷ୍ଠାର ଅଧିକାରୀ କରାଇଥାଏ । ଅଲଙ୍କାର ଏଥିରେ ତାକୁ ସାହାଯ୍ୟ କରିଥାଏ ମାତ୍ର । ଅଲଙ୍କାର ପ୍ରଧାନତଃ ଦୁଇ ପ୍ରକାରର; ଯଥା—ଶବ୍ଦାଲଙ୍କାର ଏବଂ ଅର୍ଥାଲଙ୍କାର । ନିମ୍ନରେ ଦୃଷ୍ଟାନ୍ତ ସହ କେତୋଟି ଅଲଙ୍କାରର ଆଲୋଚନା କରାଯାଉଛି ।

(୧) ଉପମା—

ସମାନଧର୍ମବିଶିଷ୍ଟ ଭିନ୍ନଜାତୀୟ ଦୁଇଟି ବସ୍ତୁର କୌଣସି ବିଷୟରେ ସାଦୃଶ୍ୟ ପରିକଳ୍ପନାର ନାମ ଉପମା । ଯାହା ସହିତ ତୁଳନା କରାଯାଏ ତାକୁ ଉପମାନ ଏବଂ ଯାହାକୁ ତୁଳନା କରାଯାଏ ତାହାକୁ ଉପମେୟ କୁହାଯାଏ । ଯେଉଁ ସମାନ ଗୁଣ ଥିବାରୁ ଉପମାନ ଓ ଉପମେୟ ମଧ୍ୟରେ ତୁଳନା କରାଯାଏ, ତାହା ସାଧାରଣଧର୍ମ । ଏହାଛଡ଼ା ପରି, ତୁଲ୍ୟ, ଯଥା, ତଥା, ଯେହ୍ନେ, ତେହ୍ନେ ପ୍ରଭୃତି ଶବ୍ଦକୁ 'ଉପମାବାଚକ' ଶବ୍ଦ ବୋଲି କୁହାଯାଇଥାଏ ।

ଉପମା ନାନାପ୍ରକାରର । ତନ୍ମଧ୍ୟରୁ ପୂର୍ଣ୍ଣୋପମା, ମାଳୋପମା ଏବଂ ଲୁପ୍ତୋପମା ଇତ୍ୟାଦି ପ୍ରଧାନ ।

**ପୂର୍ଣ୍ଣୋପମା**—ଉପମା, ଉପମେୟ, ସାଧାରଣ ଧର୍ମ ତଥା ଉପମାବାଚକ ଶବ୍ଦ ଯେଉଁଠାରେ ଏକତ୍ର ଥାଏ, ସେଠାରେ ପୂର୍ଣ୍ଣୋପମା ହୁଏ; ଯଥା—ସହନ୍ତି ଧାରାପାତ ଶୈଳଗଣ, ଖଳ ବଚନ ଯେହ୍ନେ ସହେ ସୁଜନ ।

ଏଠାରେ ଉପମାନ—ସୁଜନ ଉପମେୟ—ଶୈଳ, ସାଧାରଣଧର୍ମ—ସହିବା, ଉପମା-ବାଚକ ଶବ୍ଦ—ଯେହ୍ନେ ।

**ଲୁପ୍ତୋପମା**—ପୂର୍ବୋକ୍ତ ଚାରୋଟି ଉପାଦାନ ମଧ୍ୟରୁ ଏକ ବା ଏକାଧିକ ଉପାଦାନ ଲୁପ୍ତ ହୋଇଥିଲେ, 'ଲୁପ୍ତୋପମା' ହୁଏ । ଯଥା—ଯେବେ ନବଘନ ଶ୍ୟାମ ବଂଶୀସ୍ୱନ କଣୀଥରେ ଥରେ ଶୁଣାଯିବ ।

ଏଠାରେ ଉପମାନ ଏବଂ ଉପମେୟ ଯଥାକ୍ରମେ 'ନବଘନ' ଓ 'ଶ୍ୟାମ'ର ଉଲ୍ଲେଖ ରହିଛି । ମାତ୍ର ଉଭୟଙ୍କ ମଧ୍ୟରେ ଥିବା ସାଧାରଣଧର୍ମ ରମଣୀୟତା କିମ୍ବା କୌଣସି ଉପମାବାଚକ ଶବ୍ଦର ବ୍ୟବହାର କରାଯାଇନାହିଁ । ତେଣୁ ଏହା 'ଲୁପ୍ତୋପମା' ଅଳଙ୍କାର ।

**ମାଳୋପମା**—ଯେଉଁଠାରେ 'ଉପମେୟ' ମାତ୍ର ଗୋଟିଏ ହୋଇଥିବା ସ୍ଥଳେ ଉପମାନ ଏକାଧିକ ହୋଇଥାଏ, ସେଠାରେ 'ମାଳୋପମା' ହୁଏ । ଉଦାହରଣ—

ଆର୍ତ୍ତେ ଭ୍ରମୁଅଛି ଏଣେତେଣେ ମନ
ମଶାରି ଭିତରେ ମଶକ ଯେସନ ।
ଅବା ତରୁଶାଖା ପ୍ରଭଞ୍ଜନ ବଳେ
ଅଥବା ତରଙ୍ଗ ମହୋଦଧି ଜଳେ । (ନନ୍ଦକେଶରୀ)

ଏଠାରେ 'ମନ' ହେଉଛି ଏକମାତ୍ର ଉପମେୟ । ମଶକ, ତରୁଶାଖା, ତରଙ୍ଗ ପ୍ରଭୃତି ଏକାଧିକ ଉପମାନ ସହିତ ତାହାର ତୁଳନା କରାଯାଇଥିବାରୁ ଏହା 'ମାଳୋପମା' ହେଲା ।

(୬) ଉତ୍ପ୍ରେକ୍ଷା—

ସମ୍ଭାବନା ଅର୍ଥରେ ଉତ୍ପ୍ରେକ୍ଷା ଅଳଙ୍କାର ହୋଇଥାଏ । ଏହି ସମ୍ଭାବନା ଯଦି ପ୍ରକୃତ ବା ବର୍ଣ୍ଣନୀୟ ବିଷୟ ସହିତ ଅନ୍ୟ ବସ୍ତୁର ହୋଇଥାଏ, ତେବେ ଏହି ଅଳଙ୍କାର ହୁଏ ।

ରୂପକ ବୋଲି ଯେଉଁ ଅଳଙ୍କାରଟି ରହିଛି, ସେଠାରେ ମଧ୍ୟ ଏହି ସ୍ଥିତିଟି ହୁଏ । ମାତ୍ର ସେଠାରେ ଉପମେୟରେ ଉପମାନର ଅଭେଦ କଳ୍ପନା କରାଯାଇଥାଏ । ଯଥା—ମୁଖପଦ୍ମ; ମାତ୍ର 'ଉତ୍ପ୍ରେକ୍ଷା' ଅଳଙ୍କାରର 'ଉପମେୟ'ରେ 'ଉପମାନ'ର ସମ୍ଭାବନା ମାତ୍ର କରାଯାଇ ଥାଏ ।

ବା, ଯଥେ, ଅବା, ଯିନା, କି ପ୍ରଭୃତି ହେଉଛି ଏହି ଅଳଙ୍କାରର ବାଚକ ଶବ୍ଦ । ଉତ୍ପ୍ରେକ୍ଷା ଦୁଇଭାଗରେ ବିଭକ୍ତ; ଯଥା—ବାଚ୍ୟୋତ୍ପ୍ରେକ୍ଷା ଏବଂ ପ୍ରତୀୟମାନୋତ୍ପ୍ରେକ୍ଷା । ଯେଉଁଠାରେ ଅନ୍ୟାନ୍ୟ ବ୍ୟାପାର ସମାନ ରହି ପୂର୍ବୋକ୍ତ ବାଚକ ଶବ୍ଦ ବ୍ୟବହୃତ ହୋଇଥାଏ, ସେଠାରେ ବାଚ୍ୟୋତ୍ପ୍ରେକ୍ଷା ହୁଏ ଏବଂ ଯେଉଁଠାରେ ଏହି ବାଚକ ଶବ୍ଦର ବ୍ୟବହାର ହୋଇନଥାଏ, ସେଠାରେ ପ୍ରତୀୟମାନୋତ୍ପ୍ରେକ୍ଷା ହୁଏ ।

**ବାଚ୍ୟୋତ୍ପ୍ରେକ୍ଷା—**

ସନ୍ଧ୍ୟାରାଗ ହେଲେ ହ୍ରଦ ହିଲ୍ଲୋଳରସେ
ଆସଇ ଏ ଭାବ ଭାବୁକ ମାନସେ,
ପ୍ରଚେତା-ପ୍ରବାଳ-ପ୍ରାସାଦର ରୁଚି,
ନୀଳ ନୀରୁ ଅବା ଫୁଟି ବାହାରୁଛି । (ଚିଲିକା)

ଏଠାରେ ଚିଲିକାର ସାୟନ୍ତନ ସୌନ୍ଦର୍ଯ୍ୟ ବର୍ଣ୍ଣନା ହିଁ ହେଉଛି ପ୍ରତିପାଦ୍ୟ ବା ପ୍ରକୃତ ବିଷୟ । ତହିଁରେ ଅପ୍ରକୃତ ପ୍ରଚେତା (ବରୁଣ) ପ୍ରବାଳ-ପ୍ରାସାଦ-ସୌନ୍ଦର୍ଯ୍ୟର ସମ୍ଭାବନା କରାଯାଇଅଛି । 'ଅବା' ଶବ୍ଦଟି ପୁଣି 'ବାଚକଶବ୍ଦ' ରୂପରେ ବ୍ୟବହୃତ ହୋଇଛି । ତେଣୁ ଏହା 'ବାଚ୍ୟୋତ୍ପ୍ରେକ୍ଷା' ଅଳଙ୍କାର ।

**ପ୍ରତୀୟମାନୋତ୍ପ୍ରେକ୍ଷା—**

କର୍ତ୍ତବ୍ୟେ ବିମୂଢ଼ ହୋଇ ମହାରାଜ
ରହିଲେ ବିଷମ କଷ୍ଟେ,
ବିସ୍ମରିଲେ ମନେ ଚୂଡ଼ାନ୍ତ ସହସା
ପଶିଗଲା ନାଗକଣ୍ଠେ ।
(ପ୍ରଣୟବଲ୍ଲରୀ)

ଏଠାରେ ରାଜା ଦୁଷ୍ମନ୍ତଙ୍କ ଚୂଡ଼ାନ୍ତକଣ୍ଠନାଗ ସହିତ ତୁଳନା କରାଯାଇଛି । ପୂର୍ବୋକ୍ତ କୌଣସି ବାଚକ ଶବ୍ଦର ବ୍ୟବହାର କରାଯାଇନଥିବାରୁ ଏହା 'ପ୍ରତୀୟମାନୋତ୍ପ୍ରେକ୍ଷା' ଅଳଙ୍କାର ହେଲା ।

**(୩) ଅନୁପ୍ରାସ—**

ସ୍ୱରର ବୈଷମ୍ୟ ଥାଇ ଏକ ବା ଏକାଧିକ ସ୍ୱର ବା ବ୍ୟଞ୍ଜନବର୍ଣ୍ଣ ପୁନଃପୁନଃ ଆବୃତ୍ତ ହେଲେ ଅନୁପ୍ରାସ ଅଳଙ୍କାର ହୁଏ । ଏହା ସାଧାରଣତଃ ପାଞ୍ଚପ୍ରକାରର ହୋଇଥାଏ । ଯଥା—(୧) ଛେକାନୁପ୍ରାସ, (୨) ବୃତ୍ତ୍ୟନୁପ୍ରାସ, (୩) ଶ୍ରୁତ୍ୟନୁପ୍ରାସ, (୪) ଅନ୍ତ୍ୟାନୁପ୍ରାସ, (୫) ଲାଟାନୁପ୍ରାସ ।

**ଛେକାନୁପ୍ରାସ—**ଅନେକ ସ୍ୱର ବା ବ୍ୟଞ୍ଜନବର୍ଣ୍ଣ ଏକାଧିକବାର ଆବୃତ୍ତ ହେଲେ ଏହି ଅଳଙ୍କାର ହୋଇଥାଏ ।

ଦେଖି ନବକାଳିକା ବଳାଳିକାମାଳିକା
ଆଳି କାଳିକାକାନ୍ତ ସ୍ମର,
ରକ୍ଷା କେମନ୍ତେ କରି କରିବା ମନ୍ଦକର
ଗଢିଛି ଏମନ୍ତ ବିସ୍ମର ।

(ଲାବଣ୍ୟବତୀ)

ଏଠାରେ 'ବ' 'ଳ' ଓ 'କ' ଏକାଧିକବାର ଆବୃତ୍ତି ହୋଇଥିବାରୁ 'ଛେକାନୁପ୍ରାସ' ହୋଇଅଛି ।

**ବୃତ୍ତ୍ୟନୁପ୍ରାସ** – ଏକାଧିକ ବ୍ୟଞ୍ଜନବର୍ଣ୍ଣର ସ୍ୱରୂପାନୁସାରୀ ଆବୃତ୍ତି, ସ୍ୱରୂପ ବା କ୍ରମାନୁସାରୀ ବାରମ୍ବାର ଆବୃତ୍ତି, ଏକ ବ୍ୟଞ୍ଜନବର୍ଣ୍ଣର ଏକ ବା ଏକାଧିକବାର ଆବୃତ୍ତି ହୋଇଥିଲେ ବୃତ୍ତ୍ୟନୁପ୍ରାସ ଅଳଙ୍କାର ହୋଇଥାଏ ।

ଉତ୍କଳ କମଳା ବିଳାସ ଦୀର୍ଘିକା,
ମରାଳମାଳିନୀ ନୀଳାମ୍ବୁ ଚିଲିକା ।

(ଚିଲିକା)

ଏଠାରେ ଏକମାତ୍ର ବ୍ୟଞ୍ଜନବର୍ଣ୍ଣ 'ଳ' ବହୁବାର ଆବୃତ୍ତି ହୋଇଥିବାରୁ 'ବୃତ୍ତ୍ୟନୁପ୍ରାସ' ହେଲା ।

**ଶ୍ରୁତ୍ୟନୁପ୍ରାସ** – ତାଳୁ, ଦନ୍ତ, କଣ୍ଠ, ଓଷ୍ଠ ଓ ମୂର୍ଦ୍ଧା—ବାକ୍‌ଯନ୍ତ୍ରର ଏ ସ୍ଥାନମାନଙ୍କ ମଧ୍ୟରୁ ଯେକୌଣସି ସ୍ଥାନରୁ ଉଚ୍ଚାରିତ ବ୍ୟଞ୍ଜନବର୍ଣ୍ଣମାନଙ୍କର ପୁନରାବୃତ୍ତିକୁ 'ଶ୍ରୁତ୍ୟନୁପ୍ରାସ' କହନ୍ତି ।

ପର ପରଜାଙ୍କ ବଶ ହବାଲେ ବଳେ,
ସୁର ସୁରଦ୍ୱେଷୀ ତ୍ରାସେ ବିବଶ ହେଲେ । (ଚିଲିକା)

(ଶବ୍ଦାର୍ଥ ଚିନ୍ତାମଣି)

ଏଠାରେ ପ୍ରଥମ ପାଦରେ ଓଷ୍ଠ୍ୟବର୍ଣ୍ଣ 'ପ' ଓ 'ବ' ର ତଥା ଦ୍ୱିତୀୟ ପାଦରେ ଦନ୍ତ୍ୟବର୍ଣ୍ଣ 'ସ'ର ଶ୍ରୁତିଗ୍ରାହ୍ୟ ପୁନରାବୃତ୍ତି ହୋଇଛି ।

**ଅନ୍ତ୍ୟାନୁପ୍ରାସ**—ପାଦାନ୍ତ ସହିତ ପାଦାନ୍ତ କିମ୍ବା ପଦାନ୍ତ ସହିତ ପଦାନ୍ତର ଧ୍ୱନିଗତ ସାମ୍ୟ ରହିଥିଲେ ଏହି ଅଳଙ୍କାର ହୁଏ । ଏହାକୁ ଉପଧା ମିଳନ ମଧ୍ୟ କୁହାଯାଇପାରେ ।

ନୀଳିମାରେ ବାମା ଶ୍ୱରୁ କେଶପାଶ,
ତୋ ନୀଳ ଛବିକୁ କଲା ଉପହାସ । (ଚିଲିକା)

ଏଠାରେ ପାଦାନ୍ତରେ ଥିବା 'ସ'ର ସସ୍ୱର ଆବୃତ୍ତି ହୋଇଛି ।

**ଲାଟାନୁପ୍ରାସ**—ଶବ୍ଦ ଏବଂ ଅର୍ଥ ବାରମ୍ବାର ଆବୃତ୍ତ ହୋଇ ମଧ୍ୟ ଅନ୍ୱୟପ୍ରାପ୍ତରେ ଭିନ୍ନତା ପ୍ରକାଶ କରୁଥିଲେ ଏହି ଅଳଙ୍କାର ହୋଇଥାଏ ।

କରୁଣା ସାଗର ସାଗରଜା ନାୟକ,
କର ଅଭୟ ଅଭୟ ବର ଦାୟକ,
କଣ୍ଠ ମଣ୍ଡଳ ମଣ୍ଡଳ କଣ୍ଠକ,
କଳମଷ ବାରଣ ବାରଣ ଅନ୍ତକ ।''

(ରସକଲ୍ଲୋଳ)

ଏହି ପଦରେ 'ସାଗର', 'ଅଭୟ', 'ମଣ୍ଡଳ', 'ବାରଣ' ପ୍ରଭୃତି ଶବ୍ଦଗୁଡ଼ିକର ପୁନରୁକ୍ତି ହୋଇଥିଲେ ମଧ୍ୟ ପ୍ରତ୍ୟେକ କ୍ଷେତ୍ରରେ ଅନ୍ୱୟପ୍ରାପ୍ତ ସ୍ୱତନ୍ତ୍ର । ତେଣୁ ଏହା ଲାଟାନୁପ୍ରାସ ହେଲା ।

(୪) **ଯମକ**—

ଭିନ୍ନାର୍ଥକ, ନିରର୍ଥକ କିମ୍ବା ସାର୍ଥକ ସ୍ୱର ଓ ବ୍ୟଞ୍ଜନ ଶବ୍ଦସମୂହର କ୍ରମିକ ଆବୃତ୍ତିକୁ ଯମକ ଅଳଙ୍କାର କୁହାଯାଏ । ଏହା ଆଦ୍ୟ, ମଧ୍ୟ, ପ୍ରାନ୍ତ, ମାଳ, ସର୍ବଯମକ ଭେଦରେ ବହୁପ୍ରକାରର ହୋଇଥାଏ ।

**ଆଦ୍ୟଯମକ**—

ସଲିଲେ ଉଡୁପ ଦେଖରେ ହୋଇଅଛି ଶୋଭନ,
ସଲିଲେ ଉଡୁ ପବଦନ ଖେଳିବାକୁ ମୋ ମନ । (ଲାବଣ୍ୟବତୀ)

ଏଠାରେ 'ସଲି' ଏବଂ 'ଉଡୁପ' ଶବ୍ଦଦ୍ୱୟର କ୍ରମିକ ଆବୃତ୍ତି ହୋଇଥିବାରୁ ଏବଂ ଏହା ପାଦର ଆଦ୍ୟରେ ରହିଥିବାରୁ ଆଦ୍ୟ ଯମକ ହେଲା ।

**ମଧ୍ୟଯମକ**—

ଦେଖରେ ନଳିନୀ ନଳିନୀ ନଳିନରେ ପୂରିତ,
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ । (ଲାବଣ୍ୟବତୀ)

ଏଠାରେ ପ୍ରଥମ ପାଦରେ 'ନଳିନୀ' ଏବଂ ଦ୍ୱିତୀୟ ପାଦରେ 'ଭ୍ରମରେ' ଶବ୍ଦଦ୍ୱୟ ପାଦ ମଧ୍ୟରେ ଏକାଧିକବାର ଆବୃତ୍ତ ହୋଇଥିବାରୁ 'ମଧ୍ୟଯମକ' ହେଲା ।

**ପ୍ରାନ୍ତଯମକ**—

କ୍ଷେପଣୀ କ୍ଷେପଣେ ତୋଟିଣ ସଲିଲେ,
ଖରକର ଉସ୍ର ଉଠିଲା ସଲିଲେ । (ଚିଲିକା)

ଏଠାରେ 'ସଲିଲ' ଶବ୍ଦ ଉଭୟ ପାଦର ପ୍ରାନ୍ତରେ ରହିଥିବାରୁ 'ପ୍ରାନ୍ତଯମକ' ହେଲା ।

**ମାଳଯମକ—**

ବିସ୍ତରଇ ମାଳଯମକରେ କବି ମନେ,
ଭ୍ରମେ ଭ୍ରମ ଭ୍ରମ ଭ୍ରମନେତ୍ରୀ ଯେଣ ବନେ,
ଭୃଙ୍ଗଭାନୁ ଭାନୁ ଭାନୁ ପ୍ରଭ୍ବତାପ ନାହିଁ,
ଭୃତ ତମାଳ ମାଳ ମାଳତୀ ଲତା ମହିଁ ।  (ବୈଦେହୀଶ ବିଳାସ)

ଏଠାରେ ଭିନ୍ନାର୍ଥକ ସମୋଚ୍ଚାରିତ ଶବ୍ଦସମୂହ ମାଳାବଦ୍ଧ ଭାବରେ ରହିଥିବାରୁ ଏହା 'ମାଳଯମକ' ହେଲା ।

**ସର୍ବଯମକ—**

ଅହିମକର ତାପ ନାଶେ
ଶୋଭି ସାରସ ଚନ୍ଦେ,
ଅହିମକର ତାପ ନାଶେ
ଶୋଭି ସାରସ ଚନ୍ଦେ ।  (ଲାବଣ୍ୟବତୀ)

ଏଠାରେ 'ଭିନ୍ନାର୍ଥକ' ସମୋଚ୍ଚାରିତ ଶବ୍ଦସମୂହ କ୍ରମିକ ଭାବରେ ଆବୃତ ହୋଇଥିବାରୁ ଏହା ସର୍ବଯମକ ହେଲା ।

**ଅନୁପ୍ରାସ ଓ ଯମକର ପାର୍ଥକ୍ୟ—**

ଅନୁପ୍ରାସରେ ବର୍ଣ୍ଣର ଆବୃତ୍ତି କ୍ରମରେ ସ୍ଥାନ ସମ୍ପର୍କୀୟ ସେପରି କୌଣସି ନିୟମ ନାହିଁ । ମାତ୍ର ଯମକରେ ଏଥିକ୍ରମରେ ନିର୍ଦ୍ଦିଷ୍ଟ ସ୍ଥାନ ନିର୍ଣ୍ଣିତ କରିଦିଆଯାଇଛି ।

**ବ୍ୟତିରେକ—**

ଉପମାନ ଅପେକ୍ଷା ଉପମେୟର ଆଧିକ୍ୟ କିମ୍ବା ନ୍ୟୂନତା ବର୍ଣ୍ଣିତ ହୋଇଥିଲେ ଏହି ଅଳଙ୍କାର ହୋଇଥାଏ ।

ନୀଳମାରେ ବାମା ଗୁରୁ କେଶପାଶ,
ତୋ ନୀଳ ଶିତକ କଲା ଉପହାସ ।
ତେଣୁ କି ତରଙ୍ଗେ ଅପମାନ ଭରେ,
ଶିର ପିଟୁଥିଲେ ତରଣୀ ପନ୍ତରେ ।  (ଚିଲିକା)

ଏଠାରେ ଉପମାନ ଚିଲିକାର ନୀଳଢେଉ ଏବଂ ଉପମେୟ ହେଉଛି 'ବାମା' (ପଦ୍ମାବତୀ)-ଙ୍କର ଗୁରୁ କେଶପାଶ । ନୀଳଶିତ ଅପେକ୍ଷା ପଦ୍ମାବତୀଙ୍କର କେଶପାଶ ଅଧିକ ରମଣୀୟ ପ୍ରତିପାଦିତ ହୋଇଛି । ଅର୍ଥାତ୍ ଉପମାନ ଅପେକ୍ଷା ଉପମେୟର ଆଧିକ୍ୟ ବର୍ଣ୍ଣିତ ହୋଇଛି । ତେଣୁ ଏହା ବ୍ୟତିରେକ ଅଳଙ୍କାର ହେଲା । ସାଧାରଣତଃ ଉପମାରେ ଉପମେୟ ଅପେକ୍ଷ

ଉପମାନର ଆଧିକ୍ୟ ବର୍ଣ୍ଣିତ ହୋଇଥାଏ । ମାତ୍ର ବ୍ୟତିରେକ ଅଳଙ୍କାରରେ ଉପମେୟକୁହିଁ ଗୁରୁତ୍ୱ ପାଇଥାଏ ।

**ବିଭାବନା—**

କୌଣସି କାରଣ ନ ଥାଇ, କାର୍ଯ୍ୟ ସଂଘଟିତ ହୋଇଥିବାର ସୂଚନା ମିଳିଲେ 'ବିଭାବନା' ଅଳଙ୍କାର ହୋଇଥାଏ । ବର୍ଣ୍ଣନା ଚମତ୍କାରପୂର୍ଣ୍ଣ ଏବଂ ବିରୋଧାତ୍ମକ ହୋଇଥିବା ଆବଶ୍ୟକ ।

ଅନଳ ନୁହଇ ଦେହ ଦହଇ,
ଅସ୍ତ୍ର ନୁହଇ ମରମେ ଭେଦଇ,
ନୁହଇ ତ ଜଳ ବୁଡ଼ାଏ କୂଳ,
ନୁହଇ ମାଦକ କରେ ବିହ୍ୱଳ,
ନୁହଇ ବଡ଼ଶୀ ଗୋ,
ବଳେ ମନ-ମୀନ ନିଏ ଆକର୍ଷି ।

(ବିଦଗ୍‌ଧ ଚିନ୍ତାମଣି)

ଏଠାରେ 'ଅନଳ' (ଦହନ), ଅସ୍ତ୍ର (ଭେଦନ), ଜଳ (ପ୍ଲାବନ), ମାଦକ (ବିହ୍ୱଳ କରିବା), ବଡ଼ଶୀ (ଆକର୍ଷଣ) ପ୍ରଭୃତି ସେମାନଙ୍କର ଯଥାଯଥ ଧର୍ମ ପାଳନ କରିଥିବାର ବର୍ଣ୍ଣିତ ହୋଇନଥିଲେ ହେଁ କାର୍ଯ୍ୟୋତ୍ପତ୍ତି ହୋଇଯାଇଛି । ଅର୍ଥାତ୍ ନିଆଁ ନଥାଇ ମଧ୍ୟ ଦେହ ଦଗ୍‌ଧ ହୋଇଯାଉଛି । ଏହିଭଳି କାରଣ ନଥାଇ କାର୍ଯ୍ୟର ଉତ୍ପତ୍ତି ବର୍ଣ୍ଣିତ ହୋଇଥିବାରୁ ଏହା ବିଭାବନା ଅଳଙ୍କାର ହେଲା ।

(୬) **ବିଶେଷୋକ୍ତି—**

କାରଣ ଥାଇ ମଧ୍ୟ କାର୍ଯ୍ୟର ଉତ୍ପତ୍ତି ନ ହେଉଥିଲେ ବିଶେଷୋକ୍ତି ଅଳଙ୍କାର ହୋଇଥାଏ । ଏହାକୁ ଦୁଇଭାଗରେ ବିଭକ୍ତ କରାଯାଇଛି; ଯଥା—ଉକ୍ତ ଏବଂ ଅନୁକ୍ତ ।

ଘୋଟି କତକ ମୂଳ ଘୋର ଘୋର ଜାଙ୍ଗଲ
ଜହର ଭୁଲେ ତାହା ପିଇଲୁରେ,
ଘୁମାଇବାର ସମ୍ବଳ ନାହିଁକ ଆମ୍ଭ
ସୁଯୋଗୁଁ ସିନା ବଞ୍ଚି ଅଇଲୁରେ ।

(କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ)

ଏଠାରେ ଧୂତୁରା ମୂଳ ଘୋରି ଉଗ୍ର ଆରଣ୍ୟ ଜହର ସହିତ ତାକୁ ମିଶାଇ ପିଇବାର କାର୍ଯ୍ୟଟି ମାତ୍ର ବର୍ଣ୍ଣିତ ହୋଇଛି । ଏହିଭଳି କାର୍ଯ୍ୟର ଏକମାତ୍ର ପରିଣାମ ହେଉଛି ନିଶ୍ଚିତ ମୃତ୍ୟୁ । ମାତ୍ର ବର୍ଣ୍ଣନାରେ ଦେଖାଯାଉଛି ଯେ, ଉଗ୍ରବିଷ ଭକ୍ଷଣ ସତ୍ତ୍ୱେ ସାମାନ୍ୟ ଘୁମାଇବା

କାର୍ଯ୍ୟଟି ମଧ୍ୟ ନିଷ୍ପନ୍ନ ହୋଇନାହିଁ । 'କାରଣ' ଅଛି, 'କାର୍ଯ୍ୟ' ନାହିଁ । ତେଣୁ ଏହା ବିଶେଷୋକ୍ତି ଅଳଙ୍କାର ।

**ବିରୋଧାଭାସ—**

ଜାତି, ଦ୍ରବ୍ୟ, ଗୁଣ ଓ କ୍ରିୟାର ପାରସ୍ପରିକ ବିରୋଧ ପ୍ରତୀୟମାନ ହେଉଥିଲେ, ବିରୋଧାଭାସ ଅଳଙ୍କାର ହୋଇଥାଏ । ଏଠାରେ 'ବିରୋଧ'ର କେବଳ ମାତ୍ର 'ଆଭାସ' ଥାଏ; ଅର୍ଥାତ୍ ପ୍ରକୃତ ବିରୋଧ ନଥାଏ । ଅର୍ଥ ଜଣାପଡିବା ପରେ ଏହାର ଅବସାନ ଘଟେ । ଏହା ଦଶ ପ୍ରକାରର ।

ତରଣୀର ଗତି ସ୍ଥଗିତ ହୋଇଲା
ବଢ଼ିଲା ତରଣି ଗତି,
ଜୀବନ ଛାଡ଼ନ୍ତେ ପୁଳିନ ଆବଳୀ
ହୋଇଲା ସୁକାନ୍ତିମତୀ ।

(ତପୋଭୂମି)

ଏଠାରେ ପ୍ରଥମ ପାଦରେ ତରଣୀର ଗତି ସ୍ଥଗିତ ହେଲା ବୋଲି କହି ପୁନର୍ବାର ତାହାର ଗତି ବୃଦ୍ଧି ପାଇବାର ବର୍ଣ୍ଣନା କରିବା ଏବଂ ପୁଳିନରୁ ଜୀବନ ଛାଡ଼ିଯିବା ପରେ ସୁଦ୍ଧା ତାହା କାନ୍ତିମତୀ ହୋଇ ରହିବା ପ୍ରଭୃତିର ବର୍ଣ୍ଣନା ପରସ୍ପରର ବିରୋଧାତ୍ମକ ମନେହେଉଛି । ମାତ୍ର ପ୍ରଥମ 'ତରଣୀ' ଶବ୍ଦଟିର ଅର୍ଥ ନୌକା ଏବଂ ଦ୍ୱିତୀୟ 'ତରଣି' ଶବ୍ଦଟିର ଅର୍ଥ 'ସୂର୍ଯ୍ୟ' ବୋଲି ଜାଣିଗଲା ପରେ ବିରୋଧର ଅବସାନ ଘଟୁଛି । ସେହିଭଳି 'ଜୀବନ' ଶବ୍ଦଟିର 'ଜଳ' ଅର୍ଥରେ ଗ୍ରହଣ କରିନେଲେ ବିରୋଧର କୌଣସି କାରଣ ରହୁ ନାହିଁ ।

ଆପାତତଃ ଏଠାରେ ଦ୍ରବ୍ୟ ଓ ଗୁଣର ବିରୋଧଭାବ ମାତ୍ର ସୂଚିତ ହୋଇଛି ତଥା ଅର୍ଥାବବୋଧ ପରେ ଏହାର ଅବସାନ ଘଟୁଛି । ତେଣୁ ଏହାକୁ ବିରୋଧାଭାସ ଅଳଙ୍କାର କୁହାଯାଏ ।

# ଇଂରେଜୀରୁ ଓଡ଼ିଆରେ ଅନୁବାଦ

ଅନେକେ ଏହାକୁ Retranslation ବା 'ପୁନଃ ଅନୁବାଦ' ବୋଲି କହୁଥାଆନ୍ତି; ମାତ୍ର ପ୍ରାୟୋଗିକ ଦୃଷ୍ଟିରୁ ଏହା ସମ୍ପୂର୍ଣ୍ଣ ଭୁଲ୍। ଏହାକୁ କେବଳ ମାତ୍ର Translation ବା ଅନୁବାଦ ବୋଲି କହିବାହିଁ ଯୁକ୍ତିସଙ୍ଗତ। ଇଂରେଜୀରୁ ଓଡ଼ିଆରେ ଅନୁବାଦ କରିବା ସହଜ କାମ ନୁହେଁ। ଉଭୟ ଭାଷାରେ ରହିଥିବା ବାକ୍ୟଗଠନଶୈଳୀ, ଶବ୍ଦପ୍ରୟୋଗର ତାତ୍ପର୍ଯ୍ୟ, ବ୍ୟାକରଣଗତ ବୈଶିଷ୍ଟ୍ୟ, ରୂଢ଼ି, ପ୍ରବାଦ ପ୍ରବଚନ ପ୍ରୟୋଗର ମର୍ମ ମଧ୍ୟରେ ଯେଉଁ ବିଶେଷ ପାର୍ଥକ୍ୟ ରହିଛି, ତାହାହିଁ ଅନୁବାଦ କାର୍ଯ୍ୟକୁ କଷ୍ଟସାଧ୍ୟ କରିଛି। ଆକ୍ଷରିକ ଅନୁବାଦ ଅନେକ ସମୟରେ ବିଭ୍ରାନ୍ତିକର ହାସ୍ୟଜନକ ପରିସ୍ଥିତି ସୃଷ୍ଟି କରିଥାଏ। ତେଣୁ ଅନୁବାଦକୁ ଆକ୍ଷରିକ ନକରି ଭାବାନୁଯାୟୀ କରିବାହିଁ ହେଉଛି ଅନୁବାଦକର ପ୍ରଥମ ଏବଂ ପ୍ରଧାନ କାର୍ଯ୍ୟ। ଏହି କାର୍ଯ୍ୟ ନିମନ୍ତେ ଅନୁବାଦକଙ୍କର ଉଭୟ ଭାଷାରେ ଉତ୍ତମ ପ୍ରବେଶ ଥିବା ଏକାନ୍ତ ଆବଶ୍ୟକ। ବିଶେଷକରି ରୂଢ଼ି, ବାକ୍ୟାଂଶ, ପ୍ରବାଦ, ପ୍ରବଚନ, ଲୋକୋକ୍ତି ଏବଂ ବ୍ୟାବହାରିକ ଶବ୍ଦ ସମ୍ପର୍କରେ ପର୍ଯ୍ୟାପ୍ତ ଜ୍ଞାନ ନଥିଲେ ଅନୁବାଦ ନିମନ୍ତେ ଭାବଗ୍ରହଣ କ୍ଷମତା ଆସେ ନାହିଁ। ପ୍ରଥମେ ତେଣୁ ଅନୁବାଦ ନିମନ୍ତେ ଦିଆଯାଇଥିବା ବିଷୟଟିକୁ ଏକାଧିକବାର ପଢ଼ିଯିବା ଆବଶ୍ୟକ। ତା'ପରେ ଉପଯୁକ୍ତ ଚିନ୍ତା ଏବଂ ଶବ୍ଦ ନିର୍ବାଚନ କୌଶଳ ଦ୍ୱାରା ଏହି କାର୍ଯ୍ୟରେ ଅଗ୍ରଗତି କରିବା ବାଞ୍ଛନୀୟ।

ମନେରଖିବାକୁ ହେବ ଯେ, ପ୍ରତ୍ୟେକ ଭାଷାର ରୂଢ଼ି ବା Idiom ପ୍ରୟୋଗରେ ବେଶ୍ କିଛି ସ୍ୱାତନ୍ତ୍ର୍ୟ ରହିଥାଏ। କେବଳ ମାତ୍ର ଆକ୍ଷରିକ ଅନୁବାଦ ଦ୍ୱାରା ଏଗୁଡ଼ିକର ଯଥାର୍ଥ ଭାବ ପ୍ରକାଶିତ ହୋଇପାରେନାହିଁ। ଉଦାହରଣସ୍ୱରୂପ—'Chambal valley is bee-hive of dacoits' ଏହି ଇଂରେଜୀ ବାକ୍ୟଟିକୁ ଅନୁବାଦ କରିବାକୁ ଯାଇ ଯଦି ଲେଖାଯାଏ, "ଚମ୍ବଲ ଉପତ୍ୟକା ଡକାୟତମାନଙ୍କର ଏକ ମହୁଫେଣା" ତାହାହେଲେ ବକ୍ତବ୍ୟ ତ ଆଦୌ ସ୍ପଷ୍ଟ ହେବନାହିଁ; ବରଂ ଏକ ହାସ୍ୟଜନକ ପରିବେଶ ସୃଷ୍ଟି ହେବ। ଏହାର ଭାବାର୍ଥ ଗ୍ରହଣ କରିନେଲେ, ଲେଖିବାରେ ଆଦୌ ଅସୁବିଧା ହେବ ନାହିଁ ଯେ, "ଚମ୍ବଲ ଉପତ୍ୟକା ଡକାୟତମାନଙ୍କର ଏକ ଆଡ୍‌ଡ଼ାସ୍ଥଳ"। ସେହିଭଳି ଇଂରେଜୀ ପ୍ରବାଦ-ପ୍ରବଚନଗୁଡ଼ିକର ଅନୁବାଦ ନିମନ୍ତେ ଓଡ଼ିଆରେ ନିର୍ଦ୍ଦିଷ୍ଟ ଭାବସୂଚକ ପ୍ରବାଦ କିମ୍ବା ପ୍ରବଚନକୁ ନିର୍ବାଚନ କରିନେବା ସର୍ବଥା କାମ୍ୟ; ଯଥା— "tit for tat"ର ପ୍ରକୃତ ଓଡ଼ିଆ 'ଯେସାକୁ ତେସା' କିମ୍ବା 'a little know-

edge is a dangerous thing'ର ପ୍ରକୃତ ଅନୁବାଦ 'ଅଳ୍ପବିଦ୍ୟା ଭୟଙ୍କରୀ'। ସେହିପରି 'look before you leap' ପ୍ରବଚନକୁ ଅନୁବାଦ କରିବାକୁ ଯାଇ ଯଦି ଲେଖାଯାଏ ଯେ 'ଡେଇଁବା ପୂର୍ବରୁ ଆଗକୁ ଦେଖ' ତେବେ ହୁଏତ ଏହା ଦ୍ୱାରା ଭାବ ବ୍ୟାହତ ହେବ ନାହିଁ; ମାତ୍ର 'ହାତେ ମାପି ଗୁଖଣ୍ଡେ ଗୁଲ' କହିଲେ ଭାବର ଯେଉଁ କଳାତ୍ମକ ସୌନ୍ଦର୍ଯ୍ୟ ଫୁଟିଉଠୁଛି ତାହା ପୂର୍ବୋକ୍ତ ଦୃଷ୍ଟାନ୍ତରୁ ବୋଧଗମ୍ୟ ହେବନାହିଁ। ଦ୍ୱିତୀୟ କଥା ହେଉଛି, ଅନୁବାଦ ସମୟରେ ଦୀର୍ଘବାକ୍ୟକୁ ନିଜ ସୁବିଧା ଅନୁସାରେ ଖଣ୍ଡ ଖଣ୍ଡ କରି ଭାଙ୍ଗି ତାହାକୁ ଅନୁବାଦ କରିବାକୁ ହେବ । ଏହାଦ୍ୱାରା ଅନୁବାଦ କାର୍ଯ୍ୟ ସହଜ ହୋଇଯାଏ । ସେହିପରି ଜଟିଳ ଇଂରାଜୀ ବାକ୍ୟରେ ଏକାଧିକ ସମାପିକା କ୍ରିୟା ଥାଇପାରେ । ଅନୁବାଦ ସମୟରେ ଏହାକୁ ଅସମାପିକା କ୍ରିୟାରେ ପରିବର୍ତ୍ତିତ କରାଯାଇ-ପାରେ; ଯଥା—'He was not here, when I came'କୁ 'ମୁଁ ଆସିଲା ବେଳକୁ ସେ ନାହିଁ' ରୂପରେ ଅନୁବାଦ କରାଯାଇପାରେ । ଇଂରାଜୀ ବାକ୍ୟରେ କ୍ରିୟା-ପଦର ଉପସ୍ଥିତି ଏକ ଅବିସମ୍ବାଦିତ ବ୍ୟାପାର । ମାତ୍ର ଓଡ଼ିଆରେ କ୍ରିୟା ଉହ୍ୟ ରଖି ମଧ୍ୟ ସୁନ୍ଦର ବାକ୍ୟ ଗଢାଯାଇପାରେ, ଯଥା—'He is a good orator' ଓଡ଼ିଆରେ 'ସେ ଜଣେ ସୁବକ୍ତା' ଏପରି କହିଲେ ହିଁ ଯଥେଷ୍ଟ ହେବ;—is ନିମନ୍ତେ 'ଅଟନ୍ତି' ଶବ୍ଦର ପ୍ରୟୋଗ ଏଠାରେ ବାହୁଲ୍ୟ ମାତ୍ର ।

ବିଶେଷତଃ ଇଂରେଜୀ ଏବଂ ଓଡ଼ିଆ ଭାଷାର ଶବ୍ଦଯୋଜନା କୌଶଳ ମଧ୍ୟରେ ଯେଉଁ ମୌଳିକ ପାର୍ଥକ୍ୟ ରହିଛି, ସେଗୁଡ଼ିକୁ ଭୁଲିଗଲେ ଆଦୌ ଚଳିବ ନାହିଁ। ଇଂରାଜୀରେ କ୍ରିୟାପଦ କର୍ତ୍ତାର ଠିକ୍ ପରେ କିମ୍ବା କେତେକ କ୍ଷେତ୍ରରେ ପୂର୍ବରୁ ବ୍ୟବହୃତ ହୋଇଥାଏ; ଯଥା—'The cow is a domestic animal'; ମାତ୍ର ଓଡ଼ିଆ ବାକ୍ୟରେ କ୍ରିୟା ପଦଟି ପ୍ରାୟ ବାକ୍ୟ ଶେଷରେ ହିଁ ଆସିବ; ଯଥା—ଗାଈ ଏକ ଗୃହପାଳିତ ପଶୁ ଅଟେ ।

ଏହିପରି ଅନୁବାଦର କେତୋଟି ସାଧାରଣ ନିୟମ ପ୍ରତି ଅନୁବାଦକ ଅବଶ୍ୟ ଦୃଷ୍ଟି ଦେବେ । ମାତ୍ର ଉଭୟ ଭାଷା ସମ୍ପର୍କରେ ସମ୍ୟକ୍ ଜ୍ଞାନ ହିଁ ଅନୁବାଦ କର୍ମରେ ସଫଳତା ଆଣିଦିଏ । ତାହାହିଁ ଭାବଗ୍ରହଣ କ୍ଷମତା ସୃଷ୍ଟିକରେ । ନୀତିନିୟମକୁ ଅନୁସରଣ କରି ଅନୁବାଦ କରିବା ସର୍ବଦା ସମ୍ଭବପର ହୁଏନାହିଁ । ଏପରି କ୍ଷେତ୍ରରେ ଅନୁବାଦକଙ୍କର ଉପସ୍ଥିତବୁଦ୍ଧି ହିଁ କାମରେ ଆସେ ।

ଦୃଷ୍ଟାନ୍ତରୂପେ କେତୋଟି ଆଦର୍ଶ ଅନୁବାଦର ନମୁନା ଦିଆଯାଉଛି ।

( ୧ )

There once lived a cobbler who passed his days in working and singing from morning till night. A neigh-

bour of his, a wealthy man, said to him one day, "How much a year do you earn my friend ?" The cobbler laughed and then replied, "How much a year, Sir ? I never consider it in that way, living as I do from hand to mouth. But somehow each day brings its meal and I am happy." / The wealthy man then said, "I have resolved to place you above the fear of want. Take these hundred rupees, and use them in time of need."

## ଓଡ଼ିଆ ଅନୁବାଦ

ଅନେକ ଦିନ ପୂର୍ବେ ଜଣେ ମୋଚି ଥିଲା । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କେବଳ କାମ କରି ଏବଂ ଗୀତ ଗାଇ ଗାଇ ସେ ନିଜର ଦିନଗୁଡ଼ିକ କଟାଇଦେଉଥିଲା । ଦିନେ ତା'ର ପଡ଼ୋଶୀ ଜଣେ ଧନୀ ବ୍ୟକ୍ତି ତାକୁ କହିଲେ, "ବନ୍ଧୁ ! ତୁମର ବର୍ଷକର ରୋଜଗାର କେତେ ?" ଈଷତ୍ ହସି ମୋଚିଟି ଉତ୍ତର ଦେଲା, "ବର୍ଷକର ରୋଜଗାର କଥା ପଚାରୁଛନ୍ତି ? ମୁଁ ତ ନିତି ଅଣିଲେ ନିତି ଖାଏଁ; ତେଣୁ ସେ ଦୃଷ୍ଟିରୁ ମୁଁ ଘଟଣାଟିକୁ କେବେ ବିଚାର କରି ଦେଖିନାହିଁ । ତେବେ ପ୍ରତ୍ୟେକ ଦିନ କୌଣସିମତେ ମୁଠାଏ ଖାଇବାର ବ୍ୟବସ୍ଥା ହୋଇଯାଏ ଆଉ ସେଥିରେହିଁ ମୋର ଆନନ୍ଦ ।" ତା'ପରେ ଧନୀ ବ୍ୟକ୍ତି ଜଣକ କହିଲେ, "ମୁଁ ତମର ଅଭାବ ଦୂର କରିବାକୁ ସ୍ଥିର କରିଛି । ଏହି ଶହେ ଟଙ୍କା ନିଅ, ଦରକାର ପଡ଼ିଲେ ଖର୍ଚ୍ଚ କରିବ ।"

( ୨ )

Nearly thirty years have rolled by since Charlie Andrews, the great humanitarian who spent himself in the service of India, passed away. The passage of years cannot and should not dim the memory of his vibrant personality. His saintly nature, his passion for serving the poor, relentless war against wrong, injustice and oppression have given his name a rich halo.

ଇତିମଧ୍ୟରେ ଚାର୍ଲି ଆଣ୍ଡ୍ରୁଜ୍‌ଙ୍କ ମୃତ୍ୟୁର ତିରିଶବର୍ଷ ହୋଇଗଲାଣି । ସେ ଜଣେ ମହାନ୍ ମାନବବାଦୀ ଥିଲେ ଏବଂ ଭାରତର ସେବାରେ ନିଜକୁ ପୂର୍ଣ୍ଣରୂପରେ ଉତ୍ସର୍ଗ କରି ଦେଇଥିଲେ । ସମୟର ବ୍ୟବଧାନ ତାଙ୍କର ସେହି ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ସ୍ମୃତିକୁ ନେବେହେଲେ

ମ୍ଳାନ କରିଦେଇ ପାରିବନାହିଁ, କରିବା ଉଚିତ ମଧ୍ୟ ନୁହେଁ । ତାଙ୍କର ସାଧୁ ପ୍ରକୃତି, ଦରିଦ୍ର ଜନତାର ସେବା ନିମନ୍ତେ ତାଙ୍କର ବ୍ୟାକୁଳତା, ଦୋଷତ୍ରୁଟି, ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ତାଙ୍କର ଅକ୍ଳାନ୍ତ ସଂଗ୍ରାମ ହିଁ ତାଙ୍କର ନାମକୁ ଅମର କରି ରଖିଛି ।

( ୩ )

Thus, ever since independence two main aims have guided India's planned development to build up by democratic means a rapidly expanding and technologically progressive economy and a social order based on justice and offering equal opportunity to every citizen.

ଏହିଭଳି ଭାବରେ ସ୍ୱାଧୀନତାପରଠାରୁ ଭାରତବର୍ଷର ଯୋଜନାବଦ୍ଧ ଉନ୍ନୟନ ମୁଖ୍ୟତଃ ଦୁଇଟି ଲକ୍ଷ୍ୟକୁ ଆଖିରେ ରଖି ଆଗେଇ ଚାଲିଛି । ଗଣତାନ୍ତ୍ରିକ ପଦ୍ଧତିରେ ଦ୍ରୁତ ପରିବର୍ଦ୍ଧନଶୀଳ ତଥା ବୈଷୟିକ ବୃଦ୍ଧିରୁ ବିକାଶଶୀଳ ଏକ ଅର୍ଥନୀତିର ନିର୍ମାଣ ଏବଂ ନ୍ୟାୟବୋଧ ତଥା ପ୍ରତ୍ୟେକ ନାଗରିକ ନିମନ୍ତେ ସମାନ ସୁଯୋଗ ସୃଷ୍ଟି କରିପାରୁଥିବା ଏକ ନୂତନ ସାମାଜିକ ମୂଲ୍ୟବୋଧର ପ୍ରତିଷ୍ଠା ହିଁ ହେଉଛି ଏହି ଲକ୍ଷ୍ୟ ।

( ୪ )

"Babu, you have a little girl. I too have one like her in my home. I think of her and bring some fruits for your child—they are not for sale." Saying this, he put his hand inside his big loose robe and brought out a small and dirty piece of paper in near his breast. He showed it to me. A dim palm outline of a child was there on the paper. Rahamat stared at it and his eyes were filled with tears. Immediately he stood up and went away.

"ବାବୁ ! ତମର ଗୋଟିଏ ସାନଝିଅ ଅଛି, ଠିକ୍ ତା'ରି ଭଳି ମୋ ଘରେ ମୋର ମଧ୍ୟ ଗୋଟିଏ ଝିଅ ରହିଛି । ତାହାର କଥା ମନେପକାଇ ମୁଁ ତମ ଝିଅ ପାଇଁ କିଛି ଫଳ ଇତ୍ୟାଦି ନେଇଆସେ—ତାହା ବିକ୍ରି କରିବାକୁ ଆସେ ନାହିଁ ।" ଏତିକି କହି ସେ ତା'ର ହାତକୁ ନିଜ ଢିଲାପୋଷାକ ଭିତରେ ପୁରାଇ ଛାତି ପାଖରୁ ଖଣ୍ଡେ ଅତି ମଇଳା କାଗଜ ଟାଣିଆଣି ମୋତେ ଦେଖାଇଲା । କାଗଜ ଉପରେ ଗୋଟିଏ ପିଲାର ହାତପାପୁଲିର ଅସ୍ପଷ୍ଟ ରେଖାଚିତ୍ର ଦେଖାଯାଉଥିଲା । ତାହା ଆଡ଼କୁ ସତୃଷ୍ଣ ଦୃଷ୍ଟିରେ ଅନାଇ ଅନାଇ ରହମତର ଦୁଇ ଆଖି ଲୁହରେ ଭରିଗଲା । ହଠାତ୍ ସେ ଉଠିପଡ଼ି ବାହାରକୁ ଚାଲିଗଲା ।

( ୫ )

Our Post-master belonged to Calcutta. He felt like a fish out of water in this remote village. His office and living room were in a dark thatched shed, not far from a green pond, sorrounded on all sides by a dense growth. The post-master was a early-riser and very often, sitting on a deck-chair near a window, he stated vacantly towards the blue sky. He had no society, no friend, not even a daily paper to relax.

ଆମର ଏହି ପୋଷ୍ଟମାଷ୍ଟର କଲିକତାବାସୀ । ଏହି ନିପଟ ପଲ୍ଲୀ ଅଞ୍ଚଳରେ ତାଙ୍କର ଅବସ୍ଥା ଥିଲା ସଦ୍ୟ ପାଣିରୁ ଧରାଯାଇଥିବା ମାଛ ଭଳି । ଗୋଟିଏ ଅନ୍ଧାରୁଆ ଚାଳଘରେ ତାଙ୍କର ଅଫିସ୍ ଓ ରହିବା ଘର ନିର୍ଦ୍ଦିଷ୍ଟ ହୋଇଥିଲା । ଘର ଚାରିପଟେ ଘେରି ହୋଇଥିଲା ଘଞ୍ଚ ବୃକ୍ଷବୁଦାଳିଆ ଜଙ୍ଗଲ ଏବଂ ଅଦୂରରେ ଥିଲା ଗୋଟିଏ ଦଳପୂର୍ଣ୍ଣ ପୋଖରୀ । ପୋଷ୍ଟ-ମାଷ୍ଟର ଖୁବ୍ ସକାଳୁ ଉଠିପଡ଼ି ଝରକା ପାଖରେ ଗୋଟିଏ ଚେୟାର ଉପରେ ବସି ଶୂନ୍ୟ-ଦୃଷ୍ଟିରେ ନୀଳ ଆକାଶ ଆଡ଼କୁ ଅନାଇ ରହୁଥିଲେ । ସେଠାରେ ତାଙ୍କର କୌଣସି ବନ୍ଧୁବାନ୍ଧବ, ସମାଜ କିମ୍ବା ମନଭୁଲାଇବା ନିମନ୍ତେ ଦୈନିକ ଖବରକାଗଜ ମଧ୍ୟ ନଥିଲା ।

( ୬ )

After we got independence we in India have been trying to raise our standard of living. Though progress has not been as quick as we could have wished, we have no doubt that; in the last twenty-five years, we have been slowly making our way towards some of our goals. Within this short span of time the entire life style of the Indians have changed. Industrialisation has changed the face of the country. Now stress is given upon agriculture. But rapid increase in our population has become a burning problem for us.

ସ୍ୱାଧୀନତା ପରେ ଆମେ ଆମର ଜୀବନଧାରଣର ମାନ ଉନ୍ନତ କରିବା ନିମନ୍ତେ ସବୁ ପ୍ରକାର ଉଦ୍ୟମ କରୁଛୁ । ଯଦିଓ ଆମର ଆଶାନୁରୂପ ଅଗ୍ରଗତି ହୋଇନାହିଁ—ତେବେ ଏଥିରେ ସନ୍ଦେହ ନାହିଁ ଯେ, ଗତ ପଚିଶବର୍ଷ ମଧ୍ୟରେ ଆମେ ଆମର କେତେକ ଲକ୍ଷ୍ୟ

ଆଡ଼କୁ ମନ୍ଥର ଗତିରେ ଆଗେଇ ଚାଲିଛି । ଏହି ଅଳ୍ପ ସମୟ ମଧ୍ୟରେ ଭାରତୀୟମାନଙ୍କର ଜୀବନ-ଧାରଣରେ ଖାତ ସମ୍ପୂର୍ଣ୍ଣ ଭାବରେ ବଦଳିଯାଇଛି । ଦ୍ରୁତ ଶିଳ୍ପାୟନ ସମଗ୍ର ଦେଶର ରୂପ ବଦଳାଇ ଦେଇଛି । ବର୍ତ୍ତମାନ କୃଷି ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । ମାତ୍ର ଜନସଂଖ୍ୟାର ଦ୍ରୁତ ଅଭିବୃଦ୍ଧି ବର୍ତ୍ତମାନ ଆମ ପାଇଁ ଏକ ଗୁରୁତର ସମସ୍ୟା ହୋଇଛି ।

( ୭ )

During the first seven or eight years of Mrs. Gandhjis's rule, key ministries were headed by most distinguished civil servants. They were by and large clean, courageous and handled their job with ability and discretion. Most in the present crop have become politicised. They are only careerists, some are corrupt. Their mnin qualification is the dirty job they did during the Emergency. The best have been pushed into unimportant jobs lest they should prove to be independent. They themselves would have looked odd in the present atomosphere.

ଶ୍ରୀମତୀ ଗାନ୍ଧୀଙ୍କ ଶାସନର ପ୍ରଥମ ଆଠବର୍ଷ ଗୁରୁତ୍ୱପୂର୍ଣ୍ଣ ମନ୍ତ୍ରଣାଳୟଗୁଡ଼ିକର ମୁଖ୍ୟ ଥିଲେ ଜଣାଶୁଣା ବିଶିଷ୍ଟ ରାଜକର୍ମଚାରୀମାନେ । ମୋଟାମୋଟି ଭାବରେ ସେମାନେ ଥିଲେ ନିଷ୍କଳଙ୍କ, ସାହସୀ ଏବଂ ନିଜନିଜର ଦାୟିତ୍ୱକୁ ସେମାନେ ଦକ୍ଷତା ତଥା ବିଚାରଶୀଳତା ସହ ତୁଲାଇଥିଲେ । ବର୍ତ୍ତମାନର କର୍ମଚାରୀମାନଙ୍କ ମଧ୍ୟରୁ ଅଧିକାଂଶ ଅଧିମାତ୍ରାରେ ରାଜନୀତିଗ୍ରସ୍ତ ହୋଇପଡ଼ିଛନ୍ତି । ରାଜନୀତି କେବଳ ସେମାନଙ୍କର ବୃତ୍ତି ହୋଇଛି, ଏମାନଙ୍କ ମଧ୍ୟରୁ କେତେକ ଦୁର୍ନୀତିଗ୍ରସ୍ତ ମଧ୍ୟ । ଜରୁରୀକାଳୀନ ପରିସ୍ଥିତି ସମୟରେ ସେମାନେ ଯେଉଁ ସବୁ କୁତ୍ସିତ କାର୍ଯ୍ୟ କରୁଥିଲେ, ତାହାହିଁ ହୋଇଛି ସେମାନଙ୍କର ସର୍ବଶ୍ରେଷ୍ଠ ଯୋଗ୍ୟତା । ସଚ୍ଚୋଟ କର୍ମଚାରୀମାନେ କାଳେ ସ୍ୱାଧୀନ ବିଚାରଧାରାରେ କାମ କରିବେ ଏହି ଆଶଙ୍କାରେ ସେମାନଙ୍କୁ ଅନୁଲ୍ଲେଖ କର୍ମ ଆଡ଼କୁ ଠେଲିଦିଆଯାଇଛି । ବର୍ତ୍ତମାନର ପରିବେଶରେ ସେମାନେ ନିଜେ ମଧ୍ୟ କିଭଳି ଦେଖାଯାଇଥାଆନ୍ତେ ।

( ୮ )

Victorious people are even more dangerous than defeated people. When there is nobody to defeat they will defeat their own leaders. Victory is like tasting

blood. Look at the history of victorious leaders of the world. People pushed Caeser unceasingly to win lourels, but when he ran short of them, they stabbed him to death. Alexandr was forced into marching thousands of miles on foot through hostile lands and climates for more blood for his people. Finally he contracted foreign disease and died in a dingy boat and his people hailed the next hero. Napoleon had to win battle after battle to satiate his people's hunger for victory.

ବିଜୟୀ ଜନଗୋଷ୍ଠୀ ପରାଜିତ ଜନଗୋଷ୍ଠୀ ଅପେକ୍ଷା ଅଧିକ ବିପଜ୍ଜନକ । ଯେତେବେଳେ ପରିତୃପ୍ତ କରିବାକୁ ଅନ୍ୟ କାହାକୁ ନପାଆନ୍ତି, ସେତେବେଳେ ସେମାନେ ନିଜର ନେତାଙ୍କୁ ପରିତୃପ୍ତ କରନ୍ତି । ବିଜୟର ସ୍ୱାଦ ରକ୍ତର ସ୍ୱାଦ ଭଳି । ପୃଥିବୀର ବିଜୟୀ ନେତାମାନଙ୍କର ଇତିହାସ ଆଡ଼େ ଦୃଷ୍ଟି ଦେଖ । ଏଥି ଲୋକେ ସିଜର୍‌ଙ୍କୁ ଅବିଶ୍ରାନ୍ତ ଭାବେ ବିଜୟୀ ହେବା ନିମନ୍ତେ ପ୍ରୋତ୍ସାହିତ କରିଥିଲେ; ମାତ୍ର ଯେତେବେଳେ ସେ ତାହା କରିନପାରିଲେ, ସେତେବେଳେ ସେମାନେ ତାଙ୍କୁ ଛୁରିକାବିଦ୍ଧ କରି ହତ୍ୟାକଲେ । ନିଜ ଲୋକଙ୍କର ରକ୍ତତୃଷ୍ଣା ମେଣ୍ଟାଇବା ନିମନ୍ତେ ଆଲେକ୍‌ଜାଣ୍ଡର ଶତ୍ରୁଭାବାପନ୍ନ ରାଜ୍ୟ ଏବଂ ପ୍ରତିକୂଳ ଜଳବାୟୁ ମଧ୍ୟଦେଇ ହଜାର ହଜାର ମାଇଲ ପାଦରେ ଚାଲି ଯୁଦ୍ଧଯାତ୍ରା କଲେ । ପରିଣାମରେ ସେ ଏକ ବିଦେଶୀୟ ରୋଗରେ ପୀଡ଼ିତହୋଇ ଅସହାୟ ଭାବରେ କ୍ଷୁଦ୍ର ଏକ ନୌକାରେ ପ୍ରାଣତ୍ୟାଗ କଲେ, ଆଉ ତାଙ୍କର ଲୋକମାନେ ଅନ୍ୟ ଏକ ନେତାର ପତାକା ତଳେ ଯାଇ ଠିଆହେଲେ । ନିଜ ଲୋକଙ୍କର ବିଜୟ-କ୍ଷୁଧାକୁ ତୃପ୍ତ କରିବା ନିମନ୍ତେ ନେପୋଲିୟନଙ୍କୁ ଯୁଦ୍ଧ ପରେ ଯୁଦ୍ଧ ଜିଣିବାକୁ ହୋଇଥିଲା ।

# ରୁଢି ଓ ବାକ୍ୟାଂଶ ପ୍ରୟୋଗ

## ( Idioms & Phrases )

ପ୍ରତୀକାତ୍ମକ ଭାଷାର ବ୍ୟବହାର ମନୁଷ୍ୟର ଏକ ଅତି ପ୍ରାଚୀନ ଅଭ୍ୟାସ । କୁହାଯାଏ ଯେ, କହିଜାଣିଲେ କଥା ସୁନ୍ଦର । ସୁନ୍ଦର ଭାବରେ ବକ୍ତବ୍ୟକୁ ଉପସ୍ଥାପନ କରିବା ହେଉଛି ଏକ ବିଶେଷ କଳା । ଏଥିନିମନ୍ତେ ହିଁ କଥାରେ ଅଳଙ୍କାର, ପ୍ରତୀକ ଇତ୍ୟାଦିର ବ୍ୟବହାର କରାଯାଇଥାଏ ।

ପ୍ରତ୍ୟେକ ଭାଷାରେ କ୍ଷେତ୍ରବିଶେଷରେ ଶବ୍ଦ ପ୍ରୟୋଗ ନିମନ୍ତେ କେତେକ କୌଶଳ ଗ୍ରହଣ କରାଯାଏ । ସେଠାରେ କେବଳ ମାତ୍ର ଶବ୍ଦପୁଞ୍ଜର ଆକ୍ଷରିକ ଅର୍ଥ ଗ୍ରହଣ କଲେ ଅର୍ଥାବବୋଧ ହୋଇପାରେ ନାହିଁ କିମ୍ବା ବାକ୍ୟର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ମଧ୍ୟ ଧରାପଡ଼େ ନାହିଁ । ସେଭଳି କ୍ଷେତ୍ରରେ ଶବ୍ଦାବଳୀର ବିଶେଷ ଅର୍ଥକୁ ଗ୍ରହଣ କରିନେବାକୁ ହେବ । ଏହାକୁ ହିଁ ସେହି ଭାଷାର 'ରୁଢ଼ି' ପ୍ରୟୋଗ ବୋଲି ବୁଝିବାକୁ ହେବ । ଉଦାହରଣ-ସ୍ୱରୂପ—ଅକାଳ କୁଷ୍ମାଣ୍ଡ, ଏହାର ଆକ୍ଷରିକ ଅର୍ଥ 'ଅସମୟରେ ଜାତ ପାଣିକଖାରୁ' । ମାତ୍ର ଏହି ଅର୍ଥ ସହିତ ତାହାର ବ୍ୟାବହାରିକ ଅର୍ଥର କୌଣସି ସମ୍ପର୍କ ନାହିଁ । ଏଠାରେ କୌଣସି 'କୁଳପାଂଶୁଳ ପୁତ୍ର' ନିମନ୍ତେ ହିଁ ଶବ୍ଦଟି ପ୍ରଯୁକ୍ତ ହୋଇଛି । ହୁଏତ ଅକାଳ ଜାତ କୁଷ୍ମାଣ୍ଡର କ୍ଷତିକାରକ ଶକ୍ତିକୁ ଆଖି ଆଗରେ ରଖି ଏହିଭଳି ଏକ ଶବ୍ଦ ନିର୍ବାଚନ କରାଯାଇଛି । ମନେରଖିବାକୁ ହେବ ଯେ, ମୂର୍ଖ ବା ଚରିତ୍ରହୀନ ପୁତ୍ର ନିମନ୍ତେ ଶବ୍ଦଟିର ବ୍ୟବହାର ମଧ୍ୟରେ ଯେଉଁ କଳାତ୍ମକ ସୌନ୍ଦର୍ଯ୍ୟ ରହିଛି, ତାହା 'ପାଣିକଖାରୁ' ପ୍ରୟୋଗରେ ନାହିଁ । ପ୍ରତ୍ୟେକ ଭାଷାରେ ଏହିଭଳି ଶତ ଶତ ଶବ୍ଦ ରହିଛି । ନିମ୍ନରେ ଓଡ଼ିଆ ଭାଷାରେ ବ୍ୟବହୃତ କେତେକ ରୁଢ଼ିର ଉଦାହରଣ ଦିଆଯାଉଛି ।

(୧) ଅନ୍ଧର ଲଉଡ଼ି—(ଏକମାତ୍ର ଅବଲମ୍ବନ ଲଉଡ଼ି ବା ବାଡ଼ି ଖଣ୍ଡିକ ଯେଉଁଭଳି ଅସହାୟ ଅନ୍ଧର ଏକମାତ୍ର ସମ୍ବଳ ଠିକ୍ ସେହିଭଳି) ପ୍ରଥମ ପୁଅଟି ମରିଗଲା ପରେ ଏଇଟି ଏବେ ବାପମା'ଙ୍କର ଅନ୍ଧର ଲଉଡ଼ି ହୋଇଛି ।

(୨) ଅକଲ ସଲମି—(ଠିକଣା ଜବାବ୍) ବାପା ମନା କରୁଥିଲେହି, ମୁଁ ମିଛଟାରେ କଟକ ଯାଇ ଯେଉଁ ଅକଲ ସଲମି ପାଇଛୁ, ତାହା ଭୂଲ ପାରିବ ନାହିଁ ।

(୩) ଅକସ ରଖିବା—(ରାଗ ରଖିବା) ଜମିଦାର ମୋ ଉପରେ ଯେଉଁ ଅକସ ରଖିଛୁ ନା, ବାଗ ପାଇଲେ ମୋତେ ତଲ୍ଲତଲାନ୍ତ କରିଦେବ ।

(୪) ଅଲଣା କଥା—(ପାରମ୍ପହୀନ କଥା) ରୁ ସେ ଅଲଣା କଥାରୁ କଣ ପାଇବୁ, ବାଟେ ବାଟେ ଘରକୁ ଯାଆ ।

(୫) ଅନ୍ଧ ଦେଶରେ ଦର୍ପଣ ବିକିବା—(ମୂର୍ଖ ପାଖରେ ଜ୍ଞାନର ମହତ୍ତ୍ୱ ବର୍ଣ୍ଣନା କରିବା) ହଂସା ଯାହାର ଆଦର୍ଶ ତାକୁ ଅହିଂସା କଥା କହିଲେ ଲାଭ କ'ଣ ? ଖାଲି ଅନ୍ଧ ଦେଶରେ ଦର୍ପଣ ବିକିବା ଭଲ ହେବ କିନା !

(୬) ଅନ୍ଧ ଗୁହାମଣି (ଅନ୍ୟାୟ ବିଗ୍ରହ) ଶାସକମାନଙ୍କ ଅନ୍ଧ ଗୁହାମଣି ଶାସନ କାଳରେ ବହୁ ବିଭ୍ରାଟ ସୃଷ୍ଟି କରୁଛି ।

(୭) ଅଗ୍ନିଶର୍ମା ହେବା—(କ୍ରୁଦ୍ଧହେବା) ପୁଅର କୁକର୍ମ ସମ୍ବାଦ ପାଇ ପିତା କ୍ରୋଧରେ ଅଗ୍ନିଶର୍ମା ହୋଇଉଠିଲେ ।

(୮) ଅଠା ବୋଳିଦେବା—(ଦୋଷ ଲଦିଦେବା) ଦୋଷ କଲା କିଏ ଅଥଚ ଅଠା ବୋଳାହେଲା କାହା ମୁଣ୍ଡରେ ?

(୯) ଅଠା କାଠିରେ ପଡ଼ିବା—(ଅସୁବିଧାରେ ରହିବା) ବାବୁ ଘରକୁ ଆସିଲା ଦିନଠାରୁ ବିଚରା ଗୁରୁତି ଅଠାକାଠିରେ ପଡ଼ିଛି । ଦଣ୍ଡକପାଇଁ ହେଲେ ଘରୁ ବାହାରିପାରୁନାହିଁ ।

(୧୦) ଅରଣ୍ୟ ରୋଦନ—(ନିଷ୍ଫଳ ପ୍ରାର୍ଥନା) ସେ ଏତେ କରି କହିଲେ, ଏତେ ଗୋଡ଼ ହାତ ଧରିଲେ, ମାତ୍ର ତାଙ୍କର ସବୁ ଚେଷ୍ଟା ଅରଣ୍ୟ ରୋଦନରେ ପରିଣତ ହେଲା ।

(୧୧) ଅହିନକୁଳ ସମ୍ପର୍କ—(ଘୋର ଶତ୍ରୁତା) ଗୋପାଳର ତ ବନ୍ଧୁ ସାଙ୍ଗରେ ଅହିନକୁଳ ସମ୍ପର୍କ ସେ ପଞ୍ଚାୟତରେ ପାଶ୍ କରନ୍ତା କେମିତି ?

(୧୨) ଅଇଁଠାଗଛକୁ ବାଇଗଣ ଫିଙ୍ଗିବା—(ବୃଥା ପରିଶ୍ରମ କରିବା) ଆରେ ବାବୁ ? ଅଣ୍ଟା ଭିଡ଼ି କାମରେ ଲାଗ—ଖାଲି ଅଇଁଠାଗଛକୁ ବାଇଗଣ ଫିଙ୍ଗିଦେଇ ବସିଲେ କାମ ଚଳିବ ?

(୧୩) ଅପାଳକ ରାଇଜକୁ ବଜୁଲା ଲକ୍ଷେ ଟଙ୍କା—(ସାମାନ୍ୟ ବିଷୟ ପ୍ରାଧାନ୍ୟ ଲାଭ କରିବା) ମଦନ ତାଙ୍କ ଗାଆଁରେ ପ୍ରଥମ କରି କଲେଜରେ ପଢ଼ିଲା - କଥାଟା ଅପାଳକ ରାଇଜକୁ ବଜୁଲା ଲକ୍ଷେ ଟଙ୍କା ଭଳି ।

(୧୪) ଅଗମ୍ଭୂଲ—(ସାରବସ୍ତୁର ଅଭାବ) ଘଟଣାଟା ଯେମିତି ଘଟିଗଲା, ମୁଁ ତ ସେଥିରୁ ଅଗମ୍ଭୂଲ କିଛି ପାଇଲିନାହିଁ ।

(୧୫) ଆଖି ବୁଜିବା—(ମୃତ୍ୟୁ ବରଣ କରିବା) ସମସ୍ତେ ଖାଲି ମୋ ଆଖି ବୁଜିବାକୁ ଗୁହିଁ ବସିଛନ୍ତି !

(୧୬) ଆଖି ଫଟେଇବା—(ଲୋଭ କରିବା) ମୋର ଏଇ ସାମାନ୍ୟ ଜମି ଖଣ୍ଡକ ଉପରେ ଆଖି ପକାଉଛ କାହିଁକି ?

(୧୭) ଆଖିଦେବା—(ଈର୍ଷା କରିବା) ଖାଲି ଆଖି ଦେଇ ଦେଇ ସବୁ ପିଲାଙ୍କୁ ଏମିତି କରି ପକାଇଲେ !

(୧୮) ଆଖି ରଖିବା—(ଦୃଷ୍ଟି ଦେବା) ମୁଁ ଦିନ ଗୃରିଟାରେ ଲେଉଟି ଆସିବି—ଆମ ଘର ଟିକଏ ଆଖି ରଖିଥିବ ।

(୧୯) ଆଖି ପାଇବା—(ଧାରଣା କରିବା) କାହିଁ କେତେ ବାଟରେ ବରୋଦା ସହର—କେ ଯେ ଏବେ ସେଠିକି ଆଖି ପାଉଛି ?

(୨୦) ଆଖିରେ ଧୂଳି ଦେବା—(କୌଶଳରେ ଠକିଦେବା) କ'ଣ କହିବ ତା' କଥାକୁ, ଦେଖୁ ଦେଖୁ ଆଖିରେ ଧୂଳି ଦେଇ ଛତା ଖଣ୍ଡିକ ନେଇ ଗଲା ।

(୨୧) ଆଖି ଦେଖେଇବା—(ଭୟ ଦେଖେଇବା) ତୁ ଯେତେ ଆଖି ଦେଖେଇଲେ ସେ କ'ଣ ଡରିବା ପିଲା ହୋଇଛି ?

(୨୨) ଆକାଶ କଇଁଆ—(ଅସମ୍ଭବ କଥା) ଆକାଶ କଇଁଆ ଚଲିବାମାତ୍ରେ ଏଠାରେ ହେବ ନା ଏ କଥା ଘଟିବ ?

(୨୩) ଆ ବଳଦ ମତେ ବାନ୍ଧ (ବିପଦକୁ ନିମନ୍ତ୍ରଣ କରିବା) ସେ ଠକଟା ପାଇଁ ଜାମିନ୍ ହୋଇ ମୁଁ କଣ 'ଆ ବଳଦ ମତେ ବାନ୍ଧ' ଭଳି ହେବି ?

(୨୪) ଆଗତ ଚଢ଼େଇକି ବେସର ବାଟା—(ଅନିଶ୍ଚିତ ଭବିଷ୍ୟତ୍ ନିମନ୍ତେ ସତର୍କ ପ୍ରସ୍ତୁତ) ସେ କେଉଁକର ଆଉ ମୁଁ କେଉଁକର—ତାଙ୍କ ସାଙ୍ଗରେ କେବେ ବନ୍ଧୁତା ହେବ ବୋଲି କ'ଣ ମୁଁ ଆଗତ ଚଢ଼େଇକି ବେସର ବାଟି ବସିବି ?

(୨୫) ଉଷୁନା ଧାନ ଗଜା ହେବା—(ଅସମ୍ଭବ ସମ୍ଭବ ହେବା) ସତେ ଉଷୁନା ଧାନ ଗଜା ହେବ – ପୁଅ ମୋର ଆଖିମେଲି ଗୃହିଁବ ?

(୨୬) ଉପରେ ପଡ଼ିବା—(ଅକାରଣରେ ମୁଣ୍ଡ ପୂରାଇବା) ତା'ର ମୋର ତ କଥା ପଡ଼ିଛି, ତୁ ଉପରେ ପଡ଼ି ଚଟ୍ ଚଲେଇଛୁ କାହିଁକି ?

(୨୭) ଏ ଘର ମାଉସୀ ସେ ଘର ପିଉସୀ—(ଉଭୟ ପକ୍ଷ ସହିତ ଯୋଗାଯୋଗ ରଖି ସେମାନଙ୍କର ମଧ୍ୟରେ କଳହ ସୃଷ୍ଟି କରାଇବା) ତା କଥା କାହିଁକି କହୁଚୁ—ସେ ତ ଏ ଘରର ମାଉସୀ, ସେ ଘର ପିଉସୀ !

(୧୮) ଏ କାନରେ ପୁରାଇ ସେ କାନରେ ବାହାର କରିବା—(ଆଦୌ ଗୁରୁତ୍ୱ ନ ଦେବା) ସେ ତ ମୋ କଥାକୁ ଏ କାନରେ ପୁରାଇ ସେ କାନରେ ବାହାର କରିଦେଉଛି—ମୁଁ ତାକୁ କ'ଣ କହିବି ?

(୨୯) ଏକା ମାଘକେ ଶୀତ ଯିବା—(ପୁଣି ସୁଯୋଗ ଆସିବା) ଏତେ ବ୍ୟସ୍ତ ହେଉଛୁ କାହିଁକି ? ଏକା ମାଘକେ କୋଉ ଶୀତ ଯାଉଛି—ସମସ୍ତ ଆୟୁ ତାକୁ ଦେଖିବା ।

(୩୦) ଓଳିଆରୁ ପଡ଼ି ଗଜା—(ଅତି ଧୂର୍ତ୍ତ) ଏ କାଳିକାଲି ପିଲାଙ୍କ କଥା ମୋତେ କହନା—ସେମାନେ ତ ଓଳିଆରୁ ପଡ଼ି ଗଜା !

(୩୧) ଓର ଉଣ୍ଡିବା—(ସୁବିଧା ଖୋଜିବା । ଚୋରର ତ ଓର ଉଣ୍ଡୁଥିଲା—କେମିତି ସେ ଘରୁ ଗୋଡ଼ କାଢ଼ିଛନ୍ତି, କଲାକନା ବୁଲାଇଦେଲା ।

(୩୨) ଔଷଧ ଘରରେ ତାଟିଆ କାମୁଡ଼ିବା—(ଜଣକର ଅପରାଧ ନିମନ୍ତେ ଅନ୍ୟ ଉପରେ କ୍ରୋଧ ପ୍ରକାଶ କରିବା) ନିର୍ବାଚନରେ ହାରିଯିବା ପରେ ନାରାୟଣବାବୁ ତ ଖାଲି ଔଷଧ ଘରରେ ତାଟିଆ କାମୁଡ଼ୁଛନ୍ତି ।

(୩୩) କଂସାରି ଘରର ପାରା—(ଅତି ଚତୁର ମୋତେ ବୁଦ୍ଧି ଶିଖାନା) ମୁଁ କଂସାରି ଘରର ପାରାଟି—ମୋ ଆଗରେ ତୁ ପୁଣି କୁଳ ଡାଉଁ ଡାଉଁ କରୁଛୁ ?

(୩୪) କପାଳ ଫାଟିବା
କପାଳ ପୋଡ଼ିବା } (ସର୍ବନାଶ ହେବା) ତା'ରତ ଜାଣ କପାଳ ଫାଟିଚ, କଏ ତାକୁ ସାହା ହେବ ?

(୩୫) କପାଳ ଫିଟିବା—ସୌଭାଗ୍ୟୋଦୟ ହେବା) ତାର ତ ଏବେ କପାଳ ଫିଟିଚ, ଧୂଳି ମୁଠାଏ ଧରିଲେ ସୁନା ମୁଠାଏ ହେଉଚ ।

(୩୬) କାଠିକର ପାଠ—(କଷ୍ଟସାଧ୍ୟ) ଅଙ୍କରେ ପାସ୍ କରିବା ମୋ ପକ୍ଷରେ କାଠିକର ପାଠ ।

(୩୭) କାନରେ ହାତ ଦେବା—(ବିସ୍ମିତ ହେବା) ପିଲା ବୋଲି ଏତେ ଟିକଏ, ତା' କଥା ଶୁଣି ତ ମୁଁ କାନରେ ହାତ ଦେଲି !

(୩୮) କାମରେ ହାତ ଦେବା—(କାମ ଆରମ୍ଭ କରିବା) ଏଇ ତ ପ୍ରଥମେ ମୁଁ ଏ କାମରେ ହାତ ଦେଇଛି, ଦେଖା ଯାଉ କ'ଣ ହେଉଛି ।

(୩୯) କାନ୍ଧ ଲଗେଇବା—(ସାହାଯ୍ୟ କରିବା) ମୋ ଭାଇମାନେ କାନ୍ଧ, ଲଗେଇ-ଦେଲାରୁ କାମଟି ସୁରୁଖୁରୁରେ ଉଠିଗଲା ସିନା !

(୪୦) କଳା କାଠ ପଡ଼ିଯିବା—(ଶୁଖିଲା ଦେଖାଯିବା)—ସ୍ୱଜନ ସନ୍ଧାନରେ ବୁଲି ବୁଲି ପିଲାଟା କଳା କାଠ ପଡ଼ିଗଲାଣି ।

(୪୧) କାଠ ହୋଇଯିବା—(ସ୍ତମ୍ଭୀଭୂତ ହୋଇଯିବା) କ'ଣ ତୁ କହୁଚୁରେ ? ସତରେ କ'ଣ ମୋହନବାବୁ ଚାଲିଗଲେ ? ମୁଁ ତ ଶୁଣିଲା ବେଳୁ କାଠ ହୋଇଗଲିଣି ।

(୪୨) କଳାକନା ବୁଲେଇବା—(ସର୍ବସ୍ୱ ଅପହରଣ କରିନେବା) ଚୋର ତାଙ୍କ ଘରେ କଳାନା ବୁଲେଇ ଦେଇ ଯାଇଛି ପରା !

(୪୩) କେଉଣ୍ଡି ଗୁଣ୍ଡି ବାଳିଆ ଧରିବା—(ସାମାନ୍ୟ ବ୍ୟୟରେ ପ୍ରଚୁର ଲାଭ କରିବା) ତାଙ୍କ କଥା କାହିଁକି ପଚାରୁଚ—ସେ ତ କେଉଣ୍ଡି ଗୁଣ୍ଡି ବାଳିଆ ଧରିବା ଲୋକ !

(୪୪) କୁହୁଡ଼ି ପହଁରିବା—(ବୃଥା ଶ୍ରମ କରିବା) ମୁଁ କହୁଚି, ଏ କଥା ହେବାର ନୁହେଁ, ଉଚ୍ଛାନାରେ କୁହୁଡ଼ି ପହଁରୁଚ କାହିଁ ?

(୪୫) କଥା ତଳେ ନପକାଇବା—(ଆଦେଶ ଅମାନ୍ୟ ନ କରିବା) । ତାକୁ ଟିକିଏ ମୋ ପାଖକୁ ଡାକିଦେଲୁ—ସେ କେବେ ମୋ କଥା ତଳେ ପକେଇବ ନାହିଁ ।

(୪୬) କଣ୍ଟା ବାଡ଼ରେ ଲୁଗା ପକାଇ କଳି କରିବା—(ବିନା କାରଣରେ କଳି କରିବା) ସେ କଳିହୁଡ଼ୀଟାର କଥାକଥାକେ କଣ୍ଟା ବାଡ଼ରେ ଲୁଗା ପକେଇ କଳିକରିବା ଅଭ୍ୟାସ ।

(୪୭) କଟା ଘା'ରେ ଚୂନ ଦେବା (ଦୁଃଖ ଉପରେ ଦୁଃଖ ଦେବା) ବହୁତ କହିଲଣି—ଆଉ କଟା ଘା'ରେ ଚୂନ ଦିଅ ନାହିଁ ।

(୪୮) କୁଟା ଖଣ୍ଡକ ଦି'ଖଣ୍ଡ ନ କରିବା—(ଟିକିଏ ହେଲେ ପରିଶ୍ରମ ନ କରିବା) ହାସ ଭଲ ଲୋକଟା, କୁଟା ଖଣ୍ଡକ ଦି'ଖଣ୍ଡ କରିବାକୁ ନାହିଁ—ଏଣେ ଖାଇଲା ବେଳକୁ ଆଗ ।

(୪୯) ଖାଲରେ ପକାଇବା—(ବିପଦରେ ପକାଇବା) ମୁଁ କ'ଣ ଜାଣିଥିଲି, ସେ ମୋତେ ଏମିତ ଖାଲରେ ପକାଇ ଦେବ ବୋଲି ?

(୫୦) ଖାଲ ଖୋଳିବା—(ବିପଦ ସୃଷ୍ଟି କରିବା) ହେ ଭଗବାନ୍, ଯିଏ ମୋ ପାଇଁ ଖାଲ ଖୋଳୁଚ, ତା' କଥା ତୁଇ ବୁଝିବୁ ।

(୫୧) ଖିଅ କାଢ଼ିବା—(ଦୋଷ ବାହାର କରିବା) ଏଇ ସାମାନ୍ୟ କଥାରୁ କେତେ ଖିଅ କାଢ଼ିବୁ ?

(୫୨) ଖଣ୍ଡା ଧାରରେ ଚାଲିବା—(ଅତ୍ୟନ୍ତ ସାବଧାନ ହେବା) ମୋ ସାଙ୍ଗରେ ସେମିତ ଲଗନ କହୁଛୁ—ମୁଁ ଖଣ୍ଡା ଧାରରେ ବାଟ ଚାଲିବା ଲୋକ ।

(୫୩) ଖୋଜ ଉଣ୍ଡିବା—(ପଦେ ପଦେ ଜଗିବା) ତୁ ତ ମୋ ଖୋଜ ଉଣ୍ଡିବାକୁ ଅନେଇ ବସିଚୁ—ତତେ ଅଜଣା କ'ଣ ?

(୫୪) ଗୋଡ଼ ଟେକି ବସିବା—(ପ୍ରସ୍ତୁତ ହୋଇ ରହିବା) ଭଉଣୀ ବାହାଘରକୁ ବାପଘର ଯିବ ବୋଲି ଗୀତା ତ ଆଜଠୁଁ ଗୋଡ଼ ଟେକି ବସିଚି ।

(୫୫) ଗାଲରେ ହାତଦେବା—(ଚିନ୍ତିତହେବା) ତା' କଥା ଶୁଣି ମୁଁ ତ ଗାଲରେ ହାତ ଦେଇ ବସିଗଲି ।

(୫୬) ଗୋଡହାତ ଧରିବା—(ବିନୀତ ପ୍ରାର୍ଥନା କରିବା) ମୁଁ ଯେତେ ଗୋଡ଼ହାତ ଧରିଲି, ବିକଳ ହେଲି, ସେ ମୋ କଥା ଟିକିଏ ହେଲେ କାନରେ ପୂରାଇଲେ ନାହିଁ ।

(୫୭) ଗୋଟିଏ ଛାଞ୍ଚରେ ଗଢ଼ା—(ବଶ୍ ସୁନ୍ଦର) ଝିଅଟିର ବାଛିବାକୁ କିଛି ନାହିଁ—ଏକାବେଳକେ ଗୋଟିଏ ଛାଞ୍ଚରେ ଗଢ଼ା ।

(୫୮) ଗୁମର ଫିଟିଯିବା—(ରହସ୍ୟ ପ୍ରକାଶିତ ହେବା) ତୁ ତ ତାଙ୍କର ସବୁ ଗୁମର ଫିଟେଇଦେଲୁ—ସେ କ'ଣ ତତେ ମୁଣ୍ଡରେ ଥୋଇ ନାଚନ୍ତେ ?

(୫୯) ଗାଳେଇଦେବା—(ଉପେକ୍ଷା କରିବା) ସବୁକାମକୁ ତ ଏମିତି ଗାଳେଇ ଦଉଚୁ, ମଣିଷ ହବୁ କେମିତି ?

(୬୦) ଗୁଜୁରାଣ ମେଣ୍ଟାଇବା—(କୌଣସିମତେ ଚଳିବା) ମୋ ଚଳିବା କଥା ପଚାରୁଛ, କୌଣସିମତେ ଗୁଜୁରାଣ ମେଣ୍ଟିଯାଉଛି ।

(୬୧) ଗୋଡ଼ ବୋଇଲେ ହାତ ବୋଲି କହିବା—(ଦୁଷ୍ଟାମି କରିବା) ସେ ପିଲା ଏଡ଼ିକି ଚଗଲା—ତା'ର ଗୋଡ଼ ବୋଇଲେ ହାତ ବୋଲି କରେ ସିଏ !

(୬୨) ଘର ଡିଙ୍ଗି କୁମ୍ଭୀର—(ନିଜ ଲୋକ ଶତ୍ରୁ ହେବା) ମକଦ୍ଦମାରେ ସେ ଆଉ ହାରନ୍ତା ନାହିଁ--ତା'ର ତ ଘର ଡିଙ୍ଗି କୁମ୍ଭୀର !

(୬୩) ଘରବୁଡ଼ା—(ବିପଜ୍ଜନକ) ସେଇଟା ଘରବୁଡ଼ାଟାଏ—ତା' ସାଙ୍ଗରେ କି ବନ୍ଧୁତା ?

(୬୪) ଘରପୋଡ଼ିରୁ କୁଟାଖିଏ ପାଇବା—(ବିପୁଳ କ୍ଷତିରୁ ସାମାନ୍ୟ ଲାଭକରିବା) ଗାଁ ସମିତି ସବୁ ତ ଖାଉଥିଲେ—ଏବେ ଯା'ହେଉ ମାସେ କଣେ ପଢେଇ ଦଉଛନ୍ତି—ଘର ପୋଡ଼ିରୁ କୁଟାଖିଏ ହେଲେ ମିଳିଲା !!

(୬୫) ଘରବୁଡ଼ି ପାଣି ଅଣ୍ଟୁଏ—(ବିପଦ ପରେ ବିପଦ) ରାଧାଶ୍ୟାମ ବାବୁଙ୍କର ସ୍ତ୍ରୀଙ୍କ ଦେହ ଖରାପ । ଏଣେ ପୁଅଟି ଚାକିରିଠୁଁ ମିଳୁ ନାହିଁ । ତାଙ୍କର ତ ଘର ବୁଡ଼ି ପାଣି ଅଣ୍ଟୁଏ !

(୬୫କ) ଘଣ୍ଟ ଘୋଡ଼ାଇବା—(ରକ୍ଷା କରିବା) ଶାସକମାନେ ତ ବଡ଼ବଡ଼ କଳାବଜାରୀ-ମାନଙ୍କୁ ଘଣ୍ଟ ଘୋଡ଼େଇଲେ । ଏଥିରେ ଦେଶ ବଞ୍ଚିବ କେମିତି ?

(୭୬) ଘରେ ନପଶୁଣୁ ଚାଳ ବାଜିବା—(କାର୍ଯ୍ୟାରମ୍ଭ ପୂର୍ବରୁ ଅସଫଳତାର ସୂଚନା ମିଳିବା) ପୁଅ ଚାକିରି କଲା ସେ ଖବର ଟିକିଏ ଦେଲା ନାହିଁ । ଘରେ ନ ପଶୁଣୁ ତ ଚାଳ ବାଜିଲାଣି, ଇଏ ପୁଣି ବାପ ମାଙ୍କୁ ପୋଷିବ !

(୭୭) ଚଟା କାଟିବା—(ଠକିବା) ଚାଲୁ ଚାଲୁ ହେଉଥିଲ ପରା—ଗୁରୁ କେମିତି ଚଟା କାଟିଲେ ଦେଖିଲଣି ?

(୭୮) ଚାଣଦଉଡ଼ିକଟା—(ବେପରୁଆ) ଅନନ୍ତ କଥା ପଚାରୁଛ—ସେ ତ ମୂଳରୁ ଚାଣଦଉଡ଼ିକଟା ।

(୭୯) ଚୋରକୁ ମାନକରି ଖପରରେ ଖାଇବା—(ଅନ୍ୟ ଉପରେ ଅଭିମାନକରି ନିଜର କ୍ଷତି କରିବା) ସେ ତ ତାଙ୍କର ଗଲେ, ତମେ ଏବେ ଉପାସକରି ଚୋରକୁ ମାନକରି ଖପରରେ ଖାଉଚ କାହିଁକି ?

(୮୦) ଚାଲନ୍ତି ଶଗଡ଼ରେ ହାତଦେବା—(ଦୁଷ୍ଟାମି କରିବା) ଟୋକାଟା ଏଡ଼କି ଦୁଷ୍ଟ ଯେ ଚାଲନ୍ତି ଶଗଡ଼ରେ ହାତ ପୂରେଇବ ।

(୮୧) ଚଳୁକରିଦେବା (ଅଳ୍ପ ସମୟ ମଧ୍ୟରେ ଗ୍ରାସ କରିଦେବା) ଦୁର୍ନୀତିଗ୍ରସ୍ତ, ନେତାମାନେ ଏ ଦେଶକୁ ଚଳୁକରିଦେବା ଉପରେ ।

(୮୨) ଚୋର ମନ ଚଣ୍ଟିରେ—(ଅପରାଧୀର ଅପରାଧ ସଚେତନତା) କେରେ ଟଙ୍କା ତ ନେଇନୁ, ଏମିତି ଚଙ୍ଗ ଚଙ୍ଗ ହଉଚୁ କାହିଁକି ? ଚୋରମନ ଚଣ୍ଟିରେ ପରା !

(୮୩) ଚନବୁହା ବଳଦ—(ବୃଥା ପରିଶ୍ରମ କରିବା) ମୁଁ କ'ଣ ଘରର ଭଲମନ୍ଦ କିଛି ଜାଣେ -ମୁଁ ତ ଚନବୁହା ବଳଦଟେ ।

(୮୪) ଚୁଠ ପଟେଇବା—(ସାହସ କରିବା) ଅନ୍ଧାର ରାତିରେ ବଣ ବାଟରେ ଯିବାକୁ ମୋର ତ ମୋଟେ ଚୁଠ ପଟୋଉନାହିଁ ।

(୮୫) ଚୁଇ ପଡ଼ିଲେ ନାହିଁ ଚେଇଁବା—(ହତ୍ୟା କରି ନ ପାରିବା) ମୋ ଚୁଇ ପଡ଼ିଲେ ତ ତାର ନାହିଁ ଚେଇଁବ—ମୋର ସେ କି ଉପକାର କରିବ ?

(୮୬) ଛେଳି ଗୋଡ଼ରେ ଧାନ ମକଚା ହେବା—(ଅସମର୍ଥ, ଦୁର୍ବଳ ବ୍ୟକ୍ତି ପ୍ରତି ଏହା ଏକ ବ୍ୟଙ୍ଗାତ୍ମକ ପ୍ରୟୋଗ) ଛେଳି ଗୋଡ଼ରେ ଯଦି ଧାନ ମକଚା ଯାଇପାରନ୍ତା, ତେବେ ବଳଦ କାହିଁ ଲୋଡ଼ାପଡ଼ନ୍ତେ ? ତୁ ପୁଣି ଏ କାମ କରିପାରିବୁ ?

(୮୭) ଛେନାରୁ ଖେପା ଛଡ଼ାଇବା—(ଟିକିନିଖିକରି ଦେଖି ଦୋଷ ଅନ୍ବେଷଣ କରିବା) ଛେନାରୁ ଖେପା ଛଡ଼ାଉ ଛଡ଼ାଉ ତ ତାଙ୍କର ବେଳଯାଉଚି, ସେ କାମ କରିବେ କେତେବେଳେ ?

(୭୮) ଛାତି ପଥର କରିବା—(ସାହସ ବାନ୍ଧିବା) ସ୍ୱାମୀ ଆଉ ପୁତ୍ରର ବିୟୋଗ ପରେ ବିଧବା ରତ୍ନମଣି ଛାତିକୁ ପଥରକରିଦେଲେ ।

(୭୯) ଜଡ଼ା ତେଲ, ମେଣ୍ଢାବାଳ—(ଯୋଗ୍ୟ ସହିତ ଯୋଗ୍ୟର ମିଳନ) ସେ ଦୁଇଜଣ ତ ଜଡ଼ାତେଲ ମେଣ୍ଢାବାଳ ଭଳି ମିଳିମିଶିଗଲେ, ସେମାନଙ୍କୁ ଭିନ୍ନ କରିବ କିଏ ?

(୮୦) ଜଳନ୍ତା ନିଆଁରେ କୁଟା ପକାଇବା—(ଉତ୍ତେଜିତ କରିବା) କାହିଁକି ମିଛରେ ଜଳନ୍ତା ନିଆଁରେ କୁଟା ପକାଉଛ ? ପାଟି ବନ୍ଦକରି ଆପଣା ଘରେ ବସୁନ ?

(୮୧) ଜୀବନ ମୂର୍ଚ୍ଛିବା—(ଅପ୍ରାଣ ଉଦ୍ୟମ) ନିଆଁ ସାଙ୍ଗରେ ଜୀବନମୂର୍ଚ୍ଛା ଲଢ଼େଇ କରି ନିଆଁ ଲିଭାଳିଦଳ ଗାଆଁର ଅନେକ ଘର ରକ୍ଷାକରିଦେଲେ ।

(୮୨) ଜପାମାଳି—(ହୃଦ୍‌ପ୍ରିୟ) ଏ ବୃଦ୍ଧ ବୟସରେ ନାତିଟି ତ ବନମାଳୀବାବୁଙ୍କର ଜପାମାଳି ହୋଇଛି !

(୮୩) ଝିମିଟି ଖେଳରୁ ମହାଭାରତ—(ସାମାନ୍ୟ କାରଣରୁ ମହାନ୍ ଅନର୍ଥ ଜାତ ହେବା) ମାଇପି କଳିରୁ ଏଭଳି ଅବସ୍ଥା ହେବ ବୋଲି କିଏ ଜାଣିଥିଲା ? ଏ ତ ଝିମିଟି ଖେଳରୁ ମହାଭାରତ ହେଲାଭଳି କଥା !

(୮୪) ଝିଙ୍କିକା ମାରି ବଣିପୋଷିବା—(ଦୁର୍ବଳକୁ ମାରି ସବଳକୁ ରକ୍ଷାକରିବା) ସରକାର ଏ ଯେଉଁ ଝିଙ୍କିକା ମାରି ବଣି ପୋଷିବା ନୀତି ଧରିଛନ୍ତି, ସେଥିରେ ଦେଶରେ ଉନ୍ନତି ହେବ କିପରି ?

(୮୫) ଝାଳବୁହା ଧନ—(ପରିଶ୍ରମର ଫଳ) ମୋର ହକ୍ ଝାଳବୁହା ଧନଟି—ସାତଡ଼ାଳା ପାଣିରେ ବୁଡ଼ାଇଦେଲେ ବି ଭାସିଉଠିବ ।

(୮୬) ଝାଙ୍କ ଛଡ଼ାଇଦେବା—(ଜିଦ୍ ଧରି ବସିବା) ଦୁଧ ଟିକିଏ ପିଇବ ବୋଲି ପିଲାଟା ଝାଙ୍କ ଛଡ଼ାଇଦେଲାଣି ।

(୮୭) ଡେଙ୍ଗା ମୁଣ୍ଡରେ ଠେଙ୍ଗା—(କାର୍ଯ୍ୟଗ୍ରାହୀ ଲୋକ ହିଁ ଦାୟିତ୍ୱ ମୁଣ୍ଡାଇ ନିନ୍ଦା ଅପମାନ ସହ୍ୟକରିଥାଏ) ଯିଏ ଯାହା କରୁ, ଯାହା କହୁ, ଡେଙ୍ଗା ମୁଣ୍ଡରେ ଠେଙ୍ଗା, ଏ ତ ଶାସ୍ତ୍ର ବଚନ ।

(୮୮) ଡାଳ କାଟିବା—(କ୍ଷତି କରିବା) ମୁଁ ତା'ର କି ଅପରାଧ କରିଥିଲି ଯେ, ସେ ସବୁବେଳେ ମୋର ଡାଳ କାଟୁଛି !

(୮୯) ଢୋଲ ଭିତରେ ମୂଷା—(ବିଶ୍ୱାସୀ ଲୋକର ଶତ୍ରୁତା ଆଚରଣ କରିବା) ଘରର ଚାକର ଏ କାମ କରୁଛି—ଢୋଲ ଭିତରେ ତ ମୂଷା, ମୁଁ ଭଲା ଜାଣିବ କେମିତି ?

(୯୦) ଢୋଲ ପିଟିବା—(ପ୍ରଚାରକରିବା) ସେ ଭଲ ଆଉ ମୁଁ ଖରାପ—ଏଇୟା କହି ସେ ଢୋଲ ପିଟି ବୁଲୁଛି ।

(୯୧) ତନ ପାଣ୍ଟିରୁ ଯିବା—(ସମୂଳେ ବିନଷ୍ଟ ହେବା) ନିଶା ପଣରେ ମାତି ସେ ତନ ପାଣ୍ଟିରୁ ଗଲାଣି ।

(୯୨) ତେଲମାରିବା—(ଖୁସାମଦ କରିବା) ହାକିମ ଗୋଡ଼ରେ ତେଲ ମାରି ମାରି ତା'ର ଉନ୍ନତି କଟିଲି ।

(୯୩) ତନ ମୁଣ୍ଡରେ ତେଲ କୁକୁର—(ବହୁ ଲୋକ ମିଶି ସତ୍ୟକୁ ମିଥ୍ୟା ରୂପରେ ପ୍ରତିପନ୍ନ କରିବା) ତନ ମୁଣ୍ଡରେ ତ ହେଲା କୁକୁର—ଏଥିରେ ତମେ ସତ ଖୋଜିଲେ ପାଇବ କୁଆଡୁ ?

(୯୪) ତିଳକୁ ତାଳ କରିବା—(ଛୋଟ କଥାକୁ ବଡ଼ କରି କହିବା) ତିଳକୁ ତାଳ କରି କହିବା ତାର ପ୍ରକୃତି ।

(୯୫) ତେଲ ଘଡ଼ିକୁ ଆଶା, ପୁଅ ମୁଣ୍ଡକୁ ଆଶା—(ଦୁଇଟି କାର୍ଯ୍ୟରେ ଏକାବେଳକେ ସଫଳତା ଆଶା କରିବା) ତା'ର ତ ଏବେ ତେଲ ଘଡ଼ିକୁ ଆଶା ତେବେ ପୁଅ ମୁଣ୍ଡକୁ ଆଶା—ଏଥିରେ କାମ ହେବ କେମିତି ?

(୯୬) ଦର୍ପଣ ଗଢ଼ୁ ଗଢ଼ୁ ମାଙ୍କଡ଼—(ଭଲ କରିବାକୁ ଯାଇ ମନ୍ଦ କରିବା) ଦର୍ପଣ ଗଢ଼ିବାକୁ ଯାଇ ସେ ମାଙ୍କଡ଼ଟିଏ ଗଢ଼ି ଥୋଇଦେବ ବୋଲି ମୁଁ କ'ଣ ଜାଣିଥିଲି ?

(୯୭) ଦେଖିପାରିବା—(ଭଲପାଇବା) ସବତ ମା' ହେଲେ ବି ସେ ପିଲାଟିକୁ ଭାରି ଦେଖିପାରେ ।

(୯୮) ଦାନ୍ତରେ କୁଟା ଦେବା—(ବିନୀତ ପ୍ରାର୍ଥନା କରିବା) ମୁଁ ତାଙ୍କୁ ଯେତେ କହିଲି, ଦାନ୍ତରେ କୁଟା ଦେଲି, ତଥାପି ସେ କ'ଣ ମୋ କଥା ଶୁଣିଲେ ?

(୯୯) ଦୀପତଳେ ଅନ୍ଧାର—(ଶିକ୍ଷା ନିକଟରେ ଅଶିକ୍ଷାର ଓ ସଭ୍ୟତା ନିକଟରେ ବର୍ବରତାର ପ୍ରାଚୁର୍ଯ୍ୟ) ବାପ ଏତେ ପାଠ ପଢ଼ିଛି ହେଲେ ପୁଅଟା ଗଣ୍ଡମୂର୍ଖ । କ'ଣ କହିବା—ଦୀପ ତଳେ ତ ଅନ୍ଧାର !

(୧୦୦) ଦେହଲଗା—(ବିଶ୍ୱାସୀ) ଗୋବିନ୍ଦ ତାଙ୍କର ଦେହଲଗା ଚାକର ।

(୧୦୧) ଦଗାଦେବା—(ଠକିବା) । ଶେଷରେ ସେ ମୋତେ ଏମିତି ଦଗା ଦେବ ବୋଲି ମୁଁ କ'ଣ ଜାଣିଥିଲି ?

(୧୦୨) ଦଫା ରଫା କରିବା —(ସମୂଳେ ବିନାଶ କରିବା) ମକଦ୍ଦମା କରି କରି ତା'ର ତ ଦଫା ରଫା ହୋଇଗଲାଣି ।

(୧୦୩ ଦାଉ ସାଧିବା—(ପ୍ରତିଶୋଧ ନେବା) ଏତକ ବେଳକୁ ତାର ମୋ ଉପରେ ଦାଉ ସାଧିବାକୁ ଥିଲି ?

(୧୦୪) ଧୂଆଁ ବାଣ ମାରିବା—(ବଡ଼େଇକରି କହିବା) ତା' କଥାରେ ବିଶ୍ୱାସ କରନାହିଁ; ମିଛଟାରେ ଖାଲି ଧୂଆଁ ବାଣ ମାରୁଛି ।

(୧୦୫) ଧୂଆ ମୂଳା ଅଧୂଆ ମୂଳା ସବୁ ସମାନ – (ବିଗ୍ଭରବୁଦ୍ଧିହୀନତା) ତା' କଥା କାହିଁକି କହୁଛ ? ତା' ପାଖରେ ଧୂଆ ମୂଳା ଅଧୂଆ ମୂଳା ସବୁ ସମାନ ।

(୧୦୬) ନାକ ଟେକିବା—(ଘୃଣା କରିବା) ସବୁ କଥାରେ ନାକ ଟେକିବା ତା'ର ଅଭ୍ୟାସ ।

(୧୦୭) ନାହିଁ ମାମୁଠାରୁ କଣା ମାମୁ ଭଲ—(କିଛି ନଥିବାଠାରୁ ସାମାନ୍ୟ କିଛି ଥିବା ବରଂ ଭଲ) ଯାହାହେଉ, ଏତେ କଷ୍ଟ କରି ପିଲଟା ଶେଷରେ କୌଣସିମତେ ପାସ୍ କରିଗଲା —ନାହିଁ ମାମୁଠାରୁ କଣାମାମୁ ଭଲ ।

(୧୦୮) ନାକ ଟୁଆଙ୍ଗିବା—(ବିରକ୍ତ ହେବା) ସବୁବେଳେ ଏମିତି ନାକ ଟୁଆଙ୍ଗିଲେ ଗୃହକରବାକର ଘରେ ରହିବେ କେମିତି ?

(୧୦୯) ନାଁପକେଇବା—(ନାମ ଅର୍ଜନ କରିବା) କୋଉ ଘରର ପିଲା ସେ—ଏମିତି ଗୁଣଆଡ଼େ ନ ପକେଇବ ବୋଲି କିଏ କ'ଣ ଜାଣିଥିଲା ?

(୧୧୦) ନେଇ ଆଣି ଥୋଇବା—(କୌଣସି କାର୍ଯ୍ୟକୁ ସହଜରେ କରିପାରିବା) ନେଇ ଆଣି ଥୋଇପାରିଲେ, ସାଧାରଣ କାମ ବି ଲାଭଦାୟକ ହୋଇଥାଏ ।

(୧୧୧) ନାହିରେ ତେଲ ପକାଇ ଶୋଇବା—(ଚିନ୍ତା ନ କରିବା) ପରୀକ୍ଷା ଆସି ମୁଣ୍ଡ ଉପରେ, ଏମିତି ନାହିରେ ତେଲ ପକାଇ ଶୋଇଲେ ତୁ ପାସ୍ କରିବୁ କେମିତି ?

(୧୧୨) ନଈ ନ ଦେଖୁଣୁ ଲଙ୍ଗଳା—(ବିପଦର ଆଶଙ୍କାରେ ଭୟପାଇଯିବା) ସେ କ'ଣ କରୁଛି ଆଗ କରିସାରୁ, ପଛେ ଆମେ ଦେଖିବା ନାହିଁ ? ନଈ ନ ଦେଖୁଣୁ ଏମିତି ଲଙ୍ଗଳା କାହିଁକି ?

(୧୧୩) ନଟର ଗୋବର୍ଦ୍ଧନ (ଗଣ୍ଡଗୋଳର ମୂଳ) ତାକୁ କ'ଣ କମ୍ ମଣିଚ କି ? ସେ ପରା ନାଟର ଗୋବର୍ଦ୍ଧନ !

(୧୧୪) ନାଁ ଲିଭିବା—(ମୃତ୍ୟୁ ହେବା) ବର୍ଷେ ହେଲା ତାଙ୍କ ନାଁ ଲିଭିଗଲାଣି ।

(୧୧୫) ନାଁ କରିବା—(ପ୍ରଖ୍ୟାତ ହେବା) କେତେ ଲୋକଙ୍କର ଉପକାର କରି ସେ ନାଁ କରିଯାଇଛନ୍ତି ।

(୧୧୬) ପେଟରୁ କାଟିବା—(ଆପେ କଷ୍ଟ ସହି ଅନ୍ୟକୁ ସୁଖ ଦେବା) ପେଟରୁ କାଟି ସେ ତା' ଛୁଆପିଲାଙ୍କୁ ବହୁ କଷ୍ଟରେ ମଣିଷ କରୁଚି ।

(୧୧୭) ପିଳେହି ପାଣି ହେବା—(ଭୟଭୀତ ହେବା) ପୋଲିସ୍‌କୁ ଦେଖୁ ଦେଖୁ ତ ତା ପିଳେହି ପାଣିହୋଇଗଲା; ପାଟିରୁ ସତକଥାତକ ଆପେ ବାହାରିଆସିଲା ।

(୧୧୮) ପାଣି ପିଆଇବା—(ହଇରାଣ କରିବା) ମୋ ହାତରେ ଲଗନା ଜନ୍ମୁଛ; ତତେ ପାଣି ପିଆଇଦେବିଟି !

(୧୧୯) ପିଠିରେ ପଡ଼ିବା—(ସାହାଯ୍ୟ କରିବା) ମୋ କଥା ଏବେ ମାନୁନୁ; ଶେଷରେ କେହି ତୋ ପିଠିରେ ପଡ଼ିବାକୁ ଆସିବେ ନାହିଁ ।

(୧୨୦) ପାଲରେ ପକାଇବା—(କୌଶଳରେ ଆୟତ୍ତ କରିବା) ସେ ମୋତେ ଏମିତ ପାଲରେ ପକାଇଦେଇଛି ଯେ, ମୋର ଉଦ୍ଧାର ପାଇବା କାଠିକର ପାଠ ।

(୧୨୧) ପାଣି ନ ଗଳିବା—(ଅତି ଅନ୍ତରଙ୍ଗତା) ଦୁ' ଜଣଙ୍କ ଭିତରେ ତ ପାଣି ଗଳୁ ନଥିଲା—ଏବେ କ'ଣ ହେଲା କେଜାଣି ମୁହଁ ଚାହିଁଚାହିଁ ନାହିଁ ।

(୧୨୨) ପାଣି ଛଡ଼ାଇଦେବା—(ସମ୍ପୂର୍ଣ୍ଣ ଉତ୍ସର୍ଗ କରିଦେବା) ମୁଣ୍ଡ ତ ପାଣି ଛଡ଼େଇ ଦେଇଛି—ଯାହା ହେବାର ହେବ ।

(୧୨୩) ପୁଅବାର ପଡ଼ିବା—(ଅତ୍ୟନ୍ତ ସୁବିଧା) ଘରେ ତ ପୁରୁଷ ଲୋକ କେହି ନାହାନ୍ତି, ପିଲାମାନଙ୍କ ତ ପୁଅବାର ପଡ଼ିଯାଇଚି ।

(୧୨୪) ପାଣିରେ ଘର ପକାଇବା—(କୌଶଳରେ ମୁଗ୍ଧ କରିବା) ତା' କଥା କ'ଣ ଜାଣିନାହଁ ? ସେ ସବୁ ଘାଟରେ ପାଣିରେ ଘରପକେଇଦେବ !

(୧୨୫) ପାସଙ୍ଗରେ ପକାଇବା—(ଖାତିର୍ ନ କରିବା) ସେ କୋଉ ଏବେ ମୋ କଥାକୁ ପାସଙ୍ଗରେ ପକାଉଛି ?

(୧୨୬) ଫୁତ୍କାର ମାରିବା—(ଗୁରୁତ୍ୱ ସ୍ୱୀକାର ନକରିବା) ସେ ତ ସବୁ କଥାକୁ ଫୁତ୍କାର ମାରି ଉଡ଼େଇଦେଉଚି—କ'ଣ ଯେ କରିବ ପରେ ଜଣାଯିବ ।

(୧୨୭) ଫନ୍ଦେଇହେବା—(ବାରମ୍ବାର ପଚାରିବା) ଥରେ ତ ଶୁଣିଲ, ଆଉ କେତେ ଫନ୍ଦେଇହଉଚ ?

(୧୨୮) ଫସରଫାଟିବା—(ଆୟୋଜନ ବ୍ୟର୍ଥହେବା) ଏତେ ସାଜସଜା, ଏତେ ବାଣ-ଭଣାଣ, ବର୍ଷାଟା ଯୋଗୁଁ ସବୁ ଫସରଫାଟିଗଲା ।

(୧୨୯) ଫାଙ୍କିଦେବା—(ନମାନିବା) ଦରକାର ବେଳେ ନେଲ, ଏବେ ମାଗିଲାବେଳକୁ ଫାଙ୍କ ଦଉଚ ।

(୧୩୦) ବଗୁଲା-ବୈଷ୍ଣବ (ଠକ) ପାଠବାଘ କଥା ଶୁଣି ଭଲଯାଉଚ କି ? ସେ ସବୁ ବଗୁଲା-ବୈଷ୍ଣବଟାଏ !

(୧୩୧) ବଣ-କଟୁଆତ—(ଅତି ଦୁଷ୍ଟ) ସଦାନନ୍ଦବାବୁଙ୍କ ପୁଅ ପକ୍କା ବଣ-କଟୁଆତ ଖଣ୍ଡେ ।

(୧୩୨) ବଗୁଲା ଚୁଙ୍କିବା—(ଆରମ୍ଭରୁ ବିଘ୍ନ ଘଟିବା) ମୂଳରୁ ତ କ'ଣ ବଗୁଲା ଚୁଙ୍କିଲାଣି, କ'ଣ ହେଉଚ ଦେଖ !

(୧୩୩) ବାଆକୁ ବତା—(ସାମାନ୍ୟ ଅବଲମ୍ବନ) ଡାକ୍ତର ବୈଦ୍ୟ ଏ ସବୁ ବାଆକୁ ବତା ସିନା—ଆୟୁଷ ନଥିଲେ କଏ ରଖିବ ?

(୧୩୪) ବାଉକୁ ଆଣିବା—(ଆୟତ୍ତ କରିବା) କେତେ କଷ୍ଟରେ ଘୋଡ଼ାଟା ଏବେ ବାଗକୁ ଆସିଚ—ହୁସିଆର୍ ଥିବଟି !

(୧୩୫) ବାଟ କାଟିବା—(ନିଜ ଉପାୟ ସ୍ଥିର କରିବା) ଗୋଟି ଗୋଟି ହୋଇ ଯେ ଯାହାର ବାଟ କାଟିଲେ, ତମେ ଏବେ ଏକାକୀ କରିବ କ'ଣ ?

(୧୩୬) ବାପଘର ଝିଙ୍କିଗିଲ—(ବାଧ୍ୟ କରି କୌଣସି କାମ କରାଇବା) ତା'ର ତ ପଢ଼ିବାରେ ମୋଟେ ମନ ନାହିଁ—ତାକୁ ବାପଘର ଝିଙ୍କି ଗିଲ କହିଲେ ଲଭ କ'ଣ ?

(୧୩୭) ବାଘଘରେ ମିଶର ନାଟ—(ଭୟର ଅବସରରେ ନିର୍ଭୟ ହୋଇ ବୁଲିବା) ବାପା ତ ଘରେ ନାହାନ୍ତି; ସନ୍ତବେଳୁ ନାଚ ତାମସାର ଧୂମ୍ ଉଡ଼ୁଚି—ବାଘ ଘରେ ମିଶର ନାଟ ଚାଲିଚ ।

(୧୩୮) ଭେଲା ବୁଡ଼ିବା—(ସର୍ବନାଶ ହେବା) ସ୍ୱାମୀ ତ ଆଗରୁ ଯାଇଥିଲେ, ଏବେ ପୁଅ ଗଲା—ବଗୁଢ଼ିର ଜାଣ ଭେଲା ବୁଡ଼ିଲା ।

(୧୩୯) ଭାଲୁ ଧରିବା—(ଅସୁବିଧାରେ ପଡ଼ିବା) ତମେ ତ ତମର ଖସିଆସିଲ, ମୁଁ ଏଣେ ଭାଲୁ ଧରିଚି—ଦେଖାଯାଉ କ'ଣ ହେଉଚି ।

(୧୪୦) ଭୂଆଁ ବୁଲାଇବା—(ଉଦ୍ଦେଶ୍ୟହୀନ ଭାବରେ ବୁଲାଇବା) କେତେ ଦିନ ମତେ ଏମିତି ଭୂଆଁ ବୁଲେଇବ, ମୁଁ ଦେଖିବି ।

(୧୪୧) ଭୂତ ଖାଇବା—(ବିନଷ୍ଟ ହେବା) ରାଣୀଖଣ୍ଡୀଙ୍କର ତଣ୍ଟି ଚିପି ଏତେ ସମ୍ପତ୍ତି ଠୁଳ କରିଚୁ; ଶେଷରେ ଯଦି ସବୁ ଭୂତ ନ ଖାଇଛନ୍ତି, ତେବେ ମୋ ନାଁରେ କୁକୁର ପାଳିବୁ ।

(୧୪୨) ମୁଣ୍ଡ ବଢ଼ାଇବା—(ପ୍ରଶ୍ରୟ ଦେବା) ତୁମେ ତ ତାଙ୍କର ମୁଣ୍ଡ ବଢ଼େଇଛ, ଏବେ ଗାଳିଦେଲେ କ'ଣ ହେବ ?

(୧୪୩) ମୁଣ୍ଡ ଗୁଞ୍ଜିବା—(କୌଣସି ମତେ ରହିବା) ମୁଣ୍ଡ ଗୁଞ୍ଜିବା ପାଇଁ ଖଣ୍ଡିଏ ଘର ତ ଲୋଡ଼ା—ସେତକ ନ ହେଲେ ସେ ଚଳିବ କେମିତି ?

(୧୪୪) ମୁଣ୍ଡ ଟେକିବା—(ପ୍ରସିଦ୍ଧି ଲଭ କରିବା) ଗୁରୁକର ଖଣ୍ଡେ କରି ସେ ଏବେ ମୁଣ୍ଡ ଟେକି ବସିଲେଣି ।

(୧୪୫) ମନ ଘର ଧରିବା—(ବ୍ୟତିବ୍ୟସ୍ତ ହୋଇଯିବା) ବହି ଖଣ୍ଡକ ପାଇଁ ଦୌଡ଼ି ଦୌଡ଼ି ମୋ ମନ ଘରଧରିଗଲଣି ।

(୧୪୬) ମୁଣ୍ଡକୁ ହାତ ପାଇବା—(ହୁସିଆର ହେବା) ଜୋର ଆଉ ଏଥର ଚିନ୍ତା କ'ଣ ? ପୁଅଟିର ତ ମୁଣ୍ଡକୁ ହାତ ପାଇଗଲଣି !

(୧୪୭) ମହରଗରୁ ଯାଇ କାନ୍ଥାରରେ ପଡ଼ିବା—(ଅଳ୍ପ ବିପଦରୁ ଯାଇ ଅଧିକ ବିପଦରେ ପଡ଼ିବା) କଟକରେ ହେଲେ କିଛି ଲେଖାପଢ଼ା କରୁଥିଲ; ଏବେ ବାଲେଶ୍ୱର ଆସି ସବୁ ବନ୍ଦ । ମଣିଷ ଆଚ୍ଛା ମହରଗରୁ ଆସି କାନ୍ଥାରରେ ପଡ଼ିଲା !

(୧୪୮) ମୁଣ୍ଡ ଝାଳ ଗୋଡ଼ରେ ମାରିବା—(କଠିନ ପରିଶ୍ରମରେ ଧନ କାଟିବା) ମୁଣ୍ଡ ଝାଳ ଗୋଡ଼ରେ ମାରି କୌଣସିମତେ କଟିଯାଉଛି ।

(୧୪୯) ଗଣ୍ଡିପୁଅ ଅନନ୍ତା—(ଦାୟିତ୍ୱହୀନ, ଉଚ୍ଛୃଙ୍ଖଳ) ସେ ଗଣ୍ଡିପୁଅ ଅନନ୍ତା କଥା ପଚାରୁଛ ? ସେଇ ତ ଅସଲ ନାଟର ଗୋବର୍ଦ୍ଧନ ।

(୧୫୦) ଗଧ୍ୱା ଧରିବା—(ଜିଦ କରିବା) ପୁଅ କଥା କ'ଣ କହିବ—ସେ ତ ଯୋଉ ଗଧ୍ୱା ଧରିବ ସେଇଆ କରିବାକୁ ପଡ଼ିବ ।

(୧୫୧) ଲୁହା ଜାଣି ପାଣିଦେବା—(ପ୍ରକୃତ ଜାଣି ବ୍ୟବହାର କରିବା) ଘରର ପୁଜାରୀ କଥା କାହିଁକି କହୁଚ ? ସେମାନଙ୍କୁ ଲୁହା ଜାଣି ପାଣି ଦେବା ଉଚିତ ।

(୧୫୨) ଲଗା ନା ପଗା—(ନୀତି-ନିୟମ ଅମାନ୍ୟ କରିବା) ଆଜିର ପିଲାଙ୍କୁ ଲଗା ଅଛି ନା ପଗା ଅଛି—ଘରୁ ଗୁରୁଜନ କାହାକୁ ମାନୁନାହାନ୍ତି ।

(୧୫୩) ଲଙ୍କାରେ ହରିଣେଇ—(ଅଘଟଣ ଘଟିବା) ସେ କୃପଣଟା ପୁଣି କିଛି ଚାନ୍ଦା-ଦେବ—ଯେ ତ ଲଙ୍କାରେ ହରିଣେଇ ଭଳି କଥା ହେବ ।

(୧୫୪) ଷୁଅମୁହଁରେ ପଡ଼ିର—(ଅସହାୟ ଭାବ) ସବୁ ଉପରବାଲାର ଇଚ୍ଛା—ଆମେ ସବୁ ଷୁଅମୁହଁରେ ପଡ଼ିର ପିନା !

(୧୫୫) ସଜ ମାଛରେ ପୋକ ପକାଇବା—(ଅକାରଣରେ ନିନ୍ଦା କରିବା) ତାଙ୍କ କଥା କ'ଣ କହିବ—ସଜ ମାଛରେ ପୋକ ପକାଇବା ପରି ତାଙ୍କର ପ୍ରକୃତି ।

(୧୫୬) ଶୁଣ୍ଢୀ ସାକ୍ଷୀ ମାତାଲ—(ଅନ୍ୟାୟ କାର୍ଯ୍ୟରେ ଅସାଧୁ ବ୍ୟକ୍ତିକୁ ସାକ୍ଷୀ ମାନିବା) —ତା'ଠୁଁ କ'ଣ ସତ କଥା ବାହାରିବା—ସେ ପରି ଶୁଣ୍ଢୀ ସାକ୍ଷୀ ମାତାଲ ।

(୧୫୭) ହାତବାରିସି—(ଏକମାତ୍ର ଅବଲମ୍ବନ) ବାପା ବିଦେଶ ଗଲାଦିନୁ ପୁଅଟି ତ ମୋର ହାତବାରିସି ହୋଇଛି ।

(୧୫୮) ହାତଧରିବା—(ବିବାହ କରିବା) ଏଡ଼େ ଗୁଣବତୀ ଝିଅ—ମାତ୍ର ତା ଦୁର୍ଯୋଗକୁ ହାତ ଧରିଲା ଗୋଟାଏ ଅପଦାର୍ଥର ।

(୧୫୯) ହାତକରିବା—(ଆୟତ୍ତ କରିବା) ସେ ଅଫିସ୍‌ରେ ଚାକିରି ପାଇବାକୁ ହେଲେ ଆଗ ବଡ଼ବାବୁଙ୍କୁ ହାତକରିବାକୁ ପଡ଼ିବ ।

(୧୬୦) ହାଟ ମଧ୍ୟରେ ବ୍ରହ୍ମଜ୍ଞାନ—(ପ୍ରକାଶ୍ୟରେ ଗୋପନ ତଥ୍ୟ ପ୍ରକାଶ କରିବା) ଘରକୁ ଆସ, ସବୁ କଥା ଶୁଣିବ । ଏଠି ଏତେ ଲୋକଙ୍କ ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ଶୁଣିବାକୁ ମନକରନ ହିଁ ।

# କ୍ରିୟାର ରୂଢ଼ି

ଆମ ଭାଷାରେ କେତେକ କ୍ରିୟା ରହିଛି, ଯାହା ଭିନ୍ନ ଭିନ୍ନ ଶବ୍ଦ ସହଯୋଗରେ ସମ୍ପୂର୍ଣ୍ଣ ନୂତନ ଅର୍ଥବହ ହୋଇଉଠନ୍ତି । ଏଗୁଡ଼ିକୁ କ୍ରିୟାର ରୂଢ଼ ପ୍ରୟୋଗ ବୋଲି କୁହାଯାଇପାରେ । ନିମ୍ନରେ ସେଇଭଳି କେତେକ କ୍ରିୟାର ଆଲୋଚନା କରାଯାଇଛି ।

**ମାରିବା—**

ଘିଅ ମାରିବା—ଲହୁଣିରୁ ଘିଅ ପ୍ରସ୍ତୁତ କରିବା
ଫନ୍ଦି ମାରିବା—ଠକିଦେବା
ଗାଲୁ ମାରିବା—ମିଛ କଥା କହିବା
ବାଣ ମାରିବା—ବାଣ ନିକ୍ଷେପ କରିବା
ତାଳି ମାରିବା—ଦୁଇ ହାତରେ ଶବ୍ଦ କରିବା
ଲୁଣ ମାରିବା—ଲୁଣ ପ୍ରସ୍ତୁତ କରିବା
ଦାନା ମାରିବା—ରୋଜଗାରରେ ବାଧା ସୃଷ୍ଟି କରିବା
ଥକା ମାରିବା—କ୍ଳାନ୍ତି ଦୂର କରିବା
ଟଙ୍କା ମାରିବା—ଅପହରଣ କରିନେବା
ମନ ମାରିବା—ଦୁଃଖିତ ହେବା
ଆଖି ମାରିବା—ଇଙ୍ଗିତ ଦେବା

**ପିବା—**

ଦେହରେ ପିବା—ସହ୍ୟ ହେବା
ଦିନ ପିବା—ସମୟ କଟିବା
ସଂସାରରୁ ପିବା—ମୃତ୍ୟୁ ବରଣ କରିବା
ଲୁଗାଖଣ୍ଡିକ ବରଷେ ପିବ—ବର୍ଷକ ପର୍ଯ୍ୟନ୍ତ ପିନ୍ଧାଯାଇପାରିବ

**ମାଡ଼ିବା—**

ପିଢ଼ାରେ କଖାରୁ ଗଛ ମାଡ଼ିଛି । କେତେଦିନ ରୁଚ୍ଛା ପରେ ମୁହଁମାଡ଼ି ପଡ଼ିଥିବ ? ସେ ଆମ ଦୁଆର ମାଡ଼ୁନାହିଁ । ଦହିଯାକ ଯାଦୁ ମାଡ଼ିଗଲାଣି । ମୋତେ ଝାଡ଼ା ମାଡ଼ିଲାଣି । ମଲିରେ ଚରିପାଣି ମାଡ଼ୁଛି । ଏମିତ କୁଆଡ଼େ ମାଡ଼ିଯାଉଛ ? ଜୋତା ମାଡ଼ି ଗାଁ ବାଟରେ ଚାଲିବା କ'ଣ ସହଜ କଥା ?

**ମରିବା—**

ତାଙ୍କ ସ୍ୱାମୀ ଆଜି ମଲେ (ମୃତ୍ୟୁ ବରଣ କଲେ) । ତରକାରିରୁ ପାଣି ମଲାଣି (ଶୁଖିଗଲାଣି) । କେତେ ଆଉ ଦଉଡ଼ି ଦଉଡ଼ି ମରିବ ? (ହଇରାଣ ହେବ)

**ଚଳିବା—**

ସେ ଫେସନ ଏଠି ଚଳିବ ନାହିଁ । ସେ କ'ଣ ଏବେ ଆଉ ସମାଜରେ ଚଳୁଛି ? ବାପାଙ୍କ କଥା ମାନି ନ ଚଳିଲେ ଦୁଃଖ ପାଇବ । ମୂଲିଆଟି ମୂଲ ଲାଗି ଚଳୁଛି । ପୁଅ ପାଣିଗଲାରୁ ରାମବାବୁଙ୍କ ସଂସାର ବେଶ୍ ଭଲରେ ଚଳୁଛି । ଏ ଟଙ୍କା ଚଳିବ ନାହିଁ ।

**ଲାଗିବା—**

ମୋ କଥା ଆପଣଙ୍କୁ ଲାଗିଲା । ପିଲାଙ୍କ ସାଙ୍ଗେ ଲାଗନା । (ବିରକ୍ତ କର ନାହିଁ) । ମୋତେ ଶୀତ ଲାଗୁଛି । ଗଛ ଲାଗିବାକୁ ଆଉ ବେଳ ଅଛି ? ଚୂଲି ଲାଗିବାକୁ କାଠ ନାହିଁ ? ଦେବୀଙ୍କ ପାଖରେ ନଡ଼ିଆଟିଏ ଲାଗିକରିବାକୁ ମାନସିକ କରିଛି । ଝିଅର ବାହାଘର କୋଉଠି ଲାଗିଛି ? ଭାତ ଲାଗିଗଲା । (ପୋଡ଼ିଯିବା ଅର୍ଥରେ) । ତାକୁ ଭୂତ ଲାଗିଛି । ରାମବାବୁ ଧାନ ଆଉ ଟଙ୍କା ମହାଜନୀରେ ଲଗାଇଛନ୍ତି । (ଋଣ ଦେଇଛନ୍ତି । ମୋ ଆଖି ଟିକିଏ ଲାଗିଗଲା । (ନିଦ୍ରାସକ୍ତ ହେବା ଅର୍ଥରେ) । ନାଆ କୂଳରେ ଲାଗିଲା । ମୋ ମନ ଏଠି ମୋଟେ ଲାଗୁନାହିଁ । ଚିଠିରେ ଟିକେଟ୍ ଲାଗିନାହିଁ । ଥରେ ହଇଜା ଲାଗିଲେ ଗାଁକୁ ଗାଁ ପଦା ହୋଇଯାଏ । ଘର ତିଆରିରେ କେତେ ଟଙ୍କା ଲାଗିଲା ?

**ଦେଖିବା—**

ମୋ କଥା ଦେଖିବେ ବୋଲି ତ କହିଛନ୍ତି, କ'ଣ କରିବେ କେଜାଣି ? ଦେଖି ଶିଖିବା, ଆଉ ପଢ଼ିଶିଖିବା ଏକା କଥା ନୁହେଁ । ପିଲାଟିକୁ କେହି ଦେଖିପାରନ୍ତି ନାହିଁ । ଏଥର ତୋ ବାଟ ତୁ ଦେଖ୍ । ଏଠି ଶାଗଖିଆକୁ ପେଜଖିଆ ଦେଖିପାରେନାହିଁ । ମୋ ଝିଅପାଇଁ ଗୋଟିଏ ପାତ୍ର ଦେଖୁଥିବ । ଜ୍ୟୋତିଷ ଆଜି ମୋ ହାତ ଦେଖିବେ । ଡାକ୍ତରବାବୁ ରୋଗୀ ଦେଖିବାକୁ ବାହାରକୁ ଯିବେ । ବଡ଼ସାହେବ ଆଜି ଅଫିସ୍ ଦେଖିବାକୁ ଆସିବେ ।

**କରିବା—**

ଅଳ୍ପ ଦିନ ଭିତରେ ସେ ନାଁ କରିଗଲେ । (ପ୍ରସିଦ୍ଧ ହେବା ଅର୍ଥରେ) ତାଳକୁ ତାଳ କରି ସେ କ'ଣ ପାଏ କେଜାଣି ? ଏଥର ଦେଖିବୁଝି ପୋଷ୍ୟପୁତ୍ରଟିଏ କର । ଜଳଖିଆ ଟିକିଏ କରି ଯିବ, ରହିଥାଅ ।

**ଉଠିବା—**

ନିଦରୁ ଉଠିଲଣିଟି ? ମହାଦୀପ କେତେବେଳେ ଉଠିବ ? ଧାନ ଉଠିଗଲା ପରେ ରବି-ଫ'ଷା ବୁଣିବ । ତା'ର ତ କଥାକଥାକେ ହାତଉଠାଇବା ପ୍ରକୃତି । କେଉଁଠୁ ପାଞ୍ଚଶ ହଜାରେ ଯୋଗାଡ଼ କଲେ ଝିଅ ବାହାଘରଟି ଉଠେଇବ । ପାଟିତୁଣ୍ଡ ଶୁଣି ସାରା ଗାଁ ଉଠିଗଲେ । କଥା ଉଠିଲାଣି ଯେତେବେଳେ, ଗୋଟାଏ ନିଷ୍ପତ୍ତି ହୋଇଯାଉ । ଗୋଠଣା ପଞ୍ଝା କେତେବେଳେ ଉଠିବେ ? (ଯାତ୍ରା ଆରମ୍ଭ କରିବେ ?) ଏ ପିଲାଟି ଶ୍ରେଣୀପଟରେ ଉଠେ । (ଅଭିନୟ କରେ) ।

ଦେବା—

ବାର ଲୋକଙ୍କ କଥାରେ କାନ ଦେଲେ କ'ଣ ପେଟ ପୁରିବ ? ଖାଲି ପରା ଆଖି ଦେଇ ଦେଇ ପିଲାଟାକୁ ସାରିଦେଲେ ! ଖାଲି ମୁହଁ ଦେଇ ଦେଇ ସେ ପିଲାଟାକୁ ନଷ୍ଟ କରିଦେଲେ । କଥା ଦେଇ ଯିଏ କଥା ନରଖିଲା, ତାକୁ କ'ଣ ମଣିଷ ବୋଲି କହିବ ? ଦେବା ମରିବାକୁ କେହି ଭଲପାଆନ୍ତିନାହିଁ ।

ଖେଳିବା—

ପିଲାଏ ଖେଳିସାରି ଆସିଲେଣି । ସାପୁଆକେଲା ସାପ ଖେଳାଉଛି । କୁଟା କେଉଁକ ଖେଳାଇଦିଅ (ଘୃତଆଡ଼େ ମେଲାଇ ଦିଅ) । ମୋ ମୁଣ୍ଡ ତ ମୋଟେ ଖେଳୁନାହିଁ, କ'ଣ କରିବି କୁହ ? ତମେ କ'ଣ ମୋ ସାଙ୍ଗରେ ଖେଳୁଛ ? (ଥଟ୍ଟା କରୁଛ)

ମିଳିବା—

ଶୀତଦିନରେ ଭଲ ପରିବା ମିଳେ । ଜାତକ ନ ମିଳିଲେ ବାହାଘର ହେବ ନାହିଁ । ଟଙ୍କାଟାଏ ପଡ଼ିଗଲା ଯେ ମିଳିଲା ନାହିଁ ।

କାଟିବା—

କୁରାଢ଼ିରେ କାଠ କାଟ । ଛୁରି କଟାଇବାକୁ ମୁଁ ଫୁଆ ଯିବି । ମୋ ସମସ୍ତ କେମିତି କଟୁଛି, ଯିଏ ଦିନରାତି କରୁଛି ସେଇ ଏକା ଜାଣେ । ସାରୁଗୁଡାଏ ଖାଇଲେ ପେଟ କାଟିବ ନାହିଁ ? ଧାନ କାଟିବା ବେଳ ହେଲାଣି । ଲମ୍ବା ଚିଡା କାଟିଲେ କ'ଣ ଲୋକ ସାଧୁ ହୋଇଯାଏ ? ଇଂଜେକ୍‌ସନ୍ ନେଲାବେଳେ ମୋତେ ଭାରି କାଟିଲା । ମୋ କଥା କୋଉ ଏବେ ସେ ରଖିଲେ—ସବୁ ତ କାଟିଦେଲେ । ମହାତ୍ମା ଗାନ୍ଧୀ ସମସ୍ତଙ୍କୁ ସୁତା କାଟିବାକୁ କହୁଥିଲେ । ଅଙ୍ଗାରରେ ତଳେ ଗାର କାଟ ନାହିଁ । ସେ ମୋତେ ଏମିତି ଚିଡା କାଟିବ (ଠକିବ) ବୋଲି ମୁଁ କ'ଣ ଜାଣିଥିଲି ? ପେଟରୁ କାଟି ସେ ତା' ପିଲାଙ୍କୁ ମଣିଷ କରୁଛି । ଆଗକାଳରେ ରାଜାମାନେ କଥାକଥାକେ ମୁଣ୍ଡକାଟ ଶାସ୍ତି ଦେଉଥିଲେ । ଏ ଭଣ୍ଡାରୀଟି ଭଲ ବାଳ କାଟେ ।

ପାରିବା—

ତାକୁ ଘଷି ପାରିବା ଆସେ ନାହିଁ । ମୁଁ ଏ କାମ କରିପାରିବି । ମସିଣା ଖଣ୍ଡିକ ପାରିଦିଅ । ଅମ୍ବ ପାରିଲଣି ? ଭଗବାନ୍ ଚାହିଁଲେ ମୁଁ ଏ ବିପଦରୁ ପାରିହେବି । ସେ ଡଙ୍ଗାରେ ନଈ ପାରିହେଲେ । ବଳରେ ତାକୁ କିଏ ପାରିବ ? ପୁଅଟି ପାରିଗଲାଣି ।

ପାଳିବା—

ସେ ଅଶୌଚ ପାଳୁଛନ୍ତି । ମୁଁ ଏଥର ବାଛୁରୀଟିଏ ପାଳିବି । ଶୁକ୍ରବାର ଦିନ ହାଟପାଳି । ଏଥର ତୁମ ପାଳି ପଡ଼ିବ । ଶାଶୁର ପାଳିଏ ତ ବୋହୂର ପାଳିଏ ।

**ପାଇବ —**

ମୋର ତ ବାଟକୁ ଆଖି ପାଉନାହିଁ (କଳନା କରି ନହେବା)। ଭୋଗଟିକଏ ପାଇଦେଇ ଯିବ, ରହ। ଏ କଥା ତ ମୋ ମନକୁ ମୋଟେ ପାଉନାହିଁ। ତମେ ଏ ମାସର ଦରମା ପାଇଲଣି ? ସେ ଆମିଷ ଖାଇବାକୁ ଭଲପାଏନାହିଁ। ତା' ଗଉଁକୁ ଜଙ୍ଗଲ ଦଉଡ଼ି ପାଇବ ନାହିଁ। କଟକରେ ପହଞ୍ଚିବାକୁ ଆଜି ଆଉ ବେଳ ପାଇବ ନାହିଁ। ଉପର ଡାଳକୁ ମୋ ହାତ ପାଇବ ନାହିଁ।

**ବୁଣିବା—**

ଖତ ବୁଣିଲେ ମହମ୍ବ କୁଆ। ଜମିରେ ଧାନ ବୁଣା ହେଲଣି। ଜାଲ ଖଣ୍ଡେ ବୁଣିବାକୁ ତମକୁ କେତେ ଦିନ ଲାଗିବ ?

**ବୁଲାଇବା—**

ବଡପାଖ ସେ କେତେ ଭୂଆଁ ବୁଲାଇଛନ୍ତି। ହଳ ବୁଲାଇବା କଣ ସହଜ କାମ ହୋଇଛି ? ବୁଲି ବୁଲି ମୋ ତଣ୍ଟି ଶୁଖିଗଲାଣି। ବେଶି ଚଲାବୁଲା କରିବାକୁ ତାଙ୍କର ଶକ୍ତି ନାହିଁ। ମନ୍ତ୍ରୀ ନଟେଇ ବୁଲାଉଛି। ବୁଲାଗୋରୁ ପଶି ଗଛଟି ଖଣ୍ଡିକ ଛାରଖାର କରିଦେଇଛନ୍ତି। ସେ ଏକା ବାଡ଼ି ବୁଲାଇଲେ ତା' ଆଗରେ ଦଶଜଣ ଲୋକ ଠିଆହୋଇ ପାରିବେ ନାହିଁ।

**ଭାଙ୍ଗିବା—**

ରୋଜଗାରିଆ ପୁଅଟି ଚାଲିଗଲା ଦିନରୁ ତାଙ୍କର ଅଣ୍ଟା ଭାଙ୍ଗିଗଲାଣି। ତମର ଏ ବର୍ଷ ଭାଙ୍ଗିଯିବ। ନିଦରୁ ଉଠି ସେ ଅଳସ ଭାଙ୍ଗୁଛି। କଥାଟାକୁ ସାର ଭାଙ୍ଗ କରି ଦେଖିଲେ ଯିବା ହେବ ! ମୂଲିଆଟି ଆଜି ଦଶଟା ଦଉଡ଼ି ଭାଙ୍ଗିଲାଣି। ଝଡରେ ବଢ଼ରେ କଳା ହୋଇ ତାଙ୍କ ଘର ଭାଙ୍ଗିଗଲା। ହାତରୁ ପଡ଼ି ଦର୍ପଣଟି ଭାଙ୍ଗିଗଲା। ସେ ଯେଉଁ ହାଡ଼ଭଙ୍ଗା ପରିଶ୍ରମ କରୁଛି, କେତେ ଦିନ ବଞ୍ଚିବ ? ସେ କେବେ ମୋ କଥା ଭାଙ୍ଗି ପାରିବେ ନାହିଁ। କେତେ ଆଶା କରିଥିଲି, ଶେଷକୁ ପୁଅ ଏମିତି କଲା ? ମୋ ମନ ଭାଙ୍ଗି ଦୁ'ଖଣ୍ଡ ହୋଇଗଲା। ଜର ବେଗରେ ପଡ଼ି ତାଙ୍କର ଦେହ ଭାଙ୍ଗିଗଲାଣି। ଏଥର ସଭା ଭାଙ୍ଗିବ।

**ଫୁଟିବା—**

ଭାତ ଫୁଟିଲାଣି। ଗଛରେ କେତେ ଫୁଲ ଫୁଟିଛି ! ଛୁଟି ଫୁଟିଲା ପରେ ସ୍କୁଲ କଲେଜ ସବୁ ଛାତ୍ରଆଡେ଼ ଭର୍ତ୍ତିହୋଇଗଲାଣି। ବାଣ ଫୁଟାଇ ଶ୍ରେଣୀ କରି ବର ଆସୁଛି। ଏ ଧାନରେ ଭଲ ଖଇ ଫୁଟିବ ନାହିଁ। ତାଙ୍କ ଘରେ କିଆ ଫୁଟିଲେ ଆମ ଘରକୁ ବାସନା ଆସେ। ଲୋଟାଟା ଫୁଟିଗଲାଣି। (କଣା ହୋଇଗଲାଣି)। ବାଣ ନିଆଁ ବାଜି ତା' ଆଖି ଫୁଟିଗଲା। ବାଉଁଶ ଠୋ ଠୋ ହୋଇ ଫୁଟୁଛି। ସବୁବେଳେ ଫୁଟା ପାଣି ପିଇବା ସ୍ୱାସ୍ଥ୍ୟ ପାଇଁ ଭଲ। କଥା କ'ଣ ଆଉ ଫୁଟିଆସ (ପ୍ରକାଶିତ) ନ ହୋଇ ରହିବ ? ତାଙ୍କ ଗୋଡ଼ରେ କଣ୍ଟା ଫୁଟିଯାଇଛି।

**କୁଟିବା—**

କୁଟି ଖାଇ କାଟି ପିନ୍ଧିବା ଉପରେ ମହାତ୍ମା ଗାନ୍ଧୀ ସବୁବେଳେ ଜୋର୍ ଦେଉଥିଲେ । ସେ ବାହାଡରେ ତା'ର ଚୁଟି ଧରି ଦାଉ ଦାଉ କରି କୁଟିଦେଇଗଲା । କେଲୁଣୀମାନେ ଚିଡା କୁଟାନ୍ତି । ଜମେ ମାଂସଚଳନ କୁଟାକୁଟି କରି ରଖ, ପୂଜାପାଇଁ ଆସି ରାନ୍ଧିବ । ଆଗେ କେଉଟମାନେ ଚୂଡ଼ା କୁଟୁଥିଲେ ।

**ପଡ଼ିବା—**

ବ୍ରେରଙ୍କ ତାଉରେ ଗାଁ ଖାଲି ଉଠିଚ ପଡ଼ୁଚି । ଏ ବର୍ଷ ବେଶ୍ ଶୀତ ପଡ଼ିଲାଣି । ଘର ଖଣ୍ଡିକ ଛପର ନହୋଇ ବର୍ଷାରେ ପଡ଼ିଗଲାଣି । ସେ ହଠାତ୍ ବେମାର ପଡ଼ିଗଲେ । ଆପଣ ଠିଆ ହୋଇ ରହିଲେ ମୋତେ ଖାଲି ମାଡ଼ପଡ଼ୁଚି । ଏ ରାସ୍ତା ଆମ ଗାଁକୁ ପଡ଼ିଚି । ମୋର ତ କପାଳ ପଡ଼ିଚି, କାହାକୁ କହିବି ? ଆଜି ବଜାରରେ ନୂଆ ବଇଗଣ ବାଇଗଣ ପଡ଼ିଚି । ମହାନଦୀ ସମୁଦ୍ରରେ ପଡ଼ିଚି । ଗୃହକର ଖଣ୍ଡିକ ଗ୍ରାସିବାରୁ ତାଙ୍କର ଅବସ୍ଥା ପଡ଼ିଗଲାଣି । ପର୍ବ ପଡ଼ିବା ପାଇଁ (ଭୋଜ ଆରମ୍ଭ ହେବାକୁ) କେତେ ବିଳମ୍ବ ହେବ ? ୧୯୭୬ରେ ପୂର୍ବରେ ଗୋବିନ୍ଦ ଦ୍ୱାଦଶୀ ଯୋଗ ପଡ଼ିଥିଲା । ଉପରେ ପଡ଼ି କଥା କହିବା ତାଙ୍କର ଅଭ୍ୟାସ । ଏଥର ତମ ପାଳି ପଡ଼ିବ । ମୋର ଗ୍ରହ ପଡ଼ିଲେ ତାଙ୍କର ନାହି ଦେଉଁଚି । ଆଜି ଘରକୁ ଆସିଲେ କିଏ ତୋ ପିଠିରେ ପଡ଼ିବ ଦେଖିବି । ଲୁଆକାଠର ଧାର ପଡ଼ିଗଲାଣି । ତମ ବିଷୟ ଆଜି ତାଙ୍କ ଘରେ ପଡ଼ିଥିଲା (ଆଲୋଚିତ ହୋଇଥିଲା) । ପାଣ୍ଡୀଖଣ୍ଡିଙ୍କ ରଣ୍ଡି ଚପିଲେ, ସେମାନଙ୍କର ନିଶ୍ୱାସ ପଡ଼ିବ । ଦୁ' ଦିନ ହେଲା ସେମାନେ ଭୋକ ଉପାସରେ ପଡ଼ିଚନ୍ତି । ଝିଅଟିର ବିବାହ ପ୍ରସ୍ତାବ ପଡ଼ିଚି । ମାଲିକ ନାହିଁ—ସୁବିଧା ପଡ଼ିଚି—ମାରନେଉଛନ୍ତି ।

**ଆସିବା—**

ସେ ଆଜି କଟକରୁ ଆସିବେ । କହିଦେଉଥାଇ ପରକୁ, ବୁଦ୍ଧି ନ ଆସଇ ଘରକୁ । ମୋତେ ଏ କାମ ଆସିବ ନାହିଁ । ଆଜି କେତେବେଳେ ତାଙ୍କୁ ଜ୍ୱର ଆସିଲା ? ଯିବା ଆସିବା ତ ଲାଗିଛି ।

**ବୁଡ଼ିବା—**

ପହଁରୁ ପହଁରୁ ସେ ପାଣିରେ ବୁଡ଼ିଗଲେ । ସେ ତ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ କରଜରେ ବୁଡ଼ିଚି ! ତାଙ୍କର କୁଳ ବୁଡ଼ିଗଲା (ବଂଶ ଲୋପ ପାଇଲା) । ତାଙ୍କଠି ମୋର ହଜାରେ ଟଙ୍କା ବୁଡ଼ିଗଲା (ଅଦାୟ ହୋଇପାରିଲା ନାହିଁ) । ଏଥର ବେଲ ବୁଡ଼ିବ । ଘର ବୁଡ଼ା ପାଣି ଆଣୁଏ, କିଏ କହୁଚି ମେଘ ବୁଲୁଚି ।

**ଝାଡ଼ିବା—**

ବୁଣିଆ ତାହାଣୀ ଝାଡ଼େ । ତାଙ୍କର ଆଜି ଘର ଝଡ଼ାଝଡ଼ି ଲାଗିଚି । ମୋ ମନ ଏମିତି ହେଉଚି, ତାକୁ ଦେଖିଲେ ପଦେ ତାନେ ଝାଡ଼ିଦିଅନ୍ତି (ଭର୍ତ୍ସନା କରିବା ଅର୍ଥରେ) ।

ଥର୍ମାମିଟରଟିକି ଭଲକରି ଝାଡ଼ିଦିଅ । ତାଙ୍କର ଆଜି 'ନଡ଼ିଆଗଛ ଝଡ଼ାହେଉଛି । କଲମରୁ କାଳି ଝାଡ଼ିଦିଅ । ମକଦ୍ଦମା କରି ତାଙ୍କ ପକେଟରୁ ଅନେକ ଟଙ୍କା ଝଡ଼ିଯାଉଛି ।

**ବସିବା—**

କାନ୍ଧ କାନ୍ଧ ପିଲଟିର ତଣ୍ଟି ବସିଯାଇଛି । ଶୀତଦିନେ ନଡ଼ିଆ ତେଲ ବସିଯାଏ । ଦହି ବସାଇଛ କି ? ତାଙ୍କର ସଭା ବସାଇଛନ୍ତି । ଚାକିରୀବାକିରି କିଛି ନାହିଁ, ସେ ଘରେ ବସିଛନ୍ତି । ସବୁ କଥାରେ ଜିଦ୍ ଧରି ବସିଲେ କ'ଣ ସଂସାର ଚଳେ ? ରଜା ଅମଳରେ ଏ ହାଟଟି ବସିଥିଲା । ମାର୍ଗଶିର ମାସ ଗୁରୁବାରେ ମାଣ ବସେ । ଦଶହରା ବେଳକୁ ପୂଜା ବସେ । ବୁଢ଼ାଙ୍କର ଅଣ୍ଟା ବସିଗଲାଣି । ପାଣିତକ କିଛି ସମୟ ଥୋଇଦିଅ, ମଇଳା ଯାହା ଅଛି ସବୁ ତଳକୁ ବସିଯିବ । ସେ ମୋତେ ଅନାଇ ବସିଥିବେ । ଗଲା କଥା ଗଲା, ସବୁବେଳେ ଏମିତି ଦାରୁଭୂତ ହୋଇ ବସିରହିଲେ ଚଳିବ ? ଥରେ ଦି'ଥର ଧୋଇଦେଲେ ଲୁଗାଟି ବସିଯିବ । ବଥଟି ବସିଗଲା ।

**କମାଇବା—**

ସେ ଚାକିରି କରି ଟଙ୍କା କମାଇଲାଣି । ଆଜି ଦୁଧ କମାଇଦେଲ କାହିଁକି ? ସବୁଦିନେ ଦାଢ଼ି କମାଇବା ତାଙ୍କର ଅଭ୍ୟାସ । ଖର୍ଚ୍ଚ କମିଗଲେ ଚଳିବାହାରିବା ।

**କଷିବା—**

ହାତୀ ପିଠିରେ ହାଉଦା କଷାଯାଏ । ଅଙ୍କ ସିନା ସବୁଦିନେ କଷିଲେ ମନେରହିବ । ତାଙ୍କ କଷା ମାଂସ ଖାଇ ଭଲଲାଗେ । ବିଦେଶ ଯିବେ ବୋଲି ତ ସେ କମର କଷି ବସିଛନ୍ତି । ରାଗରେ ସେ ତୁରନ୍ତ ସବାରି କଷିଦେଲେ (ସବାରି ଚଢ଼ି ଯାତ୍ରା କଲେ) । ଚାକରର ଦୁଷ୍ଟାମି ଯୋଗୁଁ ମାଲିକ ଏକ ଚାପୁଡ଼ା କଷିଦେଲେ । ବାଉଁଶ ପାଣିରେ କଷା ହେଉଛି ।

**ଛିଡ଼ିବା—**

ବିଲେଇ କପାଳକୁ ଶିକା ଛିଡ଼ିଲା । ମେଘ ଛିଡ଼ି ଛିଡ଼ି ଆସିଲାଣି, ଏଥର ତାପ ପଡ଼ିବ । ପୁରୁଣା ଦଉଡ଼ିଖଣ୍ଡିକ ଛିଡ଼ିଗଲା । ସବୁ ଅଡ଼ୁଆ ତ ଏଥର ଛିଡ଼ିଗଲା, ଆଉ ଚିନ୍ତା କ'ଣ ? ଦୁଧ ଛିଡ଼ିଗଲେ ଛେନା ହେବ । ନଈଟା ବଢ଼ିଥିଲା, ହଠାତ୍ ଛିଡ଼ିପଡ଼ିଲା । ନଖରେ ଛିଡ଼ିବା ପଦାର୍ଥକୁ କୁରାଢ଼ି କଟୁରି କାହିଁ ? (ସାମାନ୍ୟ ବ୍ୟାପାର ନିମନ୍ତେ ବଡ଼ ଆୟୋଜନ ଅର୍ଥରେ) । କରଣ ଛିଡ଼ା ଛିଡ଼ା ଚଷା (ଅବନତି ଅର୍ଥରେ) । ତମ ସାଙ୍ଗରେ ମୋର ସମ୍ପର୍କ ଆଜିଠୁଁ ଛିଡ଼ିଗଲା (ସମାପ୍ତି ଅର୍ଥରେ) ।

**ଟେକିବା—**

ମୋତେ ସେ ଯାହା କଲା ନା, ମୁଁ ମୁଣ୍ଡ ଟେକି ବାଟ ଚାଲିପାରୁନାହିଁ । ଆଜି ତ କାହିଁକି ସେ ତୁମକୁ ଟେକୁଥିଲେ ! (ପ୍ରଶଂସା ଅର୍ଥରେ) ସାପଟି ଫଣା ଟେକିଛି । ଯାହା କୁହ ପଛେ, ଏ ଟେକାଟେକି କାମ ମୋ ଦେଇ ହୋଇପାରିବ ନାହିଁ । କେମିତି ମୁଁ

ଏ ଅବସ୍ଥାରୁ ମୁକୁଳିବ, ସେଥିପାଇଁ ସବୁଦିନେ ଧର୍ମଦେବତାଙ୍କୁ ପାଣି ଟେକୁଚି । (ପ୍ରାର୍ଥନା କରିବା ଅର୍ଥ) । ପିଲମାନେ ଆଣ୍ଠୁଲି ଟେକିଲେଣି ?

**ତୋଳିବା—**

ଫୁଲ ତୋଳୁ ତୋଳୁ ସେହ୍ନିତକୁ ସାପ କାମୁଡ଼ି ଦେଲା । ତାଙ୍କର ଘର ତୋଳା ହେଉଛି । ହାଟରୁ ତୋଳା ଆଦାୟ କରି ସେ ଏବେ ଚଳୁଛନ୍ତି । ସୁନା ତୋଲାକର ଦାମ୍ ଏବେ ଦୁଇହଜାର ଟଙ୍କା । ତୋଳାଜନ୍ୟାଟିଏ ଆଣି ରାମବାବୁ ନିଜ ପୁଅର ବାହାଘର କାମ ସାରିଦେଲେ । ଦଣ୍ଡିଆମାନେ ପାଣି ତୋଳୁଛନ୍ତି । କଫରେ ପିଲଟି ତୋଳି ହେଉଛି ।

**ବାନ୍ଧିବା—**

ବାଣୁଆ ଶର ବାନ୍ଧି ଦୁଇଟା ହରଡ଼ ଚଢ଼େଇ ମାରିଛି । ନିତି ନିତି ମୁଣ୍ଡ ବାନ୍ଧିବା କିଛି ଭଲ କଥା ନୁହେଁ । ଆ ବଳଦ ମେ.ଟେ ବାନ୍ଧ୍ (ଭୂଷିବା ଅର୍ଥରେ) । ବଡ଼େଇ ବାଉଁଶରେ ବାନ୍ଧି କଲା ।

**ଧରିବା—**

ବାହାଘର ପାଇଁ ତାଙ୍କର ଦିନ ଧରାସରିଲଣି । କୁକୁର ଚୋରକୁ ଧରିଲା । ଏତିକି ଜାଗାରେ ଏତେ ଜିନିଷ ଧରିବ କେମିତି ? ଏଥର କାନରେ ଯୁଆଳି ପଡ଼ିଲଣି, ବଳେ ମନ ଘର ଧରିପିବ ଯେ ! ସେ ତ ସେଇ ପୁରୁଣା କଥାକୁ ଧରିବସିଚି, ଏଥିରେ ନିଷ୍ପତ୍ତି ହେବ କେମିତି ? ଯାଆ, ଏଥର ତାଙ୍କର ଗୋଡ଼ହାତ ଧରି କ୍ଷମା ମାଗ । କାଳିଠୁଁ ମୋର ଅଣ୍ଟା ଧରିଛି । ଏଥର ବାଛୁରୀଟିକୁ ଧରାଇଦିଅ । ସବୁବେଳେ କଥା ଧରିଲେ ସଂସାରରେ ଚଳିବ କେମିତି ? ତାର ଆଖି ଧରିଛି । ଶୁଖିଲା କାଠରେ ଶୀଘ୍ର ନିଆଁ ଧରେ । ଚଞ୍ଚଳ ଗୋଡ଼.କାଢ଼ୁ ଚାଲିଲେ ତମେ ଗାଡ଼ି ଧରିପାରିବ । ବେଶି ଚାଧାଅ ନାହିଁ – ସର୍ଦ୍ଦି ଧରିବ ।

**ପକାଇବା—**

ଭଗବାନଙ୍କ ପାଖରେ ସେ ତାଙ୍କ ପୁଅର ବାଳ ପକାଇବେ । ପକାଇଲା ଛେପ ଚୋବାନ୍ତି ନାହିଁ । ସେ ତୋଳେ ପକାଇଛି (ପେଟେ ଖାଇଛି) । ମୁଁ ଏ ବିଷୟ ତାଙ୍କ ଆଗରେ ପକାଇବି (ଉତ୍ଥାପନ କରିବା ଅର୍ଥରେ) । ଗଛଟି ଚଅଁର ପକାଇଲଣି । ଗାଈ ଗୋଟିଏ ମାଈ ବାଛୁରୀ ପକାଇଛି । ଯାହା ପାଇଲା ସବୁ ତ ପକେଟରେ ପକାଇଲ, ଏଥିରେ ଘରକର ରହିବ କେମିତି ? ବାନ୍ଧୁ ପଡ଼ିଗଲା । ବାଟ ପଡ଼ିଗଲା । ବଳିପଡ଼ିଲା ।

**ଲଗାଇବା—**

ଗାଧୋଇ ସାରି ତେଲ ଲଗାଇବା ଅନୁଚିତ । ସମସ୍ତେ ହାତ ଲଗାଇଲେ ସିନା କାମଟା ଶୀଘ୍ର ହୋଇଯାଆନ୍ତା ! ସନ୍ଧ୍ୟାହେଲା, ଏଥର ଦୀପ ଲଗାଇଦିଅ । ସେ ବେକରେ ବଡ଼ ହାରଟିଏ ଲଗାଇଛନ୍ତି (ପିନ୍ଧିଛନ୍ତି) । ତାଙ୍କ ବଗିଚାରେ ବଡ଼ ବଡ଼ ଗୋଲାପ ଗଛ ଲଗାଇଛନ୍ତି । ଚାକରଟାକୁ ସବୁବେଳେ କାମରେ ଲଗାଇବା ଉଚିତ ନୁହେଁ ।ପାନରେ

ଚୂନ ଲଗାଇ ମୋ ଆଡ଼କୁ ବଢ଼ାଇଦିଅ । ସେ ତାଙ୍କ ବାପାଙ୍କ ସୁନାମରେ କଳଙ୍କ ଲଗାଇବେ । ଏଥର ଖିଆ ଲଗାଅ ! (ପରିବେଷଣ କର) । ମୋ ପାଇଁ ମନ୍ଦିରରେ ଟଙ୍କାକର ଭୋଗ ଲଗାଇ-ଦେବ । ମନ ଲଗାଇ କାମ କର । ସେ ଏଥର ଆଉ କିଛି ଟଙ୍କା ବ୍ୟବସାୟରେ ଲଗାଇବେ । କଳି ଲଗାଇ ବୁଲିବା ନାରଦଙ୍କ ପ୍ରକୃତି ।

## ଗୋଟିଏ ଶବ୍ଦର ବିଭିନ୍ନ ଅର୍ଥରେ ବ୍ୟବହାର

ବକ୍ତବ୍ୟକୁ ସୁନ୍ଦର ଏବଂ ରୁଚିକର ଭାବରେ ପ୍ରକାଶ କରିବା ନିମନ୍ତେ ମନୁଷ୍ୟ ସର୍ବଦା ସଚେତନ । ଏଥିନିମନ୍ତେ ସେ ବହୁ ଉପାୟ ଅବଲମ୍ବନ କରିଥାଏ । ଦେଶଭେଦରେ ବକ୍ତବ୍ୟର ଢଙ୍ଗ ମଧ୍ୟ ବଦଳିଯାଏ । ଓଡ଼ିଆରେ ସେହିଭଳି କଥା କହିବାର ଅନେକ ସୁନ୍ଦର କୌଶଳ ବା ସ୍ୱୀତ ପ୍ରଚଳିତ । ଏଗୁଡ଼ିକ ମଧ୍ୟରୁ ଅନେକ ଅବଶ୍ୟ ଗ୍ରାମାଞ୍ଚଳରେ ବ୍ୟବହୃତ । ସାହିତ୍ୟରେ ଏସବୁର ବହୁଳ ବ୍ୟବହାର ଦେଖିବାକୁ ମିଳେନାହିଁ । ବ୍ୟବହାର ଅଭାବରୁ ଏ ମଧ୍ୟରୁ ଅନେକ ଇତିମଧ୍ୟରେ ବିଲୟମୁଖୀ ହୋଇଗଲେଣି । ସାରଳା ଦାସ ତାଙ୍କ ରଚନାରେ ଯେଉଁସବୁ ଭାଷା-କୌଶଳ ପ୍ରୟୋଗ କରିଥିଲେ, ସେ କାଳରେ ତାହା ହିଁ ଥିଲା ସାମାଜିକ ଜୀବନର ଭାଷା, ଆଜି ସେ ସବୁ ନାହିଁ । ବକ୍ତବ୍ୟ ପ୍ରକାଶ ନିମନ୍ତେ ଆଜି ଆମକୁ ଅନ୍ୟ ଭାଷାର ଦ୍ୱାରସ୍ଥ ହେବାକୁ ପଡ଼ୁଛି । ଗୋଟିଏ ଦିଗରେ ଆମର ଭାଷା ଅବଶ୍ୟ ଏହିଭଳି ଆମଦାନି ପ୍ରକ୍ରିୟାଦ୍ୱାରା ସମୃଦ୍ଧ ହେଉଛି । ତେବେ ଅନ୍ୟ ଦିଗରେ ଆମର ନିଜସ୍ୱ ଷ୍ଟଦ-ଗୀତ ଲୋପପାଇଯାଉଛି । ନିମ୍ନରେ ଏହିଭଳି କେତେକ ଦୁର୍ଲଭ ପ୍ରୟୋଗ ବିଷୟରେ ଆଲୋଚନା କରାଯାଉଛି ।

ଠା—

ଠାଆ କରିଦିଅ, ବାବୁ ଖାଇବାକୁ ଆସୁଛନ୍ତି । ହଳିଆ ବଳଦ ଯୋଚିଲାଠେଇଁ । ମାସକ ଭିତରେ ମୁଁ ତିନିଠାଆ ହେଲିଣି । ମୋ ଘରଠେଇଁ ମୋତେ ଅପେକ୍ଷା କରିବ ।

ପକ୍ଷ—

ତାଙ୍କର ଆଉ ସାହାପକ୍ଷ କେହି ନାହିଁ । ତୁମେ କେଉଁ ପକ୍ଷରେ ରହିବ, ଆଜି ଠିକ୍ କହିଥାଅ । ମାସେ ପକ୍ଷେ ଯାଇନାହିଁ, ଦିନ ଦଶରେ ତ ତାଙ୍କର ପକ୍ଷାଘାତ ରୋଗ ହୋଇଛି ।

ଫଳ—

ଏତେ ପାଠଟିଉଣିରେ କି ଫଳ ? ତମ ଗାଈଟି ଫଳ ଯାଇଚି ପରା ? (ଗର୍ଭବତୀ ହେବା ଅର୍ଥରେ) ମୁଁ ଯଦି ନ୍ୟାୟରେ ଥିବି ତେବେ ମୋ କଥା ନିଶ୍ଚୟ ଫଳିବ । କେତେଣ୍ଡି ମାଛ ଖାଇ ତା' ଦେହସାରା ଫଳିଯାଇଛି । ଏବେ ପୁଣି ବର୍ଷରେ ନଡ଼ିଆ ଗଛ ଫଳୁଛି । ତୁମ

ପରୀକ୍ଷାର ଫଳ କେବେ ବାହାରିବ ? ମୁନି-ଋଷିମାନେ ଫଳମୂଳ ଖାଇ ଜୀବନ ଧାରଣ କରୁଥିଲେ । କର୍ମଫଳ କିଏ ଖଣ୍ଡିପାରିବ ?

**ଧାର—**

ମୁଁ ପାନ ବିଡ଼ି ସିଗାରେଟ୍‌ର ଧାର ଧାରେ ନାହିଁ । ଆଜିକାଲି ବ୍ୟାଙ୍କ ଓ ଣ୍ଡାଧାରରେ ବାଟ ଚାଲିବା ଲୋକଙ୍କ ସମସ୍ତଙ୍କୁ ପରାସ୍ତ କରିପାରିବେ । ଏ କଟୁରିଟାରେ ମୋଟେ ଧାର ନାହିଁ । ସେ ମୋ'ଠୁଁ ଶହେ ଟଙ୍କା ଧାରିଛି । ଏ ବର୍ଷ ନଦୀର ଧାର ଶୀଘ୍ର ଶୁଖିଗଲା । ଯାତ୍ରା ପଡ଼ିଆକୁ ଲୋକଙ୍କ ଧାର ଲମ୍ବିଛି ।

**ଖଟା —**

ଏ କମଳାଟା ଅତି ଖଟା । ବୋହୂଟି ପାଞ୍ଚବର୍ଷ ହେଲା ଖଟିଲାଣି (ଶଶୁର ଘରକୁ ଆସିବା ଅର୍ଥରେ) । ସାରେଅ ତାଙ୍କର ବାଡ଼ି ଡାଟି ଝଟିଥାଏ (ମଇଲା ପରିଷ୍କାର କରିବା ଅର୍ଥରେ) । ଗୃହକର୍ତ୍ତାଙ୍କୁ ଖଟେଇ ଝଟେଇ ସେ ମାଇଲେ । ଛେଳିଗୁଡ଼ାକୁ ଖଟେଇ ପକାଅ (ବାନ୍ଧିବା ଅର୍ଥରେ) । କେତେ ଟଙ୍କା ତମେ ଖଟେଇ ପାରିବ ? (ଲଗାଇବା ଅର୍ଥରେ) ।

**ଯୋଡ଼—**

ସୂତାରେ ଗଣ୍ଠି ପକାଇ ତାକୁ ଯୋଡ଼ିଦିଅ । ରାମ ସୀତାଙ୍କର ଯୋଡ଼ି ସୁନ୍ଦର । ମୂର୍ତ୍ତିଏ ଯୋଡ଼ ନପାଇଲେ କ୍ୟୋତିଷୀ କଦାପି ଏଠୁ ଉଠିବେ ନାହିଁ । ଯୋଡ଼ାଏ ପ୍ୟାଣ୍ଟ ହେଲେ ମୋର ବର୍ଷକ ଚଳିଯିବ । ମୁଁ ହାତ ଯୋଡ଼ୁଛି, ଆଉ ଏତେ ରାଗ ନାହିଁ । ଏଇଠୁ ତ ଯୋଡ଼ ଖସିଯାଇଚି, ମେସିନ ଚାଲିବ କେମିତି ?

**ଲେଖା—**

ସେ ମୋର ଭାଇ ଲେଖା ହେବେ । ଲେଖାଲେଖି ପାଇଁ ଉପଯୁକ୍ତ ପରିବେଶ ଦରକାର । ମୁଁ କେତେ ଲେଖାଲେଖି କରି ଏ କାମଟି ପାଇଚି । ଆଳୁଆ ଲେଖାରେ ବାଳିଆ ବନ୍ଧୁ । ସେ ବା କୋଉ ମଣିଷରେ ଲେଖା ? ଜଣକେ ଗୋଟିଏ ଲେଖାଁ ମିଠା ନେଲେ ଭାଗ ଛୁଣ୍ଡିବ । ଲେଖାଯୋଖାରେ ଏମିତି କେତେ ବନ୍ଧୁ କେତେଠି ବାହାରିବେ ।

**ତାର—**

ତାଙ୍କର ତାର ଆସିବାରୁ ସେ ଛୁଟିରେ ଗଲେ । ମାର ଅବା ତାର, ତମଛଡ଼ା ମୋର କିଏ ଅଛି ? ତାରକସି କାମରେ ଆଖି ଲାଖିରହେ । ତାର ବନ୍ଧା ହେଲେ ସିନା ବେହେଲା ବାଜିବ ! ତା'ର କଥା ଶୁଣିଲେ ହସି ହସି ପେଟ ଦରଜହେବ ।

**ଚର—**

ପିଲାଟି ଭୟରେ ଚର୍‌ଚର୍ କରି ପରିସ୍ରା କରିପକାଇଲା । ବନ୍ଧୁପଡ଼ରେ ତ ଘାସ ଚରିଗଲେଣି, ତାର ଆଉ ଅବସ୍ଥା ଅଛି ? ଗୋରୁଗାଈ ଚରିବାକୁ ଗଲେଣି । କାହୁଁ ଆସିଲା

ଏ ବର୍ଷ, ଜମିଦାର୍ ସବୁ ବାଲିଚର କରିଦେଲେ । ଶାସନ ପାଇଁ ଗୁପ୍ତଚର ଜରିଆରେ ଖବର ସଂଗ୍ରହ କରାଯାଏ ।

**ଫୁଲିବା —**

ପାଟିରମାନେ ମାଳ ପାଟଫୁଲ ବିକନ୍ତି । ତାଙ୍କର ଗୋଡ଼ ଫୁଲିଲାଣି, ଆଉ ଭରସା କ'ଣ ? ମଲ୍ଲି ଗଛଟା ଫୁଲ ଫୋଲି ଫିଟ ହୋଇଗଲାଣି । ଉ କେତେ ଫୁଲୁଚୁ ଫୁଲୁଥା, ବାପା ଆସନ୍ତୁ, ସବୁ ମଜା ତୋର ବାହାରିପଡ଼ିବ । ମଶିଷ ବୁଲିଲେ ମରେ, ବାଉଁଶ ଫୁଲିଲେ ମରେ । ଖେଳରେ ଜିତିଚୁ ବୋଲି ଏତେ ମନ ଫୁଲଣା କାହିଁକି ?

**ଓଳି—**

ତାଙ୍କ ଘରେ ଓଳିକ ଦାନା ନାହିଁ । ଓଳିଆରେ ମୁଗ ବରି ବନ୍ଧାଯାଏ । ସେ ତ ଓଳିଆରୁ ପଡ଼ି ଗଲା ! ବାପା ମା'ତ ଗଲେ, ପିଲାଗୁଡ଼ିକ ଏବେ ବାରଓଳି ଶୁଣି ପିଣ୍ଡା ହେଉଛନ୍ତି । ବର୍ଷାଦିନେ ମୂଲିଆମାନେ ଏକଓଳିକଥା କରିଦିଅନ୍ତି । ଘରଟାକୁ ଓଳାଇ ଦିଅ । ବାଉଁଶ ଖଣ୍ଡିକ ଓଳାଇଦେଲେ (ସଫା କରିଦେଲେ) ବାଡ଼ ବୁଜାଯିବ । ଓଳିଏ କ୍ଷୀର (ଏକପ୍ରକାର ମାପ) ତମେ ଏକା ଖାଇଦେଲ ?

**ଦର—**

ଗୁଡ଼ଲ ଏବେ କି ଦରରେ ମିଳୁଛି ? ଏମିତି ଦରହସା ଲୋକ ମୁଁ ମୋ ଜୀବନରେ ଦେଖିନାହିଁ । ଭାତ ଦରଫୁଟା ହୋଇଛି । ଦରପାଚିଲା ପିଜୁଳି ଖାଇବାକୁ ଭଲ । ରାମ ତ ଦରପାଠୁଆ ହୋଇ ବୁଲୁଚି, ତାକୁ ଚାକିରି ମିଳିବ କୁଆଡ଼ୁ ? ଏମିତି ଧମକାଇଲୁ ଯେ ମୁଁ ଦରଖିଆ ହୋଇ ଉଠିଆସିଲି ।

**ବଳି—**

ଚତୁରତାରେ ସେ ସମସ୍ତଙ୍କୁ ବଳିଛି । ମହାଷ୍ଟମୀ ଦିନ ଠାକୁରାଣୀଙ୍କ ପାଖରେ ବଳି ପଡ଼େ । ସଞ୍ଜ ବଳି ରଖିଦେଇଥା । କାଲି ରାତିରେ ବହୁତ ଭାତ ବଳିପଡ଼ିଲା । ତା'ର ଦେହଟା ବଳିଲା ପରି ହୋଇଛି ।

**ବାର—**

ବାର ବାର କରି ତାଙ୍କୁ ବୁଝାଇ କହିବ । ବାରବେଳାରେ କେବେ ଘରୁ ଗୋଡ଼ କାଢ଼ିବ ନାହିଁ । ଥରେ ବାରିଦେଲେଣି ଯେତେବେଳେ, କଥାଟା ନିଷ୍ପତ୍ତି ରଖିବେ । ଆହାରରେ ଭଲ ମନ୍ଦ ବାରିବା କଥା ନୁହେଁ । ମଙ୍ଗଳବାରଟା ମୋଟେ ଭଲ ଦିନ ନୁହେଁ । ବାରଘର ଗଲେ ସେ ଘରକୁ ଆସିବେ ।

**ଖଣ୍ଡ—**

ଏ ଖଣ୍ଡମଣ୍ଡଳରେ ଭଲ ତାଙ୍କପରି ଲୋକ ମିଳିବେ ? କୋଇଲି ଲୋ, ଖଣ୍ଡକ୍ଷୀର ଦେବି ମୁଁ କାହାକୁ ? ମୋ ପାଇଁ ଖଣ୍ଡେ ଲଫାଫା ଆଣିବ । ମାଛକୁ ଖଣ୍ଡ ଖଣ୍ଡ କରି କାଟିବ । କିଏ ମୋର ଦୁଃଖ ଖଣ୍ଡିବ ? ପଣ୍ଡିତ ବ୍ୟକ୍ତିର ଯୁକ୍ତି ଖଣ୍ଡନ କରିବା କଷ୍ଟସାଧ୍ୟ ।

**କାଳ—**

କି କାଳ ହେଲା, କେହି କାହାରିକୁ ମାନୁନାହାନ୍ତି । ଦି' ବର୍ଷ ହେଲା ତାଙ୍କର କାଳ (ମୃତ୍ୟୁ) ହୋଇଗଲାଣି । ତମେ ଯାହା କଲ, କାଳକାଳକୁ କଥା ରହିଗଲା । କାଳବେଳାରେ ଘରୁ ଗୋଡ଼ ଛାଡ଼ିବା ଅନୁଚିତ ।

**ପଣ—**

ଏଇ ଗଛରେ ପଣ ଝାହାଣ ହୋଇ କଡ଼ିଆ ଫଳୁଥିଲା (ସଂଖ୍ୟା ଅର୍ଥରେ) । ତା'ର ପୁଅପଣିଆ ଆଜି ବାହାର କରୁଛି । ଏବେ ବଡ଼ପଣକୁ ଧର୍ମ ସହିଲେ ହେଲା ! ପଣ କରୁଛି, (ଶପଥ କରିବା ଅର୍ଥରେ) ଏ କାମ ଆଜି ଭିତରେ ନିଶ୍ଚୟ ସାରିବି । ଧାନ ପଣା ହୋଇଛି (କୁଣ୍ଟା ହେବା ନିମନ୍ତେ ଛିଞ୍ଚି ସମାରେ ଢଆସିବା ଅର୍ଥରେ), ସେ ଏତେବେଳେ କମିତ ଆସିବେ ? କାମ ନାହିଁ ଧାମ ନାହିଁ, ଗୁଚ୍ଛାଟାରେ ଏଓଳ ସେଓଳ ଦି' ଥାଳ ଭାତ ପଶୁଛି ।

**ତାଳ—**

ବର୍ଷାଦିନରେ ତାଳ ପାଚେ । ସେ ଶେଷରେ ମୋ ଉପରେ ତାଳଛିଡ଼ାଇଲେ । ତାଙ୍କ ସାଙ୍ଗରେ ତାଳଦେଇ ଚାଲିବା କ'ଣ ସହଜ କଥା ? କରତାଳ ଧ୍ୱନିରେ ଚତୁର୍ଦ୍ଦିଗ କମ୍ପିତ ହେଲା । କୋଡ଼ାରେ ତାଳ ଖଣ୍ଡେ ନପକାଇଲେ ଆଉ ନୁହେଁ । ନଦୀ ଗର୍ଭରେ ସାତତାଳ ପାଣି ହେବ । ଭ୍ରମର ଗୀତଟି ବେତାଳିଆ ଧରିଯାଉଚି । ତାଳ, ମାନ, ଲୟ—ଏ ତିନୋଟି ନେଇ ନୃତ୍ୟ ।

**କାତ—**

କବି ଯା କରେ ମୂର୍ଖଙ୍କୁ ମୁଢ, ଏଥିରୁ ବଡ଼ ନାହିଁ ବିପତ୍ତି, ଏଥିକି ପ୍ରତି ପୁତ୍ରକ କାତ (ଛୁରି) ମାରିବା ଭଲ ଯେ । (ଉପକଲ୍ଲୋଳ) ମାଛର କାତ ଛଡ଼ାଇ ଦିଅ । ଘୁଆକାତଟା ଦଳଡ଼ା ଧରିଗଲାଣି । ଖପରକାତ ଟିଏ ଟେଳ୍ଚେଇ ପାଣି ଉପରେ ପକାଇଦେଲେ, ତାହା ଖଣ୍ଡେ ଦୂର ଡେଇଁ ଡେଇଁ ଯାଏ ।

**ପଡ଼ିଆ—**

ଗାଈଟି ପଡ଼ିଆରେ ଚରୁଛି । କାମ ପଡ଼ିଆ ରଖିଲେ ମୋତେ ଭାରି ଅସ୍ୱସ୍ତି ଲାଗେ । ପଡ଼ିଆ ଜମିକୁ ଉଠିଆ ନକଲେ ଖାଦ୍ୟ ଆସିବ କୁଆଡ଼ୁ ? ପଡ଼ିଆ ସୁନାରେ ଏ ଗହଣା ଖଣ୍ଡ ତିଆରି ହୋଇଛି । ଘର ଏବେ ପଡ଼ିଆ ପଡ଼ିଛି (ଶୂନ୍ୟ ଅର୍ଥରେ) । ଗାଈଟି ପଡ଼ିଆ ହୋଇ-ଗଲାଣି (ଦୁଧ ନଦେବା ଅର୍ଥରେ), ଦୁଧ କୋଉଠୁ ଆସିବ ?

**କଳା—**

ବଦଳି ଗୁହରେ ହାଣ୍ଡିରେ କଳା ପଡ଼େନାହିଁ । ପିଲାଟିକୁ ଟିକିଏ କଳା ଲଗେଇଦିଅ । ମୃତ୍ୟୁ ପୂର୍ବରୁ ଶ୍ରୀକୃଷ୍ଣ ଅର୍ଜୁନଙ୍କ କଳା ହରଣ କରିନେଲେ । କଳାଧନରେ ତାଙ୍କର ଏତେ ପ୍ରତିପତ୍ତି ପିନା ! କ'ଣ ହୋଇଛି କେଜାଣି, ଘଡ଼ିଏ ହେବ କାନ୍ଦି କାନ୍ଦି ପିଲାଟା ଡ

କୋଳାହଳ ପଡ଼ିଗଲାଣି । କେଶରୀ ହରିଶ୍ଚନ୍ଦ୍ର ଦେବ ହତ୍ୟା ଅପରାଧରେ କଳାପାଣି ପାର ହୋଇଥିଲେ । ସାବଧାନ ନହେବ ତ ସେମାନେ ଘରେ କାଳା କନା ବୁଲେଇଦେବ । ସଙ୍ଗୀତ ଆଉ ନୃତ୍ୟ କଳାରେ ତାଙ୍କର ବେଶ୍ ଦଖଲ ଅଛି ।

**ଗାର—**

ଲକ୍ଷ୍ମଣ କୁଟୀର ଦ୍ୱାରରେ ଗୋଟିଏ ଗାର କାଟିଥିଲେ । ତାଙ୍କ କଥା ଜାଣ ବେଦର ଗାର । ଅଙ୍ଗାରରେ ଗାର କାଟନାହିଁ । ବହିଟାକୁ କାହିଁକି ଗାରେଇଅଛ ? ସବୁ କଥାରେ ଗାର ମାରିବା (ସମାଲୋଚନା ଅର୍ଥରେ) ତାଙ୍କର ପ୍ରକୃତି । ତାଙ୍କ କଥା ପାଣିରେ ଗାରଭଳି (ମୂଲ୍ୟହୀନ) ! ତାଙ୍କ କଥା ପଥରରେ ଗାର ଭଳି (ନିଶ୍ଚିତ ଅର୍ଥରେ) ।

**ହାଟ—**

ଆମ ଗାଁରେ ସପ୍ତାହକୁ ଥରେ ହାଟ ବସେ । ଲଳିତା ନାଁରେ ଗାଁରେ ହାଟବସିଚି (ଅପବାଦ ଅର୍ଥରେ) । ଏକଥା ଦାଣ୍ଡରେ ପଡ଼ି ହାଟରେ ଗଡ଼ିଗଲାଣି । ମାସେ ହେବ ଦାସଙ୍କ ଦୁଆରେ ହାଟବସିଚି । ହାଣ୍ଡିହାଟଟିଏ ବସାଇବାକୁ ସେ ସ୍ଥିର କରିଛନ୍ତି । ମାର୍ଗଶିର ମାସରେ ଯୋଡ଼ଷ ଜଳାଶୟରେ ଫୁଲହାଟ ବସିଯାଏ । ହାଟ ଭିତରେ ବ୍ରହ୍ମଜ୍ଞାନ ।

**ପାଣି—**

ସେ ମୋତେ ଠିକଏ ପାଣି ପିଆଇଛନ୍ତି, ମୁଁ ତାକୁ ସହଜେ ଛାଡ଼ିବ ? ଆଜି ଗୋଟେ ଦୁଇଟା ପାଣି ପାଇଲେ, ଆଳୁଗଛ ଭଲ ମାଡ଼ିବ । ପୋଖରୀ ପାଣିରେ ଗାଧୁଅ ନାହିଁ, ତମକୁ ପାଣି ଧରିବ । ବୃଥା ଏତେ ଟଙ୍କା ମୋର ପାଣିରେ ପଡ଼ିଲା । ଏତେ ଆୟୋଜନ, ଏତେ ବ୍ୟବସ୍ଥା' ବର୍ଷାଟା ହେବାରୁ ସବୁ ପାଣିଫାଟିଗଲା । ସବୁ ପାଠ ପାଣିକରି ପିଇଦେଇଛୁ; ଦେଖିଲ ପିଲା ଖଣ୍ଡେ ! ପୋଲିସ୍ ନାଁ ଶୁଣିଲେ ଭୟରେ ତା' ପିଲେହି ପାଣି ହୋଇଯାଏ । କ୍ଷୀର ପାଣି ଫାଟିଗଲା । ଏ ପାଣିଚିଆ କଥା କୁହନା । ଅମୃତା ପାଣିଚିଆ ଲାଗୁଚି ।

**ଗରମ—**

ଆଜି ଖୁବ୍ ଗରମ ଲାଗୁଛି । କରେ, ପଇସା ଗରମ ଦେଖାଉଛୁ କି ? ପୂଜାବଜାର ଖୁବ ସରଗରମ ହୋଇଛି । ମୋର ସେମିତି ନରମଗରମ ବିଶେଷ ନାହିଁ । ତୁ ଗଲୁ ଭାଇ, ତୋ ସାଙ୍ଗରେ ଗପିବାକୁ ମୋର ବେଳନାହିଁ, ବୁଢ଼ା ଏଇନେ ଆସିଲେ ମୋ ଉପରେ ଗରମ (ବିରକ୍ତ) ହେବ । ଗରମ ଖାଦ୍ୟ ଦେହ ପାଇଁ ହିତକର । ଏତେ ଗରମ କଥା କୁହନା—ନରମ ହୁଅ । ତାକୁ ଗରମ ରୋଗ (ଉପଦଂଶ, ମେହ) ହୋଇଛି ।

**ମନ୍ଦ—**

ସେ ଜଣେ ନିତାନ୍ତ ମନ୍ଦ (ଖରାପ ସ୍ୱଭାବ) ଲୋକ । ମୋର ପୁଣି ଭଲ ମନ୍ଦ କ'ଣ—ସବୁ ତ ତାଙ୍କୁ ସମର୍ପି ଦେଇଛି । ପାଣି ମନ୍ଦାକ ଜାଣ ମୋ ଜୀବନ ରଖିଦେଲା । ମନେକର କଖାରୁ ମନ୍ଦାରେ ପାଣି ଦେଉଥିବୁ । ତାଙ୍କର ମନ୍ଦ ମନ୍ଦ ହସ ଗୋଟାଏ ଦେଖିବାର ଜିନିଷ ।

**ଛଡ଼ା—**

ଏମିତି ଛେଳାକୁ ଗ୍ରେପା ଛଡ଼ା କଥା ଶୁଣିଲେ ମୋ ଦେହ ଚଡ଼େ। କଲେଜ ପାଖରୁ ଅଳ୍ପ ଛଡ଼ାରେ ପୋଷ୍ଟ-ଅଫିସ। ତମ ଛଡ଼ା ମୋର ଆଉ କିଏ ଅଛି ? ତୁ ଲକ୍ଷ୍ମୀଛଡ଼ାଟା'ଏ କରେ ? ତମ ଛଡ଼ାଟି (ମାଇ ବାଛୁରି) ଏଥର ଫଳ ଦିବ। ଏ ଛଡ଼ାଫୁଲଟି (ଠାକୁରଙ୍କ ପ୍ରସାଦ ଫୁଲ) ନିଅ, ତମ ପୁଅ ମୁଣ୍ଡରେ ଛୁଆଁଇଦେବ। ଠିକ୍‌ବେଳକୁ ତମେ ତ କରଛଡ଼ା ଦେଇ ରହିଲ, ମୁଁ ଏକା କୁଆଡ଼େ କ'ଣ କରିବି ? ଚନାବାଦାମରୁ ଗ୍ରେପା ଛଡ଼ାଇଦିଅ। ବସନ୍ତ ଘା'ର ବକଲା ଛାଡ଼ିଲାଣି।

**କଣା—**

ନିଆଁ ଧାସ ବାଜି ତାଙ୍କର ଆଖିଟିଏ କଣା ହୋଇଗଲା। ଭିଟାମିନ୍ ଅଭାବରେ ଅନ୍ଧାରକଣା ରୋଗହୁଏ। ତାଙ୍କ ପରିବାରରେ ନାନାପ୍ରକାର କାଇଦା କଟକଣା ଭିତରେ ପିଲାମାନଙ୍କୁ ମଣିଷ କରାଯାଏ। କାନ୍ଥରେ କଣାକରି କଣ୍ଟା ବାଡ଼ାଅ।

**କାଣ୍ଡ—**

କାଣ୍ଡମାରି ଆଦିବାସୀମାନେ ଶିକାର କରନ୍ତି। କାଣ୍ଡବିନ୍ଧା ପୋକ ଧାନ ଗଛର ପ୍ରଧାନ ଶତ୍ରୁ। ଏ ବରଗଛର କାଣ୍ଡଟି (ଗଣ୍ଡି) ଅତ୍ୟନ୍ତ ମୋଟା। କାଣ୍ଡେ ଭାଗବତ ପଢ଼ିବା ତାଙ୍କର ପ୍ରତିଦିନର ଅଭ୍ୟାସ। ସାପଟି କାଣ୍ଡ ମାଇଲ୍ ପରି ଗ୍ଲଲିଗଲା।

**ଛନ୍ଦ—**

ଛନ୍ଦରେ ଗାଈର ଗୋଡ଼କୁ ଛନ୍ଦି ତାକୁ ଦୁହାଁଯାଏ। ଓଡ଼ିଶାରେ ଆଗେ 'ବଙ୍ଗଳାଶ୍ରୀ' ଛନ୍ଦର ବହୁତ ଆଦର ଥିଲା। ମୋତେ ଏତେ ଛନ୍ଦ କପଟ ଭଲଲାଗେନାହିଁ।

**ଥର—**

ତୁମେ ଦିନକୁ କେତେ ଥର ଖାଅ ? ଶୀତରେ ଲୋକଟି କେମିତି ଥରୁଚି ଦେଖ। ଘରକୁ ଅଗ୍ନିବାତ ଧରିଛି। ଥରେ ମୁଁ ବଣରେ ଗୋଟାଏ ଭୟଙ୍କର ଅଜଗର ସାପ ଦେଖିଥିଲି। ଥରକୁ ଥର ମୋତେ ଏ ବିଷୟରେ ପଗ୍ଲରି କିଛି ଲାଭ ନାହିଁ। ଥରକେ ତମେ କେତେ ଭାତ ଖାଇ ପାରିବ ? ଥରେ ଥରେ ଶୀତଦିନେ ବହୁତ ଚଢ଼େଇ ଚିଲିକାକୁ ଆସନ୍ତି।

**ନାଁ—**

ତାଙ୍କ ନାଁରେ (ବିରୁଦ୍ଧରେ) ଯେତେ ଗପିଲେ ବି କ'ଣ ତୁ ତାଙ୍କ ବିଷୟରେ ମୋର ଧାରଣା ବଦଳାଇ ଦେଇ ପାରିବୁ ? ସ୍କୁଲରୁ ପିଲାଟିର ନାଁ କଟିଯାଇଛି। ତାଙ୍କର ନାଁ ଲୁଚିଗଲାଣି। (ବିସ୍ମୃତ ହୋଇସିବା ଅର୍ଥରେ)। ରମେଶ କୋଉ ବଂଶର ପୁଅ—ଶେଷରେ ସେ ପୁଣି ନାଁ ପକାଇଲା ? (ଅଖ୍ୟାତି ଅର୍ଜନ କରିବା ଅର୍ଥରେ)। ତାଙ୍କ ନାଁ ଧରିଲି ଯେ ଆଜି ଖାଇବାକୁ ମିଳିଲା ନାହିଁ। ସେ ତ ବାହାଘରର ନାଁ ଧରୁନାହିଁ (ମନ ନଦେବା ଅର୍ଥରେ), କିଏ କ'ଣ କରିବ ? ତୁ ସୋମବାର ଦିନ ଯିବୁ ନାଁ (ପ୍ରଶ୍ନ ଅର୍ଥରେ) ? ମୋତେ ଆଜି କଟକ ଯିବାକୁ ହେବ, କାହିଁକି ନା (କାରଣ ଅର୍ଥରେ) କାଲି ଜଣେ ବନ୍ଧୁଙ୍କର ବାହାଘର। ଏଠୁ

ଯା'ଉଚ୍ ନା (ଧମକ ଅର୍ଥରେ) ଦେଖିବୁ ! ଦେଉଳ ତୋଳିଲେ ନାଁ ପଡ଼େ । (ଖ୍ୟାତି ଅର୍ଥରେ) ସେ କାଲି ଏଆଡ଼େ ଆସିବେ ନା ? (ସନ୍ଦେହ ଅର୍ଥରେ) ।

**ଧରି—**

ଡକାୟତଙ୍କୁ ଯେ ଧରିଦେବ ସେ ଦଶହଜାର ଟଙ୍କା ପୁରସ୍କାର ପାଇବ ବୋଲି ସରକାର ଘୋଷଣା କରିଥିଲେ । ଆଜିକାଲି ଗ୍ରାମଆଡ଼େ ଯେପରି ଧରାଧରି ଚାଲିଛି ନା, ସେଥିରେ ସାଧାରଣ ଲୋକେ ଅତିଷ୍ଠ ହୋଇଗଲେଣି । ମୁଁ ଧରିନେଉଛି, ଏହି କାମରେ ତମେ ମୋତେ ସାହାଯ୍ୟ କରିବ । ପାଞ୍ଚଖଣ୍ଡ ଗାଁ ଧରି ହଇଜା ବ୍ୟାପିଛି । ଏତେ ସମସ୍ତ ଧରି ରୁ ସେଠାରେ କ'ଣ କରୁଥିଲୁ ? ସାଇଭାଇଙ୍କୁ ଧରି ଏ କାମଟି ଉଠାଇଦେବାକୁ ହେବ ।

**ଧରା—**

ଧରାପଡ଼ିଲେ ତମର ଅବସ୍ଥା କ'ଣ ହେବ ଜାଣିଛଟି ? ବରଧରା କେତେବେଳେ ଫେରିବ ? ଧରାବର କରିଆଣି ସେ ଝିଅବୋଝ ଉଠାଇଦେଲେ । ଆଗେ ଖେଦାଦ୍ୱାରା ଜଙ୍ଗଲରୁ ହାତୀ ଧରାଯାଉଥିଲେ । ପଇସା ହୋଇଯିବାରୁ ସେ ଧରାକୁ ସରା ମଣିଛନ୍ତି । ମୁଁ ତାକୁ କେତେଦିନରୁ ଖୋଜୁଛି, ହେଲେ ସେ ତ ମୋତେ ଧରାଛୁଆଁ ଦେଉନାହିଁ । ଜ୍ୟୋତିଷୀ ଲଗ୍ନ ଧରିଦେଲେ ସେ ଅନୁକୂଳ କରିବେ ।

**ପାଗ—**

ବର୍ଷା ପାଗରେ ଏତେ ଦୂର ଯିବାକୁ ମୋର ସାହସ ପାଉନାହିଁ । ପାଗପଟୁକା ଭିଡ଼ି (ପ୍ରସ୍ତୁତ ହୋଇ) ଘରୁ ବାହାରୁ ବାହାରୁ ତେଣେ ଟ୍ରେନ୍ ଛାଡ଼ିଦେଇଥିବ । ତମକୁ ଆରିସା-ପିଠାର ପାଗ ଧରିଆସେ ? ଡେକ୍‌ଚି ହାଣ୍ଡି ତାଙ୍କ ପାଗରେ (ରୋଷେଇ ଘରେ) ପଶେନାହିଁ । ଅସରାଏ ଦି' ଅସରା ବର୍ଷା ହେଲେ ମାଟି ପାଗିଯିବ (ବିହନ ବୁଣା ଜମିରେ ପ୍ରସ୍ତୁତ ହୋଇଯିବ) ।

**ଫଟା—**

ମୋ କପାଳ ତ ଫଟା, ମୁଁ କହିବି କାହାକୁ ? ଝିଅ ବାହାଘର କଥା କହୁଛ ଯେ, ହାତରେ ତ ଫଟା ପାହୁଲଟିଏ ବି ନାହିଁ । ସେତିକବେଳୁ କେତେ ଫଟେଇହେଉଚୁ ମ ? ଫଟା ଢୋଲରୁ ଭଲ ବାଜା ଶୁଣାଯିବ କେମିତି ?

**ବୋଲ—**

ସେ କ'ଣ ମୋର ବୋଲ ମାନିବ—ମୁଁ ଏକଥା କହିଚି ବୋଲି ତାଙ୍କୁ ମୋତେ କହିବ ନାହିଁ । ତମେ କ'ଣ ଦକ୍ଷିଣୀ ବୋଲି (ଭାଷା) ବୁଝିପାରିବ ? ଗୋପାଳ ତାଙ୍କ ଘରେ ବୋଲକରା (ଚାକର) ହୋଇ ରହିଚି । ଝିଅଟି କେଡ଼େ ସୁନ୍ଦର ଗୀତ ବୋଲୁଚି ! ମୁଁ ବୋଲି ଏତେ ଭିଡ଼ରେ ପଶି ସିନେମା ଟିକେଟ୍ ଆଣିପାରିଲି । ମୁଠାଏ ପେଟକୁ ଖାଇବ ବୋଲି ସେ ତିନିକୋଶ ଦୂରରୁ ଏଠାକୁ ଆସିଚି । ଆଚ୍ଛା, ତମ ଗାଁରେ ଗୋପାଳ ବୋଲି ଯୋଉ ଲୋକଟି ଥିଲା, ସେ ବଞ୍ଚିଛି ?

**ମାନ—**

ଈଶ୍ୱରଙ୍କୁ ମାନ କରି ଶପଥରେ ଖାଇବା କ'ଣ ଭଲ ? ମୋ କଥା ମାନ ସେ ଏଠାକୁ ଆସିଛନ୍ତି । ଆଜି ସନ୍ଧ୍ୟାରେ ମୋତେ ଗୋଟିଏ ମାନପତ୍ର ଦିଆଯିବ । ତାପମାନଯନ୍ତ୍ରରେ ଜ୍ୱର ମପାଯାଏ । ସେ କାଳର ମାନଦଣ୍ଡରେ ମାପିଲେ ଆମେ ଯେ କେତେ ଦୁର୍ବଳ, ତାହା ଆପେ ଆପେ ଧରାପଡ଼ିଯାଏ । ସିନ୍ଦୂର ଟୋପାଟି ତା' ମଥାରେ କେମିତି ମାନୁଚି ! ମାନସିଂହ ଦିଲ୍ଲୀରେ ଗୋଟିଏ ମାନମନ୍ଦିର ତିଆରି କରାଇଥିଲେ । ମନ୍ତ୍ରୀ ଖବର-କାଗଜବାଲାଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମା ଦାଏର୍ କଲେ । ତୁ ମୋତେ ମାନ ବା ନମାନ, ମୁଁ ନିଶ୍ଚୟ ତୋର ଭଲ ପାଇଁ ଚିନ୍ତା କରୁଥିବି । ଯାହାର ମାନସମ୍ମାନ ଜ୍ଞାନ ଥିବ ସେ ଭଦ୍ର ଆଚରଣ କରିବ ।

**ଯୋଗ—**

କେଉଁ ଯୋଗରେ ଗରୁ ଗୋଡ଼ ଭାଙ୍ଗିଗଲା କେଜାଣି, ଏଠାକୁ ଆସିବା ଦିନଠାରୁ ଖାଲି ରୋଗ ଆଉ ରୋଗ । ମୁଁ ଆଉ କ'ଣ କରିବି କୁହ, ତାକୁ ବିବାହ ଯୋଗାଇଲେ ସିନା ହବ ! ଠିକ୍ ସମୟରେ ସିମେଣ୍ଟ ଯୋଗେଇଲେ, ଘରଟି ବର୍ଷା ପୂର୍ବରୁ ଶେଷ ହୋଇଯିବ । ଯୋଗାଭ୍ୟାସଦ୍ୱାରା ଉଭୟ ମାନସିକ ଓ ଶାରୀରିକ ଶାନ୍ତି ମିଳେ । ତାଙ୍କ ଭଳି ଯୋଗଜନ୍ମା ପୁରୁଷ କେତେ ଜଣ ବାହାରିବେ ? ଶିକ୍ଷକ ପିଲାମାନଙ୍କୁ ଯୋଗଫଳ ଶିକ୍ଷା ଦେଉଛନ୍ତି ।

**ସଜ—**

ସଜ ହେଉ ହେଉ ତା'ର ତ ଘଣ୍ଟାଏ ଯିବ !, ଏ ଲୁଗାତକ ନିଅ, ସଜ କାଟଦେବ (ଗୋଟିଏ ଦିନରେ ସଫା କରି ଫେରାଇଦେବା ଅର୍ଥରେ) । ଏଠି ରହିବାକୁ ମୋତେ ମୋଟେ ସଜ (ସୁବିଧା) ହେଉ ନାହିଁ । ଦଶହରା ବେଳକୁ ତାଙ୍କର ସଜ ବସିବ (ଯନ୍ତ୍ରପାତି ପୂଜା ହେବା ଅର୍ଥରେ) । ଖରାଦିନରେ ବହୁତ ତାଳସଜ ମିଳେ । ସେ ତ ସଜମାନଙ୍କରେ ପୋକ ପକାଇ ଦେବେ ! ସଜ ଗୋବରରେ ଅଂଶେଜ ବସିଲେ ନଷ୍ଟ ବର୍ଷା ହୁଏ । ମୁଁ ତ ସଜହୋଇ ବସିଛୁ (ପ୍ରସ୍ତୁତ ଅର୍ଥରେ), ତମେ ଡାକିଲେ ବାହାରିପଡ଼ିବି ।

**ହାତ—**

ସେ ମୋ ହାତ ଧରିପକାଇଲା, କ'ଣ କରିବି ? (ଶରଣ ପଶିବା ଅର୍ଥରେ) ପର ଦୁଆରେ ହାତ ପତେଇବା କ'ଣ ଭଲ କଥା ? ସେ ଝିଅଟିର ହାତ ଧରିଲା ଦିନରୁ (ବିବାହ ଅର୍ଥରେ) ନୀଳମଣିବାବୁଙ୍କ ସବୁ ଦୁର୍ଯୋଗ ମାଡ଼ିଆସିଲା । ବୁଢ଼ା ଏବେ ପୁଅ ବୋହୂଙ୍କ ହାତଟେକାରେ (ଦୟାରେ) ରହୁଛି । ବଡ଼ବାବୁଙ୍କୁ ହାତ କର (ସନ୍ତୁଷ୍ଟ କରିବା ଅର୍ଥରେ), ଚାକିରିଟି ନିଶ୍ଚୟ ହୋଇଯିବ । ମୋ ହାତବାକ୍ସରେ ଦୁଇଗୋଟି ପୁରୁଣା ହନୁମାନ୍ ପଇସା ପଡ଼ିଚି । ସେ ତାକୁ ହାତରେ ନମାରି ଭାତରେ ମାରୁଛନ୍ତି । ଆଜିକାଲି ହାତେମାପି ବୁଝିଶୁଝି ଚଳିବା ଭଲ । ଦଶହାତ ଲୁଗା ନହେଲେ ପିନ୍ଧିବାକୁ ଭଲ ଲାଗେ ନାହିଁ । ସେ ହାତ

ଦେଖି ଆଗତ ଭବିଷ୍ୟ କହିପାରନ୍ତି । ଏଥର କବିରାଜଙ୍କୁ ହାତଟା ଦେଖାଇବାକୁ ପଡ଼ିବ । ସେକ୍ରେଟେରି ହେଉଛନ୍ତି ମନ୍ତ୍ରୀଙ୍କର ଡାହାଣ ହାତ, ତାଙ୍କୁ ନପଚାରି ସେ କିଛି କରନ୍ତି ନାହିଁ । ତମେ ଏ ଘଣ୍ଟାଟି କାହାଠୁ ହାତେଇଛ (ମାରିଆଣିବା ଅର୍ଥରେ) ? ଚତୁରା ମାରିଲେ ହାତ ଗଣ୍ଡେଇବ ସିନା ! ଭୋଜି ସମୟରେ ସମସ୍ତେ ଏକାସମୟରେ ହାତ ଚଳାଇବା ଭଦ୍ରତା । ମୁଁ ଦୂରରୁ ହାତଠାରି ତାଙ୍କୁ କେତେ ଡାକିଲି, ସେ ଜମା ଜାଣି ପାରିଲେ ନାହିଁ । ମୁଁ ହାତ ଯୋଡ଼ୁଛି, ଏଇଥରକ ମୋତେ କ୍ଷମା ଦିଅ । ରଘୁ କଥା କାହିଁକି ପଚାରୁଛ—ସେ ଗଡ଼ିଲା ଶଗଡ଼ରେ ହାତ ଦେବା ପିଲା । ହାତକଟା ସୂତାରେ ବୁଣା ଲୁଗା ପିନ୍ଧିବାକୁ ଗାନ୍ଧିଜୀ ସବୁବେଳେ କହୁଥିଲେ । ବୁଢ଼ାର ଟଙ୍କା ସୁନା ସବୁ ହାତପଇଠ କରିବାକୁ ସେ କେତେ ସନ୍ଧି ଫନ୍ଦି କରୁଛି ! ମୁଁ ଏଣିକି ତାଙ୍କର ହାତବାରିଆ ହୋଇ ଚଳିପାରିବି ନାହିଁ । ହାତରେଣୁ ପଡ଼ି ପଡ଼ି ଘର ହୋଇଗଲା । ଏତେବେଳେ କଥା ଶୁଣୁନ, ଯେତେବେଳେ ହାତକଡ଼ି ପଡ଼ି ଥାନାକୁ ଘୋଷାଡ଼ା ହେବୁ, ସେତେବେଳେ ବୁଝିବୁ । ପାଠିରେ ହାତ ବୁଲାଇ ସେ କୌଣସିମତେ ତାଙ୍କର ସୁବିଧା କରିଦେଲେ । କଥାକଥାକେ ରାଗି ହାତ ଉଠାଇବା ଭଲ ନୁହେଁ । ବୁଢ଼ା ତ ଏଣେ ବେହାଲ୍ ହୋଇ ପଡ଼ିଛି, ଏଣିକିବେଳେ ସେ ତାଙ୍କର ହାତରପାଞ୍ଚ କରିନେଉଛନ୍ତି । ତାଙ୍କ ପକ୍ଷରେ ହାତଉଧାରି ପାଞ୍ଚ ଦିନ ଉଠାଇବା କିଛି କଷ୍ଟକର ନୁହେ । ପକେଟମାରୁ କୌଶଳରେ ମନିବେଗଟି ମାରିନେଇ ଗୋଟାଏ ହାତ ଦେଖାଇଦେଲା । (କୌଶଳ ପ୍ରଦର୍ଶନ କରିବା ଅର୍ଥରେ) ।

## ଗୋଟିଏ ଶବ୍ଦର ଭିନ୍ନ ଭିନ୍ନ ପଦରେ ବ୍ୟବହାର

### କ—ବିଶେଷ୍ୟ ଓ କ୍ରିୟା

(୧) କଖାରୁ **ଡଙ୍କ** ପିଢ଼ାଯାକ ମାଡ଼ିଗଲାଣି । ଅଙ୍ଗୁର ଗଛ **ଡଙ୍କେଇଲାଣି** ।

(୨) ନଈରେ **ଫେଣ** ଭାସି ଆସୁଛି । କଥାକୁ **ଫେଣେଇ** କହିବା ତାହାର ଅଭ୍ୟାସ ।

(୩) **ଡାକ** ଆସିଲେ କିଏ ଘଡ଼ିଏ ରହିପାରିବ ? ମୁଁ ତାକୁ **ଡାକେଇଛି** ।

(୪) ଦୋଷ କଲେ **ଦଣ୍ଡ** ମିଳିବ । ଭଗବାନ୍ ତ ତାକୁ ବିନା ଦୋଷରେ **ଦଣ୍ଡିଲେ** ।

(୫) ଲୁଗାରେ **ଚିହ୍ନ** ଦେଇ ରଖ । ଅନେକ ଦିନ ପରେ ଦେଖାହେଲେ ସୁଦ୍ଧା ସେ ମୋତେ **ଚିହ୍ନିଲେ** ।

### ଖ—ବିଶେଷଣ ଓ କ୍ରିୟା

(୧) କେତେଦିନ ଆଉ ଏ **ଛିଣ୍ଡା** ଲୁଗା ପିନ୍ଧି ବୁଲିବ ? ଦୋଳି **ଛିଣ୍ଡିଗଲା** ।

(୨) **ଗାଧୁଆଘର** ତିଆରି ହୋଇଗଲେ, ଆମେ ସେଠିକି ଉଠିଯିବୁ । ଆଜି ତୁମେ କେତେବେଳେ **ଗାଧୋଇବ** ?

(୩) **ଗରଜିଲା** ମେଘ ବରଷେ ନାହିଁ । ସେ ତାକୁ ଦେଖିବାମାତ୍ରକେ ରାଗରେ **ଗର୍ଜିବାକୁ** ଲାଗିଲେ ।

(୪) **ନିତ୍ୟ ଧୂଆଁଲୁଗା** ପିନ୍ଧିବା ତାଙ୍କର ଅଭ୍ୟାସ । ଟିକିଏ ରୁହ, ମୁଁ ଲୁଗାଟା **ଧୋଇଦେବି** ।

(୫) ମୁଁ **ଚଢ଼ା** **ଦରରେ** ଏ ବର୍ଷ ଘିନବସ୍ତା ଗୁଡ଼ାଳ କିଣିଛି । ବେପାରୀମାନେ ତ ଖାଲି **ଦର ଚଢ଼େଇ ଦେଉଛନ୍ତି** ।

## ଗ—ବିଶେଷ୍ୟ ଓ ବିଶେଷଣ

(୧) **ଅନ୍ଧାର** ଘର ଚୋରଙ୍କୁ ସୁହାଏ । **ଅନ୍ଧାର** ମାଡ଼ିଆସୁଛି ।

(୨) **ଶୀତଳ** ପବନ ବହୁଲଣି । ବର୍ଷା ହେଲେ ଭୂମି **ଶୀତଳ** ପଡ଼ିଯିବ ।

(୩) ସେ **ଉପର** ମହଲରେ ରହନ୍ତି । ମୁଁ ଖାଲି **ଉପରକୁ** ଅନାଉଛି, ନ ହେଲେ ମୋ ଦେଖିବା କାମ କରିହେଉନି ନାହିଁ ?

(୪) **ରକ୍ତ** ବର୍ଣ୍ଣର ସୂର୍ଯ୍ୟ ପୂର୍ବ ଦିଗରେ ଉଦିତ ହେଉଛନ୍ତି । ତା' ଦେହରେ ମୋଟେ **ରକ୍ତ** ନାହିଁ ।

(୫) **ଶୁଭ** ଯୋଗ ଆସୁ, କାମ ବଳେ ହୋଇଯିବ । ଯେଉଁଠି ଥାଏ, ସବୁଦା ତୁମର **ଶୁଭ** ମନାସୁଥିବ ।

## ଘ—ବିଶେଷ୍ୟ, ବିଶେଷଣ ଓ କ୍ରିୟା

(୧) **ଘରପୋଡ଼ରୁ** କୁଟାଖିଏ ମିଳିଲେ ବି ଲାଭ । **ପୋଡ଼ା** ବାଇଗଣ ଭଜା ବାଇଗଣ ଅପେକ୍ଷା ଭଲ । ମୋ ପାଇଁ ବାଇଗଣଟାଏ **ପୋଡ଼ିଦିଅ** ।

(୨) ସମସ୍ତେ ତ ଯେଝା ବାଟ ଦେଖିଲେ, ଏଠି ବୁଢ଼ା **ପାଖରେ** କିଏ ରହିବ ? ଆଖ-**ପାଖରେ** ଯେତେ ଲୋକ ଅଛନ୍ତି, ସମସ୍ତଙ୍କୁ ଟିକିଏ କହିଯାଇଥିବ । ଦିନ ତ **ପାଖେଇଲଣି**, ଆଉ ବସିରହିଛ କ'ଣ ?

(୩) **ଲମ୍ବ** ପଟେ ଗୃହଆଡ଼କୁ ପାଏ । ଦୁବକୁ **ଲମ୍ବ**, ଦାଢ଼ୁକୁ ଗ୍ରେଟ । ଝିଅଟି **ଲମ୍ବେଇ** ଯିଲେ ତ ଲମ୍ବିଯିବ ।

(୪) ରହ, ଏଠି ଟିକିଏ **ଥକା** ମେଣ୍ଟାଇନିଏ । **ଥକାମନ** ଗ୍ଲଯିବା, ଚକାନୟନ ଦେଖିବା । ଖଟି ଖଟି ପିଲାଟା **ଥକିଗଲାଣି** ।

(୫) ଶେଷରେ **ଚୋର** ଧରାପଡ଼ିଲା । ମାସ ମାସ ଆସି ହେଲା, ଏଥର **ଚୋରା** ମାଲସବୁ ବାହାରିବ । ତାଙ୍କ ଗାଈଟିକୁ କାଲି କିଏ ଗୁହାଳରୁ **ଚୋରେଇ** ନେଇଛି ।

ଉପରେ ଯେଉଁ କେତେକ ଦୃଷ୍ଟାନ୍ତର ଉଲ୍ଲେଖ କରାଗଲା, ତାହା ବ୍ୟତୀତ ଲୋକ-ବ୍ୟବହାର (usages)ର ଆଧାରରେ ଅନେକ ପ୍ରାୟୋଗିକ ଉଦାହରଣ ରହିଛି । ଲୋକୋକ୍ତି, ପ୍ରବାଦ ପ୍ରବଚନ, ଢଗଢମାଳି ଇତ୍ୟାଦିକୁ ମଧ୍ୟ ଏହାର ଅନ୍ତର୍ଭୁକ୍ତ କରାଯାଇପାରେ । ନିମ୍ନରେ ପ୍ରତ୍ୟେକରୁ କିଛି କିଛି ଉଦାହରଣ ଦିଆଯାଉଛି ।

# ପ୍ରବାଦ ପ୍ରବଚନ

(୧) ଅତିଭକ୍ତି ଚୋରର ଲକ୍ଷଣ ।
(୨) ଅପାଳକ ରାଜାକୁ ବିଜୁଳି ଲକ୍ଷେଟଙ୍କା ।
(୩) ଆଳୁ ଖୋଳୁ ଖୋଳୁ ମହାଦେବ ବାହାରିବା ।
(୪) ଉଚ୍ଚ ତାଳ, ପୋତା ଶାଳ, ରୁଅ ହେନ୍ତାଳ, ଗଣ୍ଡି ବେତାଳ, ଘରଣୀ ଚେତାଳ, ତେବେ ସେ ଘର ଯାଏ ବହୁତ କାଳ ।
(୫) ଏଣୁ ମାରିଲେ ବ୍ରହ୍ମହତ୍ୟା, ତେଣୁ ମାରିଲେ ଗୋହତ୍ୟା ।
(୬) ଓଧ ସଙ୍ଗେ ଭୁଆ ବିରାଡ଼ି ବାଇ ।
(୭) କାଲି ଠାରୁ କାଲି ମା’ ଜାଣେ ।
(୮) କାଳୀ ଗାଈର ଭିନେ ଗୋଠ ।
(୯) ଖୋଳି ପରବତ ମାରି ମୂଷା ।
(୧୦) ଖଜୁରି ଗଛର କି ଗୁଣ ଗାଇବି ମୂଳରୁ ପାହାଚ ପାହାଚ ।
(୧୧) ଖାଇଲାଘର ପୁଅଝିଅ ରଙ୍କ ।
(୧୨) ଗାଁ ପରିମଳ ଧୋବାଗୁଠରୁ ଜଣାଯାଏ ।
(୧୩) ଗୋରୁ ମାରି ଜୋତା ଦାନ (ବହୁତ ଅନ୍ୟାୟକୁ ଢାଙ୍କିବା ନିମନ୍ତେ ସାମାନ୍ୟ ଦାନ ପୁଣ୍ୟ କରିବା ଅର୍ଥରେ) ।
(୧୪) ଘଡ଼ିକେ ଘୋଡ଼ା କୁଟୁଚୁ ! (ଘନ ଘନ ପରିବର୍ତ୍ତନ ହେବା ଅର୍ଥରେ)
(୧୫) ଘରକୁ ମାନ କରି ଖପରରେ ଖାଇବା । (ଅନ୍ୟ ଉପରେ ଅଭିମାନ କରି ନିଜର କ୍ଷତି କରିବା) ।
(୧୬) ଛୋଟ ମୁହଁରେ ବଡ଼ କଥା ।
(୧୭) ଛେଳି ଗୋଡ଼ରେ ଧାନ ମଳିବା (ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଅଜ୍ଞ ହାତରେ ନ୍ୟସ୍ତ ହେବା ଅର୍ଥରେ) ।
(୧୮) ଜାନ୍ ଯାଉ, ମାନ୍ ଥାଉ ।
(୧୯) ଝିମିଟି ଖେଳରୁ ମହାଭାରତ ।
(୨୦) ଢୋଲ ବାଇଦ କୋଶେ, ତୁଣ୍ଡ ବାଇଦ ସହସ୍ର କୋଶ । (ଜନମତର ପ୍ରଭାବଶାଳିତା ଅର୍ଥରେ) ।
(୨୧) ତୁଳସୀ ଦୁଇ ପତ୍ରରୁ ବାସେ ।
(୨୨) ତେଲିଆ ମୁଣ୍ଡରେ ତେଲ (ସମ୍ପନ୍ନବ୍ୟକ୍ତିମାନଙ୍କ ନିମନ୍ତେ ସମସ୍ତ ପ୍ରକାର ସୁବିଧାର ବ୍ୟବସ୍ଥା ଅର୍ଥରେ) ।
(୨୩) ଥାପ ତେଜିଲେ ହାତ ଚକ୍କଣ (ପରଧନରୁ ନିଜ ପାଇଁ କିଛି ଲାଭ ନେବା ଅର୍ଥରେ) ।

(୨୪) ଦୂର ପର୍ବତ ସୁନ୍ଦର ।

(୨୫) ଧୀର ପାଣିପଥର କାଟେ । (ସଫଳତା ନିମନ୍ତେ ଧୈର୍ଯ୍ୟର ପ୍ରୟୋଜନୀୟତା ଅର୍ଥରେ) ।

(୨୬) ନାଚ ନ ଜାଣି ଅଗଣାର ଦୋଷ । (ନିଜର ଦୁର୍ବଳତାକୁ ଅନ୍ୟ ଉପରେ ଲଦିଦେବା ଅର୍ଥରେ) ।

(୨୭) ନ ଦେଖିଲି ଓଢ ଛ'ପଡ଼ା । (ସାଧାରଣରେ ଅପରିଚିତ ବିଷୟରେ ବଡ଼ ବଡ଼ କଥା କହିବା ଅର୍ଥରେ) ।

(୨୮) ପେଟ ପୋଷ, ନାହିଁ ଦୋଷ ।

(୨୯) ଫଳିଲା ଗଛ ଫୋପାଡ଼ ସହେ । (କର୍ମବନ୍ତ ଲୋକର ଅଧିକ ଦାୟିତ୍ୱ ବହନ କରିବା ଅର୍ଥରେ) ।

(୩୦) ବୋଝ ଉପରେ ନଳିତା ବିଡ଼ା । (ଦାୟିତ୍ୱ ଉପରେ ଦାୟିତ୍ୱ ଅର୍ଥରେ)

(୩୧) ଭିତ ଭୁଣିଲେ ସହସ୍ର କୁଆ (ଅର୍ଥ ଥିଲେ ସବୁ କାର୍ଯ୍ୟ ସୁଗମ ହେବା ଅର୍ଥରେ) ।

(୩୨) ମହରଗଛୁ ଆସି କାନ୍ତାରରେ ପଡ଼ିବା (ଗୋଟିଏ ବିପଦରୁ ଅପର ଏକ ବିପଦରେ ପଡ଼ିବା ଅର୍ଥରେ) ।

(୩୩) ଯେ ପକ୍ଷୀ ଉଡ଼େ ଯେତେ ଦୂର, ସେ ଜାଣେ ତହିଁର ବେଉର । (ଜୀବନ ଗଠନରେ ପରିବେଶର ଉପାଦେୟତା ଅର୍ଥରେ) ।

(୩୪) ଶୋଇଲା ପୁଅର ଭାଗ ନାହିଁ । (ନୀରବତା ବିପ୍ଳବ ର କାରଣ ଅର୍ଥରେ)

(୩୫) ସମୁଦ୍ରକୁ ଶଙ୍ଖେ ପାଣି । (ବିରାଟ ପ୍ରୟୋଜନରେ ସାମାନ୍ୟ ସାହାଯ୍ୟ ଅର୍ଥରେ)

(୩୬) ହଜିଲା ବଳଦ ଖୋଜିଲାଠେଇଁ । (ଖୋଜୁଥିବା ବିଷୟ ହଠାତ୍ ପାଇଯିବା ଅର୍ଥରେ)

## ଢଗଢମାଳି

(୧) ଅଧର୍ମ ବିତ୍ତ ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ ।
(ଅନ୍ୟାୟ ଉପାର୍ଜନର ପରିଣତି ଦୁଃଖକର) ।

(୨) ଆଲୋ ମଉସା, ଜଡ଼ ପଇସା ।

(୩) ଏଇ କଥାକୁ, ନାଆ ପେଲିଦେଲି କଲିକତାକୁ ।
(ଶତ୍ରୁପକ୍ଷର ଉକ୍ତିକୁ ତାଚ୍ଛଲ୍ୟ କରିବା ଅର୍ଥରେ) ।

(୪) କହିଲେ କୁଳ-କୁଟୁମ୍ବକୁ ଲାଜ, ନକହିଲେ କୁଳ ଭାସିଯାଉଛି ।
(କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥା)

(୫) କାହା କରମରେ ଖିରି ଖିରିସା କାହା କରମରେ ଲଡ଼ୁ,
କାହା କରମରେ ଖାଇଆ ଖଡ଼ା ଘେବେଇ ଘେବେଇ ମରୁ ।
(ଭାଗ୍ୟର ପକ୍ଷପାତିତା ସମ୍ପର୍କରେ)

(୬) ଖାଇବ ପିତା, ଗାଇବ ଗୀତା

ତେବେ ସେ ହୋଇବ ଜଗତଜିତା ।

(୭) ଗାଈ ନ ବୋଲିଲ ଖାଇନ ବୋଲି, ଟାଇନ ଧାଇଁଚ ଦଉଡ଼ି ଘେନି ।
(ଧନୀ ଆତ୍ମୀୟ ମୃତ୍ୟୁରେ ଦରିଦ୍ରର ଅବହେଳା ଅର୍ଥରେ)

(୮) ଘୋଡ଼ା ଦଉଡ଼ି ଦଉଡ଼ି ହୋଉଚି,
ହାତୀ ପାହୁଲ ପକେଇ ସେଇଠି ।

(୯) ଛୁଲେ ଛତୁ, ମେଘ ବରଷିଲେ କେତେ ଫୁଟନ୍ତୁ ।
(ଅନ୍ୟର ବଢ଼ିମା ପ୍ରତି କଟାକ୍ଷ ଅର୍ଥରେ)

(୧୦) ଜୀଅନ୍ତାରେ ଦେଲି ଖୁଦ କୁଣ୍ଡା, ମଲପରେ ଦେଲି ଗଜମଣ୍ଡା ।
(ମରଣୋତ୍ତର ସମ୍ମାନ ପ୍ରଦର୍ଶନ କଟାକ୍ଷ ଅର୍ଥରେ)

(୧୧) ଟାଣ କରୁଥାଏ ମାଇପ ଆଗେ, କଥା ନ ଆସଇ ପାଇକ ଆଗେ ।

(୧୨) ଉଚ୍ଛାଙ୍କୁ ଏତେ, ମୁହ ନାହିଁ ଗୋଡ଼ କସ୍ତୁଡ଼ି କେତେ ? ବଢ଼ିମା ପ୍ରତି କଟାକ୍ଷ

(୧୩) ଦୁଧ ଉତୁରିଲେ ଚୁଲିରେ ପଶେ, ମଣିଷ ଉତୁରିଲେ ଗାତରେ ପଶେ ।
(ଅହଙ୍କାର ପ୍ରତି ନିନ୍ଦା ଅର୍ଥରେ)

(୧୪) କଣି ପଇଡ଼, ଭସିଯାଉଥିଲୁ ମହି ନଈରେ, ଧରିଆଣିଥିଲି ତୋତେ—
ଟାକୁଆ ଗାଲରେ ମାଉଁସ ଲଗିଲା ଜବାବ ଦେଉଛୁ ମୋତେ ।
(ଆଶ୍ରିତର ଔଦ୍ଧତ୍ୟକୁ ନିନ୍ଦା କରିବା ଅର୍ଥରେ)

(୧୫) ବୁଦ୍ଧି ନ ଆସଇ ଘରକୁ, କହିଦେଉଥାଏ ପରକୁ ।
(ଅନ୍ୟର ବ୍ୟାପାରରେ ଅଯଥା ହସ୍ତକ୍ଷେପ କରିବାକୁ ନିନ୍ଦା କରିବା ଅର୍ଥରେ)

(୧୬) ଭଲ ଭଲ ଲୋକ ଚୋରି କରନ୍ତି,
ଚକୁଣୀ ଦେଖିଲେ ମାରି ଗୋଡ଼ାନ୍ତି । (ପ୍ରତିଷ୍ଠିତ ଲୋକ ଗୋପନରେ ପାପକରି ପ୍ରକାଶ୍ୟରେ ଅନ୍ୟକୁ ସମାଲୋଚନା କରିବା ଅର୍ଥରେ)

(୧୭) ମନ୍ଦ ଖୋଜୁଥିଲା ଯାହା, ବଇଦ ବତେଇଲା ତାହା ।
(ଈପ୍‌ସିତ ପଦାର୍ଥ ଲାଭ କରିବା ଅର୍ଥରେ)

(୧୮) ଯାହାକୁ ଯିଏ, ବରକୁ ବୁଢ଼ୀକନ ଡେଇଁବ ଏ ।
(ଯୋଗ୍ୟକୁ ଯୋଗ୍ୟରେ ମିଳାଇବା ଅର୍ଥରେ)

(୧୯) ଲୁଣ ଖାଏ ହାଣ୍ଡି, ଚଣ୍ଡା ଖାଏ ଗଣ୍ଡି ।
(ଚଣ୍ଡା ଦ୍ୱାରା ଶାରୀରିକ କ୍ଷତିର ଆଧିକ୍ୟ ଅର୍ଥରେ)

(୨୦) ହାଣ୍ଡିରେ ଖାଏ, ଗୋଡ଼ରେ ପଡ଼ିଲେ ଗାଧୋଇଯାଏ ।
(ଗୋପନରେ ଅନୀତି କରି ପ୍ରକାଶ୍ୟରେ ନ୍ୟାୟ-ନୀତିର ଚୂଡ଼ାନ୍ତ ପ୍ରକାଶ କରିବା ଅର୍ଥରେ)

(୬୧) ବଡ଼ଘର ଝିଅ କଛୁ ଖାଏ ନାହିଁ ଟୋକ୍ରୁ ଟି ମୋ ଗୁନ୍ଦମୁଖୀ,
ଉନ ଓଳ ଉନ କଂସା ପଖାଳରେ ମୁହଁଟି ଯାଉଛୁ ଶୁଖି ।

ଚଲଣିରେ ଗୋଟିଏ ଅର୍ଥକୁ ପ୍ରକାଶ କରିବା ନିମନ୍ତେ ବିଭିନ୍ନ ବ୍ୟବହାର ରହିଛି । ସେଗୁଡ଼ିକ ଯେତିକି ବିଚିତ୍ର, ସେତିକି କଳାତ୍ମକ ମଧ୍ୟ । ତାହାର କେତୋଟି ଉଦାହରଣ ଦିଆଗଲା ।

**(କ) ଆଶୀର୍ବାଦ ଅର୍ଥରେ—**

ଅହ୍ୟ ସୁଲକ୍ଷଣୀ ହୋଇଥା । ପାଚିଲା ବାଳରେ ସିନ୍ଦୁର ନାଆ । ବୁଢ଼ାଟିଏ ହୋଇଥାଆ । ହାତକାଚ ତୋର ବଜର ହେଉ । ସେଗ ବଇସ୍ୱଗ ମୋତେ ଝାଡ଼ିହୁଡ଼ିଦେ ।

**(ଖ) ଅଭିଶାପ ଅର୍ଥରେ—**

ତୋ କୁଳ ବୁଡ଼ିଯାଉ । ତୋ ଭିଟାମାଟି ଉଚ୍ଛନ୍ନ ହେଉ । ତୋ ଡିହରେ ଦୁବଘାସ ଉଠୁ । ତୋ ମୁର୍ଦ୍ଦନା ଫାଟିଯାଉ । ତୋ ନାଁ ଲୁଚିଯାଉ । ତୋ ମୁହଁରେ ନିଆଁ ।

**(ଗ) ବିଶେଷ ଅର୍ଥରେ—**

କଥାଟି ଷୋଳଣା ମୋ ମନକୁ ପାଇଲା (ସମ୍ପୂର୍ଣ୍ଣ) । ତୁମ ମନ ବଢ଼ିବାକୁ (ପରୀକ୍ଷା କରିବାକୁ) ମୁଁ ଏହା କହୁଥିଲି । ତାଙ୍କ କଥାରୁ ଥଳକୂଳ (ଠିକଣା) କିଛି ମିଳିଲା ନାହିଁ । ତାଙ୍କ ଦାନ୍ତଙ୍କ ଭିତରେ ପାଣି ଗଳୁନାହିଁ (ଘନିଷ୍ଠତା ଅର୍ଥରେ) । ତାଙ୍କ ଦେହ ଶାଗ ସିଝିବ ନାହିଁ (କିଛି ହେବ ନାହିଁ ଅର୍ଥରେ) । ସେ ମୋ କଥାକୁ କାନେଇଛି (ମନଦେଇ ଶୁଣୁଛି) । ତାଙ୍କର ସୁନା ଦେହ ଚୂନା ହେଲଣି (ସ୍ୱାସ୍ଥ୍ୟ ନଷ୍ଟହେବା ଅର୍ଥରେ) । ତା ଦେହରୁ ଖାଲି ତେଲ ନିଗିଡ଼ି ପଡ଼ୁଛି (ସୁସ୍ୱାସ୍ଥ୍ୟର ସୂଚନା) । ତାଙ୍କ ପରିବାରକୁ ଘର କୁଳଉ ନାହିଁ (ଅଣ୍ଟୁନାହିଁ ଅର୍ଥରେ) । ମୋତେ ଆଉ ଜଳାନା କହୁଛି (ବିରକ୍ତ କରନା ଅର୍ଥରେ) ।

ବ୍ୟବହାରରେ ଆହୁରି ପୁଣି ଆମ ଭାଷାରେ ଅଗମୂଳ, ଜଳସ୍ଥଳ, ଲେଖାଯୋଖା, ଶାଗମୁଗ ଭଳି ବହୁ ଯୁଗ୍ମଶବ୍ଦ; ଠିକ୍‌ଠାକ୍, ପିଲାଝିଲା, ଅଗଡ଼ବଗଡ଼, ଜଳୁଜଳୁ ନା ପ୍ରଭୃତି ବହୁ ଶ୍ରୁତିମଧୁର ଯୁଗ୍ମଶବ୍ଦ; ପାଟିତୁଣ୍ଡ, ରଙ୍ଗଢଙ୍ଗ, ବାଧାବିଘ୍ନ, ଘଷାମଜା ପ୍ରଭୃତି ବହୁ ଆପେକ୍ଷିକ ଶବ୍ଦ; ଭେଟାଭେଟି, ମୁହାଁମୁହିଁ, ମରାମରି, ଟଣାଟଣି ପ୍ରଭୃତି ପୁନରୁକ୍ତିସମ୍ପୃକ୍ତ ଶବ୍ଦ ଏବଂ ଝଣଝଣ, ଠଣଠଣ୍, କଟକଟ, ଧଡ଼ଧଡ଼ ପ୍ରଭୃତି ବହୁ ଧ୍ୱନିମୂଳକ ଶବ୍ଦର ପ୍ରୟୋଗ ଦେଖାଯାଏ । ଲୋକ-ବ୍ୟବହାରରେ ଯେଉଁ ବିପୁଳ ବୈଚିତ୍ର୍ୟ ରହିଛି, ତାହାର ଅଳ୍ପ କେତେକ ଉଦାହରଣ ମାତ୍ର ଏଠାରେ ସମ୍ପୃକ୍ତ ହୋଇଛି । ଅଞ୍ଚଳଭେଦରେ, ବ୍ୟକ୍ତିଭେଦରେ, ଜାତିଭେଦରେ, ଶିକ୍ଷା-ଦୀକ୍ଷାଭେଦରେ, ରୁଚିଭେଦରେ କେତେ ଶବ୍ଦ ଯେ କି ସ୍ୱତନ୍ତ୍ର ରୂପରେ ଆତ୍ମପ୍ରକାଶ କରନ୍ତି, ତାହା ସାଧାରଣ ଭାବରେ ଆମେ ଅନୁଭବ ସୁଦ୍ଧା କରିପାରିବା ନାହିଁ । ଶବ୍ଦଶାସ୍ତ୍ର ଏକ ଅନନ୍ତ ସମୁଦ୍ର । ଏଥିରେ ଲୁକ୍କାୟିତ ରହିଥିବା ଅଜସ୍ର ମଣିମାଣିକର ମୂଲ୍ୟ କିଏ କଳନା କରିପାରିବ ?

---